# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**April 2013**

**୬୯ ଭାଗ ୯ମ ସଂଖ୍ୟା ଚୈତ୍ର–ବୈଶାଖ ଅପ୍ରେଲ– ୨୦୧୩**



**ପ୍ରତିଖଣ୍ଡ : ଟ. ୫.୦୦**



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪–୨୫୩୦୨୧୧

ଅପ୍ରେଲ ୨୦୧୩

# ସୂଚୀ



❖ ❖ ❖

# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀରଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# ନମୋଃ ନମଃ ଉତ୍କଳ ଜନନୀ

**ଡକ୍ଟର ହୁସେନ୍ ରବିଗାନ୍ଧୀ**

ଅବତରିଛନ୍ତି ଏଠି କେତେ ଋଷି, ମୁନି,
ଦେବଭୂମି, ଦିବ୍ୟଭୂମି ଉତ୍କଳ ଜନନୀ ।
ମହୋଦଧି ମଥାପିଟେ ଯାହାର ପୟରେ,
ହୀରାଖଣ୍ଡ, ହୀରା ହାର ଯାହା ହୃଦୟରେ ।
ମହାନଦୀ, ଚିଲିକା ଯେ ଯାହାର ନନ୍ଦିନୀ,
ଦେବଭୂମି, ଦିବ୍ୟଭୂମି, ଉତ୍କଳ ଜନନୀ ।
ମହାମାନବର ପୁଣି ଏ ତପସ୍ୟା ଭୂମି,
ଯହିଁ ଝରେ ପୁଣ୍ୟାଲୋକ ହୋଇ ବୈତରଣୀ ।
ନୀଳଚକ୍ର ବାନା ତଳେ ବୌଦ୍ଧ, ସନାତନୀ,
ଏକ ପୁଣି ଜୈନ, ଯୀଶୁ, ଶିଖ୍-ମୁସଲମାନୀ ।
ଜମ୍ବୁଦ୍ୱୀପ-ଜୟୀ ଖାରବେଳର ସେନାନୀ,
ଯେ ମାଟିରେ ଜନ୍ମ ନେଲା ଏହି ସେହି ଭୂମି ।
କପିଳେନ୍ଦ୍ର-ମୁକୁନ୍ଦର ଜନ୍ମିତ ଧରଣୀ,
ଗଙ୍ଗାଠାରୁ ଗୋଦାବରୀ ଯାହାର ସଙ୍ଗିନୀ ।
ହିମାଳୟୁଁ କୃଷ୍ଣା ତଟେ ଥିଲା ଯା' କାହାଣୀ,
ଏହି ସେହି ବୀର ଭୂମି, ଉତ୍କଳ ଜନନୀ ।

ଜୟଦେବ, ଶାରଳା ଓ ଜଗନ୍ନାଥ ଦାସ,
ଭୀମ ଭୋଇ, ଗୋପ, ମଧୁ, ଫକୀର, ସୁଭାଷ ।
ଉପଇନ୍ଦ୍ର, ଗଙ୍ଗାଧର, ଭଗବତୀ ପୁଣି-
ଚକରା ବିଶୋଇ ସମ ଜନମ ନେଲା ଜାଣି ।
ଶାନ୍ତି, ମୈତ୍ରୀ, ସମତାର ବାର୍ତ୍ତା ପ୍ରଚାରିଣୀ,
ଦେବ ଭୂମି, ଦିବ୍ୟ ଭୂମି, ଉତ୍କଳ ଜନନୀ ।

ବକ୍ସି, ଜୟୀ, ଚାଖି, ବାଜି, ସୁରଇନ୍ଦ୍ର ସାଏ,
ଲକ୍ଷ୍ମଣ ଚକରା ପରି ଶତଶତ ପୁଏ ।
ଧରଣୀ ଭୂୟାଁ-କୃତ୍ତିବାସ ପ୍ରସବିନୀ,
ଶହୀଦ ସନ୍ତାନ ସଦା ପ୍ରସବେ ଯେ ଜମି ।
ବଳିଦାନେ ଅଦ୍ୱିତୀୟା ମୋ' ଗର୍ବ ଧାରିଣୀ-
ବୀର ମାଟି, ପୂତ ମାଟି, ଉତ୍କଳ ଜନନୀ ।

ରଘୁ-ଦିବାକର-କୃଷ୍ଣ ଚନ୍ଦ୍ର ଧରି କୋଳେ,
ରାଧାନାଥ-କବିସୂର୍ଯ୍ୟ ଶୋଭେ ଯା'ର ଗଳେ ।

ସତ୍ୟ ପୀର-ସଂସ୍କୃତିର ବାର୍ତ୍ତା ପ୍ରଚାରିଣୀ,
ସାଲବେଗ ଭକ୍ତିରେ ସେ ସଦା ନିମଜ୍ଜିନୀ ।
ସର୍ବ ଧର୍ମ ସମନ୍ୱୟୀ, ସାମ୍ୟ ପ୍ରଦାୟିନୀ ।
ଦେବ ଭୂମି, ଦିବ୍ୟ ଭୂମି, ଉତ୍କଳ ଜନନୀ ।
ମହେନ୍ଦ୍ର ତନୟାଠାରୁ ସ୍ୱର୍ଣ୍ଣ ରେଖା ଯାଏଁ,
ସାଲୁରର ମୁଣ୍ଡ ପୁଣି ଆକାଶକୁ ଛୁଏଁ ।
ସୁଉଚ୍ଚ ପର୍ବତ ଶୃଙ୍ଗ, ସବୁଜ ବନାନୀ,
ଗର୍ଭେ ଯେ ଧରିଛି କେତେ ଧାତୁ ଆଉ ମଣି ।
କିଏ କହେ ମାଆ ମୋର ହେଲା ଅଭାଗିନୀ,
ଧନ-ଧାନ୍ୟ ପରିପୂର୍ଣ୍ଣା ଉତ୍କଳ ଜନନୀ ।

ଏକ୍ରାମ ରସୁଲ ଆଉ ରମାଦେବୀ ବାଣୀ
ଚମତ୍କୃତ କରେ ଦେଖ ଶୁକଦେଇ ରାଣୀ ।
କଳିଙ୍ଗ ହୋଇଛି ଧନ୍ୟ ଏ ଯୁଗରେ ପୁଣି,
ବିଜୁ ସମ ଜନ୍ମ ଦେଇ ମହା ପୁତ୍ର ମଣି ।
ଏକ ବିଂଶେ ଦେଖ ଦେଖ ଓଡ଼ିଆର ଠାଣି,
ବିଶ୍ୱ ବନ୍ଦନୀୟା ମୋର ଉତ୍କଳ ଜନନୀ ।

ବାରବାଟି ମଡା ପୁଣି ଉଠି ଅଛି ଚେଇଁ,
ବିଶ୍ୱ ଆଜି ସାଜେ ଓଡ଼ିଆର ଚରା ଭୂଇଁ ।
ଅକରଣୀୟ ଆଜି କିଛି ତା'ର ନାହିଁ,
ବ୍ୟୋମେ, ଜଳେ, ସ୍ଥଳେ ତା'ର କେତନ ଉଡଇ ।
ପୂତ ଭୂମି ଏଇ ମୋର ଉତ୍କଳ ଜନନୀ,
ନମୋଃ ନମଃ ବୀର ମାଟି ଉତ୍କଳ ଜନନୀ ।
ଦେବ ଭୂମି, ଦିବ୍ୟ ଭୂମି, ଉତ୍କଳ ଜନନୀ,
ନମୋଃ ନମଃ ବୀର ମାଟି ଉତ୍କଳ ଜନନୀ ।

(୩ ଡିସେମ୍ବର ୧୯୯୨ରେ କଟକଠାରେ ଅନୁଷ୍ଠିତ
ପ୍ରଥମ ବିଶ୍ୱ ଓଡ଼ିଆ ସମ୍ମିଳନୀ ଉପଲକ୍ଷେ ରଚିତ)

# ନବ ଉତ୍କଳର ନିର୍ମାତାଗଣ



ଉତ୍କଳଗୌରବ ମଧୁସୂଦନ ଦାସ



ଉତ୍କଳମଣି ଗୋପବନ୍ଧୁ ଦାସ



ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ



ବ୍ୟାସକବି ଫକୀରମୋହନ ସେନାପତି

# ନବ ଉତ୍କଳର ନିର୍ମାତାଗଣ



ପଣ୍ଡିତ ନୀଳକଣ୍ଠ ଦାସ



କବିବର ରାଧାନାଥ ରାୟ







ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ



ସ୍ୱଭାବକବି ଗଂଗାଧର ମେହେର



ଡକ୍ଟର ହରେକୃଷ୍ଣ ମହତାବ

ଓଡ଼ିଶା ଦିବସ –୨୦୧୩ ପାଳନ ଅବସରରେ

# ମାନ୍ୟବର ରାଜ୍ୟପାଳ
# ଶ୍ରୀ ଏସ୍.ସି. ଜମିର୍‌ଙ୍କ
# ବାର୍ତ୍ତା



ଐତିହାସିକ ଓଡିଶା ଦିବସ ପାଳନ ଅବସରରେ ମୁଁ ଓଡିଶାର ଜନସାଧାରଣଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି । ୧୯୩୬ ମସିହା ଅପ୍ରେଲ୍ ୧ ତାରିଖର ଏହି ଶୁଭ ଦିବସରେ ଓଡିଶା ଭାଷାଭିତ୍ତିରେ ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଲାଭ କରିଥିଲା ।

ଆଜି ଆମେ ଓଡିଶା ରାଜ୍ୟ ଗଠନର ଏହି ପବିତ୍ର ଦିବସଟିକୁ ପାଳନ କଲାବେଳେ, ଓଡିଆ ଭାଷାଭାଷୀଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବା ଦିଗରେ ସାରା ଜୀବନ ଉତ୍ସର୍ଗ କରିଥିବା ଆମର ପୂର୍ବସୂରୀଙ୍କର ବହୁମୂଲ୍ୟ ଅବଦାନକୁ ଅବଶ୍ୟ ସ୍ମରଣ କରିବା । ଏହି ଅବସରରେ ଆମେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ, ବ୍ୟାସକବି ଫକୀରମୋହନ ସେନାପତି, ସ୍ୱଭାବକବି ଗଙ୍ଗାଧର ମେହେର୍, ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ସମେତ ଅନେକଙ୍କ ବହୁମୂଲ୍ୟ ଅବଦାନକୁ ଶ୍ରଦ୍ଧାସୁମନର ସହ ସ୍ମରଣ କରୁଛୁ । ଆଜିର ଏହି ଶୁଭ ଅବସରରେ ଆମେ ଓଡିଶାବାସୀ, ଆମକୁ ଏକ ସ୍ୱତନ୍ତ୍ର ପରିଚିତି ଦେଇଥିବା ସେହି ଅମର ଆତ୍ମାମାନଙ୍କ ପ୍ରତି ଆମର ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

ଅନେକ ବୈଭବରେ ଭରପୂର ଓଡିଶାର ଏକ ଉଚ୍ଚ ସାଂସ୍କୃତିକ ଐତିହ୍ୟ ଓ ସମୃଦ୍ଧ ଇତିହାସ ରହିଛି । ସ୍ୱାଧୀନତା ଆନ୍ଦୋଳନ ସମୟରେ ଏକ ଅବିଚ୍ଛେଦ୍ୟ ଅଂଗ ଭାବେ ଜାତୀୟ ମୁଖ୍ୟସ୍ରୋତରେ ଓଡିଶାର ଏକ ପ୍ରମୁଖ ସ୍ଥାନ ରହିଥିଲା । ଏହି ରାଜ୍ୟର ଅନୁପମ ସୌନ୍ଦର୍ଯ୍ୟ ଭାରତ ତଥା ଭାରତ ବାହାରୁ ଆସୁଥିବା ପର୍ଯ୍ୟଟକମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥାଏ । ଅତୀତରେ ଦକ୍ଷିଣ–ପୂର୍ବ ଏସିଆ ସହିତ ଏହି ରାଜ୍ୟର ସାମୁଦ୍ରିକ ବାଣିଜ୍ୟ ସଂପର୍କ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି ।

ଓଡିଶାର ପୁରାତନ କୀର୍ତ୍ତିରାଜି ଏବଂ ସ୍ଥାପତ୍ୟ ଭାରତୀୟ ଐତିହ୍ୟର ଏକ ସମୁଜ୍ଜ୍ୱଳ ଅଧ୍ୟାୟ । ଏହି ସମୃଦ୍ଧ ଏବଂ ବିବିଧତାପୂର୍ଣ୍ଣ ସଂସ୍କୃତି ଏବଂ ଐତିହ୍ୟ ସର୍ବଦା ଆମକୁ ଗର୍ବିତ କରିବା ସହିତ ସମୟ ସହ ତାଳ ଦେଇ ଆଗକୁ ବଢିବା ପାଇଁ ପ୍ରେରଣା ଯୋଗାଇଥାଏ ।

୧୯୩୬ ମସିହାରୁ ୨୦୧୩ ମସିହା ମଧ୍ୟରେ ଓଡିଶାରେ ଅଭୂତପୂର୍ବ ଉନ୍ନତି ପରିଲକ୍ଷିତ ହୋଇଛି । ପ୍ରତ୍ୟେକ କ୍ଷେତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ଅଣାଯାଇପାରିଛି । ଓଡିଶା କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ସୂଚନା ପ୍ରଯୁକ୍ତି, ମହିଳା ସଶକ୍ତିକରଣ ଏବଂ ସାମାଜିକ ନିରାପତ୍ତା କ୍ଷେତ୍ରରେ ବିପୁଳ ପ୍ରଗତି ହାସଲ କରିବାରେ ସକ୍ଷମ ହୋଇଛି ।

ସମୟ ସହିତ ତାଳ ଦେଇ ସାଧାରଣ ନାଗରିକଙ୍କ କଲ୍ୟାଣାର୍ଥେ ରାଜ୍ୟ ସରକାର ଅନେକ ବିକାଶମୂଳକ ଯୋଜନା ନୂତନ ଭାବେ ପ୍ରଚଳନ କରିଛନ୍ତି । ନିକଟରେ କୃଷି ଏବଂ ତତ୍‌ସଂପର୍କିତ କ୍ଷେତ୍ରର ସର୍ବାଙ୍ଗୀନ ବିକାଶ ତଥା କୃଷକଙ୍କ ହିତ ସାଧନ ନିମନ୍ତେ ଏକ ସ୍ୱତନ୍ତ୍ର କୃଷି ବଜେଟ୍ ଉପସ୍ଥାପିତ ହୋଇଛି ।

ରାଜ୍ୟ ସରକାର ରାଜ୍ୟର ପଛୁଆ ଏବଂ ଗ୍ରାମାଞ୍ଚଳର ବିକାଶ ପ୍ରତି ସର୍ବାଧିକ ଗୁରୁତ୍ୱ ଦେଇଛନ୍ତି । ଏହାକୁ ସୁନିଶ୍ଚିତ କରିବା ଉଦ୍ଦେଶ୍ୟରେ ବିଜୁ କେବିକେ ଯୋଜନା, ବିଜୁ କନ୍ଧମାଳ ଓ ଗଜପତି ଯୋଜନା, ଗୋପବନ୍ଧୁ ଗ୍ରାମୀଣ ଯୋଜନା, ସିମେଣ୍ଟ କଂକ୍ରିଟ୍ ରୋଡ୍ ଯୋଜନା, ବିଜୁ ଗ୍ରାମ ଜ୍ୟୋତି ଯୋଜନା, ବିଜୁ ସେତୁ ଯୋଜନା ପ୍ରଭୃତି କାର୍ଯ୍ୟକ୍ରମମାନ ସଫଳତାର ସହ କାର୍ଯ୍ୟକାରୀ କରିଛନ୍ତି ।

ମହିଳାମାନଙ୍କ ସାମାଜିକ-ଅର୍ଥନୈତିକ ବିକାଶ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯାଇଛି । ଏ ଦିଗରେ ମିଶନ ଶକ୍ତି ନାମକ ଏକ ଅଭିନବ କାର୍ଯ୍ୟକ୍ରମ ସଫଳତାର ସହ କାର୍ଯ୍ୟକାରୀ କରାଯାଇଛି। 'ମମତା' ଯୋଜନା ମାଧ୍ୟମରେ ଗର୍ଭବତୀ ମହିଳାମାନଙ୍କୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି ।

ଆଇ.ଟି.ଡି.ଏ, ଟି.ଡି.ସି.ସି., ଓ.ଏସ୍.ଏଫ୍.ଡି.ସି ଏବଂ ଓଟିଇଏଲ୍‌ପି ମାଧ୍ୟମରେ ଅନୁସୂଚିତ ଜନଜାତି ଓ ଜାତି ବର୍ଗଙ୍କ ଉନ୍ନତି ବିଧାନ ନିମନ୍ତେ ଅଗ୍ରାଧିକାର ଦିଆଯାଇଛି । ଓଡିଶା ସରକାର ଅନୁସୂଚିତ ଜନଜାତି ବର୍ଗର ବାଳକ ବାଳିକାମାନଙ୍କ କଲ୍ୟାଣ ସାଧନ ସକାଶେ ସାମଗ୍ରିକ ତଥା ସମନ୍ୱିତ ପଦକ୍ଷେପ ଗ୍ରହଣ କରିଛନ୍ତି । ନୂତନ ଭାବେ ଶିକ୍ଷାନୁଷ୍ଠାନ ଯଥା ସେବାଶ୍ରମ, ଆଶ୍ରମ ସ୍କୁଲ୍, ହାଇସ୍କୁଲ୍ ପ୍ରଭୃତି ଖୋଲାଯିବା ଦ୍ୱାରା ସେମାନେ ଆବାସିକ ଶିକ୍ଷା ଲାଭ କରିବାକୁ ସକ୍ଷମ ହୋଇପାରିଛନ୍ତି ।

କିଲୋ ପିଛା ୧ ଟଙ୍କା ଦରରେ ଚାଉଳ ଯୋଗାଣ ବ୍ୟବସ୍ଥା ଏବଂ ମଧୁବାବୁ ପେନ୍‌ସନ୍ ଯୋଜନା ମାଧ୍ୟମରେ ବୃଦ୍ଧବୃଦ୍ଧା ଓ ଦୁଃସ୍ଥମାନଙ୍କୁ ସାହାଯ୍ୟ ପ୍ରଦାନ ସହ ସମାଜର ଗରିବ ଏବଂ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ନିମନ୍ତେ ଖାଦ୍ୟ ନିରାପତ୍ତାକୁ ସୁନିଶ୍ଚିତ କରିବା ପାଇଁ ସରକାରଙ୍କ ପକ୍ଷରୁ ମଧ୍ୟ ଅନେକ ପଦକ୍ଷେପ ଗ୍ରହଣ କରାଯାଇଛି ।

ସୀମିତ ସମୟ ମଧ୍ୟରେ ବିଭିନ୍ନ ସରକାରୀ ସେବା ପ୍ରଦାନ ନିମନ୍ତେ ୨୦୧୩ ମସିହା ଜାନୁଆରୀ ମାସଠାରୁ ରାଜ୍ୟ ସରକାର ଓଡିଶା ଜନସେବା ଅଧିକାର ଅଧିନିୟମ-୨୦୧୨ କାର୍ଯ୍ୟକାରୀ କରିଛନ୍ତି ।

ଓଡିଶା ବିପୁଳ ପ୍ରାକୃତିକ ସଂପଦ ସହ ବିଶ୍ୱସ୍ତ, କର୍ମଠ ଓ ଦକ୍ଷ ମାନବ ସମ୍ବଳରେ ପରିପୂର୍ଣ୍ଣ ଅଟେ । ଆମ ରାଜ୍ୟକୁ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ନିମନ୍ତେ ରାଜ୍ୟ ସରକାର ନିରବଚ୍ଛିନ୍ନ ଭାବେ ଉଦ୍ୟମ ଜାରି ରଖିଛନ୍ତି । ମୁଁ ନିଃସନ୍ଦେହ ଯେ, ବିକାଶର ପ୍ରକ୍ରିୟାକୁ ଅଧିକ ତ୍ୱରାନ୍ୱିତ କରିବା ଲକ୍ଷ୍ୟରେ ରାଜ୍ୟ ସରକାର ଓ ଓଡିଶାର ଜନସାଧାରଣ ଉତ୍ସର୍ଗୀକୃତ ମନୋଭାବ ତଥା ଅଫୁରନ୍ତ ଉତ୍ସାହ ନେଇ କାର୍ଯ୍ୟ କରିବେ ।

ବନ୍ଦେ ଉତ୍କଳ ଜନନୀ ।



# ଓଡ଼ିଶା ଦିବସ -୨୦୧୩ ପାଳନ ଅବସରରେ
# ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା

ଆଜି ଓଡ଼ିଶା ଦିବସ । ଆଧୁନିକ ଓଡ଼ିଶା ଇତିହାସର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିବସ । ଏହି ଅବସରରେ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସାରା ଜୀବନ ଉଦ୍ୟମ କରିଯାଇଥିବା ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଓ ଖଲିକୋଟ ରାଜାସାହେବ ରାମଚନ୍ଦ୍ର ମର୍ଦ୍ଦରାଜ ଦେବଙ୍କ ପରି ମହାନ୍ ଓଡ଼ିଆଙ୍କ ପ୍ରତି ଏହି ଅବସରରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ସମୃଦ୍ଧ କରିଥିବା ଏବଂ ଓଡ଼ିଆ ଭାଷାର ଗୌରବ ବଢାଇଥିବା ବରପୁତ୍ରମାନଙ୍କ ପ୍ରତି ମଧ୍ୟ ମୋର ଶ୍ରଦ୍ଧା ଓ ସମ୍ମାନ ଜଣାଉଛି ।

ଓଡ଼ିଶାର ଇତିହାସ ମହାନ୍ । ସମ୍ରାଟ ଖାରବେଳଙ୍କଠାରୁ ଆରମ୍ଭ କରି ସମ୍ରାଟ କପିଳେନ୍ଦ୍ର ଦେବଙ୍କ ପର୍ଯ୍ୟନ୍ତ ରାଜାମାନେ ସେମାନଙ୍କ ବୀରତ୍ୱ ଓ ସୁଶାସନ ପାଇଁ ଅମର ହୋଇଯାଇଛନ୍ତି । ଫକୀରମୋହନ ସେନାପତି, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଗଙ୍ଗାଧର ମେହେର ଓ ଗୋପୀନାଥ ମହାନ୍ତିଙ୍କ ପର୍ଯ୍ୟନ୍ତ ମହାନ କବି ଓ ଲେଖକମାନେ ସେମାନଙ୍କ ପ୍ରତିଭା ଦ୍ୱାରା ଓଡ଼ିଆ ଭାଷାର ଗୌରବ ବଢାଇଛନ୍ତି । ଆମର ନୃତ୍ୟ, ସଙ୍ଗୀତ, ଲୋକଗୀତ, ଲୋକନୃତ୍ୟ ଓ ଆଦିବାସୀ କଳା ଭାରତର ସଂସ୍କୃତିକୁ ସମୃଦ୍ଧ କରିଛି । ଆମର ବୁଣାକାର ଓ କାରିଗରମାନେ ସେମାନଙ୍କ ସୃଷ୍ଟି ଦ୍ୱାରା ଆମ ସଂସ୍କୃତିର ଧାରାକୁ ଆଗକୁ ବଢାଇ ଚାଲିଛନ୍ତି ।

୧୯୩୬ରୁ ୨୦୧୩- ଏହି ସତସ୍ତରୀ ବର୍ଷରେ ଓଡ଼ିଶା ଅନେକ ଅନୁଭୂତି ହାସଲ କରିଛି । ଅନେକ କ୍ଷେତ୍ରରେ ଓଡ଼ିଶା ସଫଳତା ହାସଲ କରିଛି । ଅନେକ ରାଜ୍ୟଠାରୁ ମଧ୍ୟ ଓଡ଼ିଶା କେତେକ କ୍ଷେତ୍ରରେ ଆଗରେ ରହିଛି । ଓଡ଼ିଶା ଆଜି ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବୀ ହୋଇପାରିଛି । ଭିତ୍ତିଭୂମିର ବିକାଶ ଘଟିଛି । Literacy Rate ବଢିଛି । Dropout Rate କମିଛି । ଉଚ୍ଚଶିକ୍ଷା କ୍ଷେତ୍ରରେ ଓଡ଼ିଶା ପୂର୍ବ ଭାରତର ଏକ କେନ୍ଦ୍ର ହେବାକୁ ଯାଉଛି । ଓଡ଼ିଆମାନେ ଆଜି ଦେଶ ବିଦେଶରେ ବିଭିନ୍ନ କ୍ଷେତ୍ରରେ ନିଜର ଦକ୍ଷତା ଦ୍ୱାରା ରାଜ୍ୟର ସୁନାମ ବଢାଇଛନ୍ତି । ଓଡ଼ିଆ ସାହିତ୍ୟ ତାର ଜୟଯାତ୍ରା ଜାରି ରଖିଛି । କ୍ରୀଡା କ୍ଷେତ୍ରରେ ଓଡ଼ିଶାର ସୁନାମ ବଢିଛି ।

ଆଜି ରାଜ୍ୟ ଅର୍ଥନୀତିରେ ଉନ୍ନତି ଆସିଛି । ବିକାଶ ଓ କଲ୍ୟାଣ ପାଇଁ ଆମେ ନିଜ ପାଣ୍ଠିରୁ ନୂଆ ନୂଆ ଯୋଜନା କରିପାରିଛୁ । କୃଷି ପାଇଁ ସ୍ୱତନ୍ତ୍ର ବଜେଟ କରିପାରିଛୁ । ଗରିବୀ କମିଛି । ରାଜ୍ୟରେ Economic activity ବଢିଛି ଏବଂ ନିଯୁକ୍ତିର ନୂଆ ନୂଆ ସୁଯୋଗ ସୃଷ୍ଟି ହୋଇଛି । ଶିଳ୍ପ କ୍ଷେତ୍ରରେ ପୁଞ୍ଜି ବିନିଯୋଗ ବଢିଛି । ପର୍ଯ୍ୟଟନ ଓ IT କ୍ଷେତ୍ରରେ ଓଡ଼ିଶାର ଗୁରୁତ୍ୱ ବଢିଛି ।

ସାମାଜିକ ସୁରକ୍ଷା କ୍ଷେତ୍ରରେ ମଧ୍ୟ ଓଡ଼ିଶା ଅନେକ ଉନ୍ନତି କରିଛି । ଶିଶୁ ଓ ମାତୃ ମୃତ୍ୟୁହାର କମିଛି । Nutrition Levelରେ ଉନ୍ନତି ଆସିଛି । Immunisation କ୍ଷେତ୍ରରେ ମଧ୍ୟ ଆମେ ସଫଳତା ହାସଲ କରିଛୁ । ଗରିବ ଲୋକଙ୍କୁ ଆମେ ଆଜି ଖାଦ୍ୟ ନିରାପତ୍ତା ଯୋଗାଇ ଦେଇପାରିଛୁ । ଗାଁରେ ଆଜି ବିକାଶର ବାର୍ତ୍ତା ପହଞ୍ଚିପାରିଛି । ବିଜୁଳି, ସଡକ ଓ ପାଣି ଆଜି ଆଉ ଗାଁରେ ସ୍ୱପ୍ନ ହୋଇରହିନାହିଁ । ବିକାଶର ସୁଫଳ ଆଜି ସମସ୍ତଙ୍କ ପାଖରେ ପହଞ୍ଚିପାରିଛି । ଆମର କଳାକାର, କାରିଗର ଓ ବୁଣାକାରମାନଙ୍କ ପ୍ରତିଭା ରାଜ୍ୟକୁ ଗର୍ବିତ କରିଛି । ସରକାରଙ୍କ ବିକାଶ ଓ କଲ୍ୟାଣ କାର୍ଯ୍ୟକ୍ରମ ଆମର ଆଦିବାସୀ, ଦଳିତ ଭାଇଭଉଣୀ, ଗରିବ ଲୋକ, ମହିଳା, ଶିଶୁ, ଯୁବକ, ବୁଢାବୁଢୀ, ଚାଷୀ, ମୂଲିଆ ସମସ୍ତଙ୍କ ମନରେ ଭରସା ସୃଷ୍ଟି କରିବାରେ ସଫଳ ହୋଇଛି ।

କୋଣାର୍କ, ମୁକ୍ତେଶ୍ୱର ଓ ରାଜାରାଣୀ ପରି ଅମର କୀର୍ତ୍ତି ଏବଂ ଶ୍ରୀଗୀତଗୋବିନ୍ଦ ପରି ଅମର କାବ୍ୟ ସୃଷ୍ଟି କରିଥିବା ଓଡ଼ିଆ ଜାତି ଆଜି ତାର ଆତ୍ମ ବିଶ୍ୱାସ ଫେରିପାଇଛି । ଏ ଶତାବ୍ଦୀ ହେଉଛି ଓଡ଼ିଶାର । ଏ ହେଉଛି ଓଡ଼ିଆ ଜାତିର ଜାଗରଣର ଶତାବ୍ଦୀ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଜୟ କରିଥିବା ଏ ମହାନ ଜାତି ଆଜି ଦେଶର ବିକାଶ ଇତିହାସରେ ତାର ଭୂମିକା ତୁଲାଇବା ପାଇଁ ପ୍ରସ୍ତୁତ । ଓଡ଼ିଶାକୁ ଭଲ ପାଉଥିବା ଏବଂ ଓଡ଼ିଶା ପାଇଁ ଗର୍ବ କରୁଥିବା ଓଡ଼ିଶାବାସୀ ମୋର ପ୍ରିୟ ଭାଇ ଭଉଣୀମାନଙ୍କୁ ଏହି ପବିତ୍ର ଦିବସ ଅବସରରେ ମୁଁ ଆହ୍ୱାନ କରୁଛି । ଆସନ୍ତୁ, ଜାତୀୟ ଜାଗରଣର ଏହି ନୂତନ ପର୍ବରେ ନିଜ ନିଜର ଦାୟିତ୍ୱକୁ ସଫଳତାର ସହ ତୁଲାଇବା ଏବଂ ନିଜର କାର୍ଯ୍ୟ ଦ୍ୱାରା ରାଜ୍ୟର ଗୌରବ ବଢାଇବା ।

ବନ୍ଦେ ଉତ୍କଳ ଜନନୀ ।

ଓଡ଼ିଶା ଦିବସ –୨୦୧୩ ପାଳନ ଅବସରରେ

# ମାନ୍ୟବର ସୂଚନା ଓ ଲୋକ ସମ୍ପର୍କ,
# ଶକ୍ତି ମନ୍ତ୍ରୀ
# ଶ୍ରୀ ଅରୁଣ କୁମାର ସାହୁଙ୍କ
# ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ପବିତ୍ର ଓଡ଼ିଶା ଦିବସ ପାଳନର ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଓଡ଼ିଶା ଦିବସ ଆମ ସମସ୍ତଙ୍କ ପାଇଁ ଏକ ପବିତ୍ର ଓ ମହତ୍ତ୍ୱପୂର୍ଣ୍ଣ ଦିବସ । ସ୍ମୃତି, ସଂକଳ୍ପ ଓ ଆତ୍ମସମୀକ୍ଷାର ଦିବସ । ଏହି ଦିନ ଭାଷାଭିତ୍ତିକ ଏବଂ ସ୍ୱତନ୍ତ୍ର ରାଜ୍ୟ ଗଠନର ମହାନ ସ୍ୱପ୍ନ ସାକାର ହୋଇଥିଲା । ଆମେ ପାଇଥିଲୁ ଆମର ସ୍ୱତନ୍ତ୍ର ଭୌଗୋଳିକ ପରିସୀମା । ପ୍ରତିଷ୍ଠିତ ହୋଇଥିଲା ଆମର ସ୍ୱାଭିମାନ ଓ ପରିଚିତି। ଓଡ଼ିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟ ରୂପେ ଗଢି ତୋଳିବାକୁ ଯେଉଁମାନେ ଆପ୍ରାଣ ଉଦ୍ୟମ କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ରାଜା ହରିହର ମର୍ଦ୍ଦରାଜ, ବ୍ୟାସକବି ଫକୀରମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଙ୍କର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଦାଶ ଏବଂ ଆହୁରି ଅନେକ ନେତୃବୃନ୍ଦ ଅନ୍ୟତମ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଯେଉଁମାନଙ୍କ ସଂଗ୍ରାମ, ସାଧନା ଓ ସିଦ୍ଧିର ଫଳଶ୍ରୁତି, ସେହି ବନ୍ଦନୀୟ ବରପୁତ୍ରଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଆଧୁନିକ ସମୟରେ ଓଡ଼ିଶାର ଅସ୍ମିତା ଓ ପରିଚିତିକୁ ବିଭିନ୍ନ କ୍ଷେତ୍ରରେ ଯେଉଁମାନେ ପରିବ୍ୟାପ୍ତ କରିଛନ୍ତି, ସେମାନଙ୍କ ପ୍ରତି ସମ୍ମାନ ଜଣାଉଛି ।

ଓଡ଼ିଶାର ଇତିହାସ ଗୌରବମୟ । ମହାଭାରତ ସମୟରେ କଳିଙ୍ଗର ଭୌଗୋଳିକ ସ୍ୱତନ୍ତ୍ରତା ଓ ପରିଚିତିର ପ୍ରମାଣ ମିଳିଛି । ଓଡ଼ିଶାର ନୌବାଣିଜ୍ୟ ପରମ୍ପରା ଅତ୍ୟନ୍ତ ସମୃଦ୍ଧ । ଓଡ଼ିଆ ସାଧବପୁଅ ଜାଭା, ବୋର୍ଣ୍ଣିଓ ଏବଂ ବାଲିଦ୍ୱୀପ ଆଦି ବିଭିନ୍ନ ସ୍ଥାନରେ ବାଣିଜ୍ୟ କରି ଓଡ଼ିଶାକୁ ସମୃଦ୍ଧ କରିବା ସହ ଓଡିଆ ସଂସ୍କୃତିର ପ୍ରସାର କରିଥିଲା । ବୀରତ୍ୱ ଓ ସାହସ ତଥା ସ୍ନେହ ଓ ସୌହାର୍ଦ୍ଦ୍ୟର ଅପୂର୍ବ ଗାଥାରେ ଭରପୂର ଓଡ଼ିଶାର ଇତିହାସ । ଏଇ ମାଟିରେ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇଥିଲେ ଓ ବଦଳି ଯାଇଥିଲା ଇତିହାସର ଗତିପଥ । ଓଡ଼ିଆ ପାଇକର ବୀରତ୍ୱ ଆମର ଗୌରବ । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ଐତିହ୍ୟ, ପରମ୍ପରା, ଚିତ୍ରକଳା, ସ୍ଥାପତ୍ୟ ଓ ଜୀବନ ଶୈଳୀର ସ୍ୱତନ୍ତ୍ର ପରିଚୟ ରହିଛି । ଜୈନଧର୍ମ, ବୌଦ୍ଧଧର୍ମ, ଶୈବଧର୍ମ ଏବଂ ବୈଷ୍ଣବ ଧର୍ମର ସାରବତ୍ତାକୁ ନେଇ ଓଡ଼ିଶାର ଜଗନ୍ନାଥ ସଂସ୍କୃତି ଋଦ୍ଧିମନ୍ତ ହୋଇଛି । ଶାନ୍ତି, ସଂହତି ଓ ପ୍ରଗତିର ବାର୍ତ୍ତା ଯୁଗେ ଯୁଗେ ପ୍ରସାର କରିଛି ଓଡ଼ିଶା ।

ସ୍ୱତନ୍ତ୍ର ଓଡ଼ିଶା ଗଠନ ପରେ ରାଜ୍ୟ ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ପ୍ରଗତି ହାସଲ କରୁଛି । ଆହୁରି ଅନେକ ପଥ ଅତିକ୍ରମ କରିବାକୁ ଅଛି । ଓଡ଼ିଶାର ସମ୍ବଳ, ସାମର୍ଥ୍ୟ ଓ ସମ୍ଭାବନାର ସଫଳ ଉପଯୋଗ କରି ଓଡ଼ିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବାକୁ ଉଦ୍ୟମ ହେଉଛି ।

କୃଷି ଆମର ମୁଖ୍ୟ ଜୀବିକା । ତେଣୁ କୃଷି ଓ କୃଷକର ସର୍ବାଙ୍ଗୀନ ବିକାଶ ନିମନ୍ତେ ସରକାର ଗୁରୁତ୍ୱାରୋପ କରୁଛନ୍ତି । ନୂତନ କୃଷି ନୀତି ପ୍ରଣୟନ ସହ କୃଷି ପାଇଁ ସ୍ୱତନ୍ତ୍ର ବଜେଟ୍ କରାଯାଇଛି । କୃଷି ଉଦ୍ୟୋଗୀମାନଙ୍କ ପାଇଁ ରିହାତି ପ୍ରଦାନ ସହ ଜଳସେଚନ ବ୍ୟବସ୍ଥା ଉପରେ ଅଗ୍ରାଧିକାର ଦିଆଯାଇଛି ।

ଅର୍ଥନୈତିକ ଅଭିବୃଦ୍ଧି ଏବଂ ଦାରିଦ୍ର୍ୟ ହାର ହ୍ରାସ କ୍ଷେତ୍ରରେ ଓଡ଼ିଶା ଉଲ୍ଲେଖନୀୟ ସଫଳତା ହାସଲ କରିଛି । ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ ୨୦୦୪-୦୫ ମୂଲ୍ୟଭିତ୍ତିରେ ୮.୨୩ ପ୍ରତିଶତ ହାରାହାରି ପ୍ରକୃତ ବାର୍ଷିକ ଅଭିବୃଦ୍ଧି ହାର ହାସଲ କରାଯାଇପାରିଛି । ରାଜ୍ୟରେ ମୁଣ୍ଡପିଛା ଆୟରେ ଆଖିଦୃଶିଆ ବୃଦ୍ଧି ହୋଇଥିବା ବେଳେ ଦାରିଦ୍ର୍ୟ ହାର ହ୍ରାସ ପାଇଛି । ଏହା ସହିତ ଅନ୍ୟାନ୍ୟ ମାନବ ବିକାଶ ସୂଚକାଙ୍କରେ ଉନ୍ନତି ଆସିଛି । ସମାଜର ପଛୁଆବର୍ଗଙ୍କୁ ବିକାଶର ମୁଖ୍ୟ ଧାରାରେ ସାମିଲ କରାଯାଇ ପାରିଛି ।

ଓଡ଼ିଶାରେ ପ୍ରଚୁର ପ୍ରାକୃତିକ ସମ୍ପଦ ଭରି ରହିଛି । ଏହାର ସୁବିନିଯୋଗ କରି ରାଜ୍ୟରେ ଦ୍ରୁତ ଶିଳ୍ପାୟନ କରାଯାଉଛି । ଶିଳ୍ପ କ୍ଷେତ୍ରରେ ୮ଲକ୍ଷ କୋଟିରୁ ଅଧିକ ଟଙ୍କାର ପୁଞ୍ଜି ବିନିଯୋଗ ପ୍ରସ୍ତାବ ରହିଛି । ଏହା ସହିତ ଛୋଟ ଛୋଟ ଶିଳ୍ପ ପ୍ରତିଷ୍ଠା ପୂର୍ବକ ବ୍ୟାପକ ନିଯୁକ୍ତି ସୁଯୋଗ ସୃଷ୍ଟି ନିମନ୍ତେ ଗୁରୁତ୍ୱ ଦିଆଯାଉଛି ।

କୃଷି ଓ ଶିଳ୍ପ ସହିତ ଜଳସେଚନ, ରାସ୍ତାଘାଟ, ବନ୍ଦର ଆଦି ଭିତ୍ତିଭୂମିର ବିକାଶ ନିମନ୍ତେ ଫଳପ୍ରସୂ ଉଦ୍ୟମ ଜାରି ରହିଛି ।

ମହିଳା ସଶକ୍ତିକରଣ କ୍ଷେତ୍ରରେ ମିଶନ ଶକ୍ତି ଆଜି ସାରା ରାଜ୍ୟରେ ମା'ମାନଙ୍କ ଭିତରେ ଅଭୂତପୂର୍ବ ଜାଗରଣ ଆଣିପାରିଛି । ଏକ ଲକ୍ଷ ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ୧୦ ହଜାର ଟଙ୍କା ଲେଖାଏଁ ସହାୟତା ପ୍ରଦାନ କରାଯାଇଛି । ମମତା, ଜନନୀ ସୁରକ୍ଷା ଯୋଜନା, ଶକ୍ତିମୟୀ ଯୋଜନା, ପ୍ରତ୍ୟେକ ଥାନାରେ ମହିଳା ଓ ଶିଶୁ ଡେସ୍କ ପ୍ରତିଷ୍ଠା ଆଦି ଅନେକ କାର୍ଯ୍ୟକ୍ରମ ସହ ପଞ୍ଚାୟତିରାଜ ଅନୁଷ୍ଠାନ ଓ ପୌର ପରିଷଦମାନଙ୍କରେ ମହିଳାମାନଙ୍କ ପାଇଁ ୫୦ ପ୍ରତିଶତ ଆସନ ସଂରକ୍ଷଣ କରାଯାଇଛି ।

ଯୁବଶକ୍ତି ହିଁ ରାଷ୍ଟ୍ରଶକ୍ତି। ଆଗାମୀ ୫ ବର୍ଷରେ ୧୦ ଲକ୍ଷ ଯୁବକଯୁବତୀଙ୍କ ନିଯୁକ୍ତି ସାମର୍ଥ୍ୟ ବଢାଇବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ଯୁବଶକ୍ତିର ଉଚିତ୍ ମୂଲ୍ୟାୟନ ନିମନ୍ତେ ଯୁବନୀତି ପ୍ରଣୟନ କରାଯାଉଛି ।

ଶକ୍ତି ହେଉଛି ପ୍ରଗତିର ଏକ ସୂଚକ । ଓଡ଼ିଶା ବିଦ୍ୟୁତ ଶକ୍ତି କ୍ଷେତ୍ରରେ ବଳକା ରାଜ୍ୟ ହେବାକୁ ଯାଉଛି । ଶକ୍ତି ଭିତ୍ତିଭୂମିର ଉନ୍ନତି ତଥା ଗୁଣାତ୍ମକ ଓ ନିରନ୍ତର ଶକ୍ତି ଯୋଗାଣ ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ରାଜ୍ୟରେ ଅଣପାରମ୍ପରିକ ଶକ୍ତି ଉତ୍ସର ବିକାଶ ନିମନ୍ତେ ସବୁଜ ଶକ୍ତି ଉନ୍ନୟନ ନିଗମ ଗଠିତ ହୋଇଛି ।

ଗରିବ ଲୋକ, ମହିଳା, ଆଦିବାସୀ, ଦଳିତ, ଶ୍ରମିକ ଓ ଭିନ୍ନକ୍ଷମ ଆଦି ସବୁ ବର୍ଗର ଲୋକମାନଙ୍କ କଲ୍ୟାଣ ନିମନ୍ତେ ପଦକ୍ଷେପ ନିଆଯାଇଛି । ଖାଦ୍ୟ ନିରାପତ୍ତା ସୁନିଶ୍ଚିତ କରିବା ଲକ୍ଷ୍ୟରେ ଏକ ଟଙ୍କାରେ ଏକ କେ.ଜି. ଚାଉଳ ଯୋଗାଣ ହେଉଛି ।

ବିଜୁ କେବିକେ ଯୋଜନା, ବିଜୁ କନ୍ଧମାଳ ଓ ଗଜପତି ଯୋଜନା, ଗୋପବନ୍ଧୁ ଗ୍ରାମୀଣ ଯୋଜନା, ବିଜୁ ଗ୍ରାମ ଜ୍ୟୋତି ଯୋଜନା, ବିଜୁ ସହରାଞ୍ଚଳ ବିଦ୍ୟୁତିକରଣ ଯୋଜନା, ମଧୁବାବୁ ପେନ୍‌ସନ ଯୋଜନା, ବିଜୁ ସ୍ୱାସ୍ଥ୍ୟ ଶିବିର, ଭୀମଭୋଇ ସାମର୍ଥ୍ୟ ଶିବିର, ଜଳନିଧି ଯୋଜନା, ପ୍ରାଣୀଧନ ବିକାଶ ଯୋଜନା, କଲ୍ୟାଣୀ, ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ବୀମା ଯୋଜନା, ଜରୁରିକାଳୀନ ମେଡିକାଲ ଆମ୍ବୁଲାନ୍ସ ସେବା, ବୁଣାକାରଙ୍କ ପାଇଁ ସ୍ୱତନ୍ତ୍ର ପ୍ୟାକେଜ୍, ମୋ' କୁଡିଆ ଯୋଜନା, ଶୀତବସ୍ତ୍ର ସହାୟତା, ଗ୍ରାମ୍ୟ ସିମେଣ୍ଟ କଂକ୍ରିଟ୍ ରାସ୍ତା କାର୍ଯ୍ୟକ୍ରମ, ନିର୍ମାଣ ଶ୍ରମିକଙ୍କ ନିମନ୍ତେ ସ୍ୱତନ୍ତ୍ର ପ୍ୟାକେଜ୍ ଆଦି ଅନେକ କାର୍ଯ୍ୟକ୍ରମ ମାଧ୍ୟମରେ ରାଜ୍ୟର ପ୍ରତ୍ୟେକ ବର୍ଗର ଲୋକଙ୍କ ଜୀବନଧାରଣ ମାନରେ ଉନ୍ନତି ଅଣାଯାଇପାରିଛି ।

ଓଡ଼ିଶାର ଭବିଷ୍ୟତ ଅତ୍ୟନ୍ତ ଉଜ୍ଜ୍ୱଳ, ଉଲ୍ଲେଖନୀୟ ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧି ଏକ ଶୁଭ ସୂଚନା ଦେଉଛି । ଆସନ୍ତୁ, ସମସ୍ତେ ମିଶି ଏକ ସମୃଦ୍ଧ ଓ ସ୍ୱାଭିମାନୀ ଓଡ଼ିଶା ଗଠନ ପାଇଁ ଆଜିର ଏହି ପବିତ୍ର ଦିବସରେ ସଂକଳ୍ପବଦ୍ଧ ହେବା ।

ବନ୍ଦେ ଉତ୍କଳ ଜନନୀ ।

**ସମ୍ପାଦକୀୟ**

# ଉତ୍କଳସ୍ୟ ସମୋଦେଶ
# ଦେଶନାସ୍ତି ମହୀ ତଳେ

ଉତ୍କଳ ଦିବସ ପୁନରାୟ ଆସିଛି । ସବୁବର୍ଷ ଅପ୍ରେଲ ପହିଲାରେ ଉତ୍କଳ ଦିବସ ପାଳନ ହୁଏ, ଏଥିରେ ନୂତନତ୍ୱ କ'ଣ ରହିଲା । ଗତାନୁଗତିକତାରେ ସବୁ କଥା ଚାଲିଛି । ଚାଲିଥିବ । ହେଲେ ଯେଉଁମାନେ ଓଡ଼ିଶାକୁ ତା'ର ଭାଷା, ସଂସ୍କୃତି, ନଦନଦୀ, ପାହାଡ, ପର୍ବତ ଓ ସର୍ବୋପରି ଓଡ଼ିଶା ବୋଲି ଯେଉଁ ଭୂଖଣ୍ଡଟି ଭୂଗୋଳ ପୋଥିରେ ଅଛି, ସେଠାରେ ବାସ କରୁଥିବା ଜନଗଣଙ୍କୁ ଭଲପାଆନ୍ତି, ସେମାନଙ୍କ ମମତା ଡୋରରେ ଭାବପ୍ରବଣ ହୋଇ ବନ୍ଧା ହୋଇଥାଆନ୍ତି, ସେମାନଙ୍କ ପାଇଁ ଏ ଦିବସ ଗୋଟିଏ ଗତାନୁଗତିକ ଦିନଟିଏ ବା ଇଂରାଜୀ କ୍ୟାଲେଣ୍ଡର ବର୍ଷର ଚତୁର୍ଥ ମାସର ପହିଲା ତାରିଖଟିଏ ନୁହେଁ । ଏହା ହେଉଛି ସେମାନଙ୍କର ପରିଚୟ, ସେମାନଙ୍କ ଅସ୍ମିତା ଓ ଆତ୍ମଗୌରବର ଦିବସ ।

ଓଡ଼ିଶା ବୋଲି ଆମକୁ ୧୯୩୬ ଅପ୍ରେଲ ପହିଲାରେ ଆମ ଇଂରେଜ ମାଲିକମାନେ ଆମକୁ ଯେଉଁ ଭୂମିଖଣ୍ଡକ ପ୍ରଦାନ କରିଥିଲେ, ତାହା ଆଗଙ୍ଗା-ଗୋଦାବରୀ ବିସ୍ତୃତ ମହାନ୍ ଉତ୍କଳ ସାମ୍ରାଜ୍ୟର ପ୍ରାୟ ଦଶମାଂଶରୁ ଏକ ଭାଗ ବା ତା'ଠାରୁ କମ୍ । ପରେ ୧୯୪୮ ଜାନୁଆରୀ ପହିଲାରେ ଓଡ଼ିଆ ଭାଷାଭାଷୀ ୨୬ଟି ଦେଶୀୟ ରାଜ୍ୟ ବା ଗଡଜାତର ରାଜାମାନେ ନିଜ ରାଜ୍ୟକୁ ଓଡ଼ିଶାରେ ମିଶାଇ ଦେବା ପାଇଁ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଓ ଭାରତବର୍ଷର ତତ୍କାଳୀନ ଗୃହମନ୍ତ୍ରୀ, ଭାରତୀୟ ରାଜନୀତିର ଲୌହପୁରୁଷ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଉପସ୍ଥିତିରେ ଯେଉଁ ଚୁକ୍ତିପତ୍ର ଲେଖି ଦେଲେ, ତା'ଫଳରେ ଓଡ଼ିଶାର ସୀମା ବେଶ୍ ବିସ୍ତୃତ ହୋଇଥିଲା । ମାତ୍ର ପରେ କେନ୍ଦ୍ର ସରକାର ପ୍ରବଞ୍ଚନା କରି ଓଡ଼ିଶାରୁ ଷଢେଇକଳା ଓ ଖରସୁଆଁ ଦୁଇ ଗଡଜାତ ରାଜ୍ୟକୁ ଅଲଗା କରି ବିହାରରେ ମିଶାଇ ଦେଲେ, ଯାହାକୁ ଓଡ଼ିଶା ଆଉ ଫେରି ପାଇଲା ନାହିଁ ।

ସେହିପରି ମେଦିନୀପୁର, ବସ୍ତର, ଶ୍ରୀକୂର୍ମ ବା ଶ୍ରୀକାକୁଲମ୍, ବିଜୟନଗର(ମ୍), ରାୟଗଡ (ଛତିଶଗଡ) ଫୁଲଝର ଇତ୍ୟାଦି ବ୍ୟାପକ ଓଡ଼ିଆ ଅଞ୍ଚଳ ସବୁଦିନ ପାଇଁ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଗଲା ।

ଏହା ଥିଲା ଓଡ଼ିଆ ପ୍ରାଣ ମଣିଷଙ୍କ ପାଇଁ ଦାରୁଣ ବେଦନା ଦାୟକ ଓ ହୃଦୟବିଦାରକ ଘଟଣା ।

ଉତ୍କଳଗୌରବ ମଧୁସୂଦନ ଦାସ ଓଡ଼ିଆ ଜାତିକୁ ଏକ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବାରେ ମହାନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଓଡ଼ିଆ ଜାତିର ସ୍ୱାଭିମାନ ଓ ଅସ୍ମିତା ପାଇଁ ସେ ଶୟନେ, ସପନେ ଓ ଜାଗରଣେ ଓଡ଼ିଶା ଦେଶ ଓ ଓଡ଼ିଆ ମଣିଷଙ୍କର ଅଭ୍ୟୁତ୍ଥାନର କଥା ଚିନ୍ତା କରୁଥିଲେ, ଯାହା ଫଳରେ ଆମେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ପାଇ ପାରିଲୁ ।

ମାତ୍ର ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବା ଯାଏଁ ଉତ୍କଳଗୌରବ ଜୀବିତ ନଥିଲେ । ହେଲେ ତାଙ୍କ ଅବର୍ତ୍ତମାନରେ ଓଡ଼ିଶା ପ୍ରଦେଶ ଗଠନ ହେଲା ଏବଂ ଏହି ସ୍ୱତନ୍ତ୍ର ପ୍ରଦେଶକୁ ବାସ୍ତବ ରୂପ ଦେବା ପାଇଁ ଅର୍ଥାତ୍ ଗଜପତି ଜିଲ୍ଲା ତଥା ଅବିଭକ୍ତ କୋରାପୁଟ ଜିଲ୍ଲା (ସେତେବେଳେ ତାହା ଜୟପୁର ଜମିଦାରୀ ନାମରେ ପରିଚିତ ଥିଲା) ଦ୍ୱୟକୁ ଓଡ଼ିଶାର ମାନଚିତ୍ରରେ ଅନ୍ତର୍ଭୁକ୍ତ କରିବା ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଭୂମିକା ଅବିସ୍ମରଣୀୟ । ପ୍ରାତଃସ୍ମରଣୀୟ ଗଜପତି ମହାରାଜାଙ୍କ ପାଇଁ ଦକ୍ଷିଣ ଓଡ଼ିଶାର ସମ୍ପୂର୍ଣ୍ଣ ଇଲାକା ନହେଲା ନାହିଁ, କିଞ୍ଚିତ ଅଞ୍ଚଳ ଓଡ଼ିଶାକୁ ଆସି ପାରିଥିଲା ।

ସ୍ୱାଧୀନତା ପରେ ଷଢେଇକଳା, ଖରସୁଆଁ ଓଡ଼ିଶାକୁ ଆସି ମଧ୍ୟ ତାକୁ ହରାଇବାକୁ ପଡିଥିଲା । ଏହାଥିଲା ଓଡ଼ିଆ ଜାତୀୟତାର ବିଷାଦ ଯୋଗ । ତତ୍କାଳୀନ ନେତୃବୃନ୍ଦ ଓଡ଼ିଶାର ସ୍ୱାର୍ଥ ରକ୍ଷା କରିବାରେ ସମର୍ଥ ହୋଇନଥିଲେ । ଓଡ଼ିଶାରେ ଘୋର ପରିଚୟ ସଙ୍କଟ ସୃଷ୍ଟି ହୋଇଥିଲା । ଓଡ଼ିଆ ଜାତୀୟତା ଆତ୍ମଗ୍ଲାନୀ ଓ ନ୍ୟୂନ ମନୋଭାବର ଶୀକାର ହେଲା ।

ସର୍ବଭାରତୀୟ ସ୍ତରରେ ଓଡ଼ିଶାର ପରିଚୟ କିଛି ବି ନଥିଲା । ଷାଠିଏ ଓ ସତୁରୀ ଦଶକରେ ଉତ୍ତର ଭାରତର ସର୍ବତ୍ର ଓଡ଼ିଆଙ୍କୁ ଗୋଟିଏ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡୁଥିଲା । ତାହା ଥିଲା, 'ଓଡ଼ିଶା ? ଓ କାହାଁ ପର ହେ ??' କେବଳ ଜଗନ୍ନାଥ ପୁରୀ କହିଲେ ଧାର୍ମିକ ହିନ୍ଦୁମାନେ ଓଡ଼ିଶା ସମ୍ପର୍କରେ କିଞ୍ଚିତ ଜାଣିବା ପାଇଁ ସମର୍ଥ ହେଉଥିଲେ । ଏହି ପରିଚୟ ସଙ୍କଟର ସମୟରେ ଓଡ଼ିଶାରେ ଜଣେ ବିଶାଳ ବ୍ୟକ୍ତିତ୍ୱର ଅଧିକାରୀ ବା ଏହା କୁହାଯାଇ ପାରେ ଯେ, ଜଣେ ମହାନାୟକ ଆବିର୍ଭୂତ ହୋଇ ଓଡ଼ିଆ ସ୍ୱାଭିମାନ ଓ ଅସ୍ମିତା ରକ୍ଷା କରିବା ପାଇଁ ସଂଗ୍ରାମ ଆରମ୍ଭ କରି ଦେଲେ । ଆଜି ସ୍ୱାଧୀନୋତ୍ତର ଓଡିଶାରେ ଯାହା ଯାହା ଆଖିଦୃଶିଆ କିଛିବି ଦେଖିବାକୁ ମିଳେ, ତାହା ସେହି ମହାନାୟକର ଦୃଢ ମନୋବଳ, କଠିନ ଶ୍ରମ ଓ ବ୍ୟାପକ ଦୂରଦୃଷ୍ଟିର ଫଳଶ୍ରୁତି । ସେହି ମହାନାୟକ ହେଉଛନ୍ତି କୋଟି ଓଡ଼ିଆଙ୍କର କିରୀଟ ବିହୀନ ସମ୍ରାଟ, ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ । ତାଙ୍କୁ ଓଡ଼ିଆ ଜନମାନସ 'କଳିଙ୍ଗ କେଶରୀ' ଭାବେ ମଧ୍ୟ ଗ୍ରହଣ କରିଅଛି ।

ବିଜୁବାବୁଙ୍କ ନେତୃତ୍ୱରେ ଓଡ଼ିଆ ଜାତି ନିଜକୁ ନିଜେ ଚିହ୍ନି, ପରକୁ ଚିହ୍ନାଇବାରେ ସମର୍ଥ ହେଲା । ଦୁଃଖର କଥା, ଆଜି ସେଇ ମଧୁବାବୁ, ଗଜପତି ଓ ବିଜୁବାବୁଙ୍କ ଦାୟାଦ ଓଡ଼ିଆମାନେ ନିଜକୁ ନିଜେ ଚିହ୍ନିବାକୁ କୁଣ୍ଠିତ ।

ସୁଖର କଥା ବିଜୁବାବୁଙ୍କ ସୁପୁତ୍ର ନବୀନବାବୁଙ୍କ ନେତୃତ୍ୱରେ ଓଡ଼ିଆ ଜାତି ପୁଣି ଆଜି ନିଜକୁ ନିଜେ ଚିହ୍ନିବାକୁ ନିଜର ଅସ୍ମିତାର ସୁରକ୍ଷା ପାଇଁ ମହାଭାରତୀୟତାର ଖୋଳପାରୁ ବାହାରି ଉତ୍କଳୀୟ ସ୍ୱାଭିମାନର ଲଢେଇରେ ସାମିଲ୍ ହେବା ପାଇଁ ଦୀର୍ଘ ୧୩ବର୍ଷ ହେଲା ପ୍ରଚେଷ୍ଟା ଚଳାଇ ଆସୁଛନ୍ତି । ଆଜି ତାହା ଅନେକାଂଶରେ ସଫଳ ହୋଇପାରିଛି । ଆସନ୍ତୁ ଆଜି ଉତ୍କଳ ଦିବସର ଏଇ ପବିତ୍ର ମୁହୂର୍ତ୍ତରେ ଆମ ରାଜ୍ୟକୁ, ଆମ ଜାତିକୁ ଓ ଆମ ଭୂଖଣ୍ଡକୁ ସର୍ବଶ୍ରେଷ୍ଠ ଭୂଖଣ୍ଡରେ ପରିଣତ କରି ଗର୍ବର ସହିତ ପୁନରାୟ କହିବା–

''ବର୍ଷାଣାଂ ଭାରତ ଶ୍ରେଷ୍ଠ, ଦେଶାଣାଂ ଉତ୍କଳ ଶୃତ ।
ଉତ୍କଳସ୍ୟ ସମୋଦେଶ, ଦେଶ ନାସ୍ତି ମହୀ ତଳେ ।''

ଏହି ଗର୍ବ ଓ ଗୌରବ, ନିଜକୁ ଓଡ଼ିଆ ବୋଲି କହିଲେ, ନିଜକୁ ନିଜେ ଚିହ୍ନି ପାରିଲେ ହିଁ ସମ୍ଭବପର ହୋଇପାରିବ ।

ବନ୍ଦେ ଉତ୍କଳ ଜନନୀ ।

## ଡକ୍ଟର ଉମେଶ ପତ୍ରୀଙ୍କ ବିୟୋଗରେ

ଦାରୁଣ ଦୁଃଖର କଥା ଓଡ଼ିଆ ସାହିତ୍ୟର ଅନନ୍ୟ ଓ ବ୍ୟତିକ୍ରମ ସ୍ରଷ୍ଟା ପ୍ରଫେସର ଉମେଶ ପତ୍ରୀ ଆମ୍ଭମାନଙ୍କଠାରୁ ଗତ ଫେବୃୟାରୀ ୭ତାରିଖ ଦିନ ବିଦାୟ ଘେନି ଅମର ଧାମ ଯାତ୍ରା କରିଛନ୍ତି । ୧୯୪୬ ସାଲ୍ ମେ' ମାସ ୨୯ ତାରିଖରେ ସୁବର୍ଣ୍ଣପୁର ଜିଲ୍ଲାର ତରଭା ଗ୍ରାମରେ ଜନ୍ମିତ ଡକ୍ଟର ପତ୍ରୀ ଗତବର୍ଷ ଓଡ଼ିଶା ସାହିତ୍ୟ ଏକାଡେମୀର ପୁରସ୍କାର ପ୍ରତ୍ୟାଖ୍ୟାନ କରି ନିଜର ବ୍ୟତିକ୍ରମ ବ୍ୟକ୍ତିତ୍ୱର ପରିଚୟ ଦେଇଯାଇଛନ୍ତି । ତାଙ୍କର ବିୟୋଗ ଆମ ସାହିତ୍ୟ ପାଇଁ ସତରେ ଏକ ଅପୂରଣୀୟ କ୍ଷତି । ତାଙ୍କ ଆତ୍ମା ଶାନ୍ତି ଲାଭ କରୁ, ଏତିକି କାମନା ।

# ଓଡ଼ିଶା ଭୂଖଣ୍ଡର ଇତିବୃତ୍ତ

**ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର**

ପ୍ରାଚୀନ ଯୁଗରୁ ଓଡ଼ିଶା ଭୂଖଣ୍ଡ ଓଡ୍ର, ଓଡ୍ରବିଷୟ, କଳିଙ୍ଗ, ଉତ୍‌କଳିଙ୍ଗ, ଉତ୍କଳ, ତୋଷଳ, କଙ୍ଗୋଦ, କାନ୍ତାର, ମହାକାନ୍ତାର, କୋଶଳ, ମହାକୋଶଳ, ଓଡ୍‌ଭିସା, ଓଡ଼ିଶା ପ୍ରଭୃତି ବହୁ ନାମରେ ପରିଚିହ୍ନିତ ଥିଲା । ଉତ୍ତରରେ ପୁଣ୍ୟତୋୟା ଗଙ୍ଗା, ଦକ୍ଷିଣରେ ପାପନାଶିନୀ ଗୋଦାବରୀ, ପୂର୍ବରେ ମହାତୀର୍ଥ ମହୋଦଧି ଏବଂ ପଶ୍ଚିମରେ ଗିରିତୀର୍ଥ ଅମରକଣ୍ଟକ ପ୍ରାଚୀନ ଓଡ଼ିଶାର ଚତୁଃସୀମା ରୂପେ ଚିହ୍ନିତ ଥିଲା । ଏହି ବିସ୍ତୀର୍ଣ୍ଣ ଭୂଖଣ୍ଡ ପ୍ରାଥମିକ କାଳରେ କେତେକ କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇ ଭିନ୍ନ ଭିନ୍ନ ରାଜ୍ୟ ରୂପେ ପରିଗଣିତ ହେଉଥିଲେ ହେଁ ଭାବ ଓ ଭାଷା ଦୃଷ୍ଟିରୁ ଏହାର ଐକ୍ୟ ଅକ୍ଷୁଣ୍ଣ ରହିଥିଲା । ଏହି ଭୂଖଣ୍ଡର ନାମ ପ୍ରଥମେ ଓଡ଼ିଶା ନଥିଲା । ବିଭିନ୍ନ ଶାସ୍ତ୍ର ଓ ପୁରାଣ ଅଧ୍ୟୟନରୁ ଉପଲବ୍ଧ ହୁଏ, ପ୍ରାଥମିକ ପର୍ଯ୍ୟାୟରେ ଏହି ଭୂଖଣ୍ଡ କେତେବେଳେ କଳିଙ୍ଗ ଓ କେତେବେଳେ ଉତ୍କଳ ଅଥବା କଳିଙ୍ଗ ଓ ଉତ୍କଳ ଦୁଇଟି ବିଭିନ୍ନ ରାଜ୍ୟ ଭାବରେ ତଥା ପଶ୍ଚିମାଞ୍ଚଳ କୋଶଳ ବା ମହାକୋଶଳ ଏବଂ ଏହାର ଦକ୍ଷିଣାଂଶ କାନ୍ତାର ଓ ମହାକାନ୍ତାର ରୂପେ ପରିଚିତ । ନାମ ଭିନ୍ନ ହେଲେ ହେଁ ଆଚାର, ବିଚାର, ଶିକ୍ଷା ଓ ସଂସ୍କୃତି ଦୃଷ୍ଟିରୁ ଏହା ଅଭିନ୍ନ ଥିଲା ।

ପୂର୍ବ ମହୋଦଧି ତଟରେ ଅବସ୍ଥିତ ଏହି ଭୂଖଣ୍ଡ ଯୁଗେ ଯୁଗେ ପୂତ ଓ ପବିତ୍ର ଭୂମି ରୂପେ ଖ୍ୟାତ । ସମନ୍ୱୟ ଚେତନାର ପ୍ରତିଭୂ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଏହି ଭୂଖଣ୍ଡ ହେଉଛି ଲୀଳାସ୍ଥଳୀ । ନୀଳାଚଳ, ମହେନ୍ଦ୍ରାଞ୍ଚଳ, ସ୍ୱର୍ଣ୍ଣାଚଳ, ବ୍ରହ୍ମାଦ୍ରି, କପିଳାସ, ଗନ୍ଧମାର୍ଦ୍ଦନ, ମାଲ୍ୟଗିରି, ରାମଗିରି, ଖଣ୍ଡଗିରି, ରତ୍ନଗିରି, ଉଦୟଗିରି, ଲଳିତଗିରି, ସୁରଭଗିରି, ମଣିନାଗ, ସପ୍ତଶଯ୍ୟା ଓ ମେଘାସନ ପ୍ରଭୃତି ପୁରାଣ ପ୍ରସିଦ୍ଧ ଗିରିପର୍ବତ ଏହି ଭୂଖଣ୍ଡର ପ୍ରାକୃତିକ ଶୋଭାବର୍ଦ୍ଧନ କରୁଅଛନ୍ତି । ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ଚିତ୍ରୋତ୍ପଳା, ବିରୂପା, ପ୍ରାଚୀ, ଦେବୀ, ଦୟା, ଭାର୍ଗବୀ, ଖରସ୍ରୋତା, ଇନ୍ଦ୍ରାବତୀ, ଋଷିକୁଲ୍ୟା, ବଂଶଧାରା, ସୁବର୍ଣ୍ଣରେଖା ଓ ବୁଢାବଳଙ୍ଗ ପ୍ରଭୃତି ପୁଣ୍ୟତୋୟା ନଦୀ ସମୂହ ଏହି ଭୂଖଣ୍ଡରେ ପ୍ରବାହିତ ହୋଇ ଏହାର ପ୍ରତିଟି ଧୂଳିକଣାକୁ ପୂତ ଓ ପବିତ୍ର କରିଅଛନ୍ତି । ଶ୍ରୀକ୍ଷେତ୍ର ନୀଳାଚଳ, ଏକାମ୍ରକ୍ଷେତ୍ର ସ୍ୱର୍ଣ୍ଣାଦ୍ରି, ଅର୍କକ୍ଷେତ୍ର କୋଣାର୍କ, ଶୈଳ ଶୈବକ୍ଷେତ୍ର କପିଳାସ, ନୃସିଂହ କ୍ଷେତ୍ର ହରିଶଙ୍କର, ତୁଳସୀକ୍ଷେତ୍ର କେନ୍ଦ୍ରାପଡା, ଗଣପତି କ୍ଷେତ୍ର ମହାବିନାୟକ ଓ ଗୁପ୍ତବୃନ୍ଦାବନ ରେମୁଣା ପ୍ରଭୃତି ତୀର୍ଥ, ପୀଠକ୍ଷେତ୍ର ଓ ଧାମ ପ୍ରଭୃତି ଏହି ଭୂଖଣ୍ଡକୁ ମହତ୍ତ୍ୱପୂର୍ଣ୍ଣ ଆଧ୍ୟାତ୍ମିକ ମର୍ଯ୍ୟାଦା ପ୍ରଦାନ କରୁଛନ୍ତି । ବିରଜା, ବିମଳା, ଭଗବତୀ, ଶାରଳା, ମଙ୍ଗଳା, ଚର୍ଚ୍ଚିକା, ଭଟ୍ଟାରିକା, ତାରିଣୀ ପ୍ରଭୃତି ଶାକ୍ତ ଓ ତନ୍ତ୍ରପୀଠ ତଥା ପ୍ରତିଟି ଗ୍ରାମରେ ତନ୍ତ୍ରାରାଧ୍ୟା ଦେବୀ ବିରାଜିତା ଥିବାରୁ ଏହି ଭୂଖଣ୍ଡ ବିଶ୍ୱର ପ୍ରଥମ ତନ୍ତ୍ରପୀଠ ଭାବରେ ମହିମାମଣ୍ଡିତ । ଏହି ଭୂଖଣ୍ଡ ଯୁଗେ ଯୁଗେ ସାଧୁ ସନ୍ଥ, ମହାତ୍ମା ଓ ଯୋଗୀଙ୍କ ତପସ୍ଥଳୀ ଭାବରେ ସୁବିଦିତ । ମହାବୀର ଜୈନ, ଭଗବାନ ବୁଦ୍ଧ, ଆଦିଶଙ୍କରାଚାର୍ଯ୍ୟ, ମହାତ୍ମା ରାମାନୁଜ, ମହାକବି ଜୟଦେବ, ଭକ୍ତତୁଳସୀ ଦାସ, ଭକ୍ତ ମାଧବେନ୍ଦ୍ର ପୁରୀ, ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ, ପ୍ରେମାବତାର ଗୌରାଙ୍ଗ ମହାପ୍ରଭୁ, ପ୍ରାତଃସ୍ମରଣୀୟ ପଞ୍ଚସଖାବୃନ୍ଦ, ଗୁରୁନାନକ, ସନ୍ଥ କବୀର, ମହିମାସ୍ୱାମୀ ପ୍ରଭୃତି ଯୋଗଜନ୍ମା ମହାତ୍ମାଗଣ ଏହି ମାଟିରେ ପଦାର୍ପଣ କରି ଏହାକୁ ମହିମା ସମନ୍ୱିତ କରିଯାଇଛନ୍ତି । ଏହି ଭୂଖଣ୍ଡରେ ବୈଦିକ, ଅବୈଦିକ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ ଓ ଶାବର ପ୍ରତ୍ୟେକଟି ମତ ଓ ପଥର ଭାବଧାରା ପ୍ରବାହିତ ହୋଇ ଏହାକୁ ସମନ୍ୱୟ ରସାସିକ୍ତ କରିଯାଇଛନ୍ତି ।

ଏହି ଭୂଖଣ୍ଡର ଉତ୍ପତ୍ତି ସମ୍ପର୍କରେ ବହୁ ପୌରାଣିକ ଆଖ୍ୟାନ, ଲୋକକଥା ଓ କିମ୍ବଦନ୍ତୀ ଲୁକ୍‌କାୟିତ । ପୁରାଣ ଶାସ୍ତ୍ର

ସମୂହରେ ପୃଥିବୀକୁ ସପ୍ତଦ୍ୱୀପରେ ବିଭକ୍ତ କରାଯାଇଛି । ସେଗୁଡିକ ହେଉଛି– ଜମ୍ବୁ, ପ୍ଳକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର । ତନ୍ମଧ୍ୟରେ ଜମ୍ବୁଦ୍ୱୀପ ସର୍ବଶ୍ରେଷ୍ଠ । ସେହି ଜମ୍ବୁଦ୍ୱୀପ ନବ ଖଣ୍ଡରେ ବିଭାଜିତ ଏବଂ ପ୍ରତ୍ୟେକ ଖଣ୍ଡକୁ ବର୍ଷ କୁହାଯାଇଛି । ସେହି ବର୍ଷ ସମୂହ ହେଉଛି, ଭାରତବର୍ଷ, କିଂପୁରୁଷବର୍ଷ, ହରିବର୍ଷ, ଇଳାବୃତ ବର୍ଷ, ରମ୍ୟକବର୍ଷ, ହିରଣ୍ୟବର୍ଷ, କୁରୁବର୍ଷ, ଭଦ୍ରାଶ୍ୱବର୍ଷ ଓ କେତୁମାଳବର୍ଷ । ଭାରତବର୍ଷ ମଧ୍ୟ ପ୍ରାଥମିକ ପର୍ଯ୍ୟାୟରେ ନବ ଭାଗରେ ବିଭକ୍ତ ହୋଇଥିଲା । ତାହା ହେଉଛି ଇନ୍ଦ୍ରଦୀପ, ତାମ୍ରବର୍ଣ୍ଣ, ଗଭସ୍ତିମାନ୍, ନାଗଦୀପ, କଟାହ, ସିଂହଳ, ବାରୁଣ ଓ ସାଗରଦୀପ । ପରବର୍ତ୍ତୀ ମହାଭାରତ ଯୁଗରେ ସମଗ୍ର ଭାରତବର୍ଷ ଶତାଧିକ ଜନପଦରେ ବିଭକ୍ତ ହୋଇଗଲା । ଭାରତର ସ୍ୱାତନ୍ତ୍ର୍ୟ ହେଉଛି ପ୍ରତ୍ୟେକ ଜନପଦ ବା ରାଜ୍ୟ ନିବାସ କରୁଥିବା ଜାତିର ନାମାନୁଗତ । ଜାତିର ନାମ ଅନୁସାରେ ରାଜ୍ୟର ନାମ ତଥା ରାଜ୍ୟର ନାମାନୁସାରେ ଅଧିବାସୀଙ୍କ ନାମ ବିଭାଜିତ ରାଜ୍ୟର ଜାତୀୟ ପରିଚୟ ଥିଲା । ଏଥିରୁ ହୃଦ୍‌ବୋଧ ହୁଏ, ଭାରତବର୍ଷରେ ଅନେକ ଜାତି ନିବାସ କରୁଥିଲେ ତଥା ସେମାନେ ଭିନ୍ନ ଭିନ୍ନ ରାଜ୍ୟର ଅଧିବାସୀ ହେଲେ ହେଁ ଭାରତର ସାର୍ବଭୌମତ୍ୱକୁ ସ୍ୱୀକାର ପୂର୍ବକ ରାଷ୍ଟ୍ରୀୟ ସ୍ୱାଭିମାନରେ ଉତ୍‌ଫୁଲ୍ଲିତ ଥିଲେ । ମହାଭାରତ, ହରିବଂଶ, ବ୍ରହ୍ମାଣ୍ଡ ପୁରାଣ, ମତ୍ସ୍ୟପୁରାଣ, ବୃହତ୍‌ସଂହିତା, ସ୍କନ୍ଦ ପୁରାଣ, ବୌଦ୍ଧାୟନ ସୂତ୍ର, ଦିଗ୍‌ବିଜୟ ପ୍ରକାଶ, ତ୍ରିକାଣ୍ଡ କୋଷ, ଜ୍ଞାନସିଦ୍ଧି, ଅନର୍ଘରାଘବ ଶକ୍ତି ସଙ୍ଗମ ତନ୍ତ୍ର, କାଳିକା ପୁରାଣ ଓ କପିଳ ସଂହିତା ପ୍ରଭୃତି ଶାସ୍ତ୍ର ସମୂହରେ ଉତ୍କଳ, କଳିଙ୍ଗ, କୋଶଳ, ଓଡ୍ର ପ୍ରଭୃତି ନାମରେ ଓଡ଼ିଶା ଭୂଖଣ୍ଡ ପରିଚିହ୍ନିତ ଥିଲା ।

ଓଡ଼ିଶା ଭୂଖଣ୍ଡ ଓଡ୍ର, ଉତ୍କଳ, କଳିଙ୍ଗ ପ୍ରଭୃତି ରାଜ୍ୟରେ ପରିଣତ ହେବା ପୂର୍ବରୁ ଶବର ଅଧ୍ୟୁଷିତ ଭୂମି ଥିଲା । ପରେ ଦ୍ରାବିଡମାନେ ଏବଂ ତତ୍‌ପରେ ଆର୍ଯ୍ୟମାନେ ଏହି ଭୂଖଣ୍ଡରେ ପ୍ରବେଶ କରି ସ୍ଥାୟୀ ଭାବରେ ବସବାସ କଲେ । ପୁରାଣ ରଚନା ସମୟକୁ ଏହି ଅଞ୍ଚଳର ଯେଉଁ ସୀମା ବର୍ଣ୍ଣନା କରାଯାଇଛି ତଦନୁଯାୟୀ ଉତ୍ତରରେ ଗଙ୍ଗା, ଦକ୍ଷିଣରେ ଗୋଦାବରୀ, ପୂର୍ବରେ ମହୋଦଧି ଓ ପଶ୍ଚିମରେ ପର୍ବତମାଳା ହିଁ ପ୍ରାଚୀନ ଓଡ଼ିଶାର ପରିସୀମା ଥିଲା । ଏହି ବିସ୍ତୃତ ଭୂଖଣ୍ଡର ମେଦିନୀପୁର, ସିଂହଭୂମ, ବାଙ୍କୁଡା, ମୟୂରଭଞ୍ଜ, ବାଲେଶ୍ୱର ପ୍ରଭୃତି ଅଞ୍ଚଳକୁ ଉତ୍କଳ, ତହିଁର ଦକ୍ଷିଣାଞ୍ଚଳକୁ କଳିଙ୍ଗ ଓ ପଶ୍ଚିମାଞ୍ଚଳକୁ କୋଶଳ କୁହାଯାଉଥିଲା । ଗ୍ରୀକ୍‌ଦୂତ ମେଘାସ୍ଥିନିସ୍‌ଙ୍କ ଭାରତ ବିବରଣୀରୁ ଉପାଦାନ ସଂଗ୍ରହ କରି ପ୍ଲୀନୀ ଭାରତଭୂମିର ଯେଉଁ ଭୂଗୋଳ ଲେଖିଛନ୍ତି, ତଦନୁସାରେ କଳିଙ୍ଗର ସୀମା ଉତ୍ତରରେ ଗଙ୍ଗା, ଦକ୍ଷିଣରେ ଗୋଦାବରୀ, ପୂର୍ବରେ ସମୁଦ୍ର ଓ ପଶ୍ଚିମରେ ପର୍ବତମାଳା ଥିଲା ଏହିସବୁ ତଥ୍ୟ ଉପରେ ନିର୍ଭର କରି କଲିଙ୍ଗହାମ୍ ଭାରତର ପ୍ରାଚୀନ ଭୂଗୋଳ ନିର୍ଣ୍ଣୟ କରିଛନ୍ତି, ଯହିଁରେ ଓଡ଼ିଶା ଭୂଖଣ୍ଡର ତିନି ଅଞ୍ଚଳର ସୀମା ପୁରାଣ ବର୍ଣ୍ଣନାନୁସାରେ ନିରୂପିତ । (୧) ଏହି ଭୂଖଣ୍ଡରେ ଥିବା ତିନିଗୋଟି ଅଞ୍ଚଳର ସୀମା ବାରମ୍ବାର ପରିବର୍ତ୍ତିତ ହେଉଥିଲା ବୋଲି ପୁରାଣଶାସ୍ତ୍ର ସମୂହରୁ ଜଣାଯାଏ । ଉତ୍କଳ ରାଜ୍ୟର ଦକ୍ଷିଣ ସୀମା ବୈତରଣୀ ପର୍ଯ୍ୟନ୍ତ ଥିଲେ ହେଁ ଏହା ପରବର୍ତ୍ତୀ କାଳରେ ମହାନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । କଳିଙ୍ଗ ରାଜ୍ୟ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲେ ହେଁ ଦୁଇ ରାଜବଂଶରେ ସଂଘର୍ଷ ଫଳରେ ଉତ୍କଳ ଓ କଳିଙ୍ଗ ମଝିରେ ପୁରୀ ଓ ଗଞ୍ଜାମ ଅଞ୍ଚଳକୁ ନେଇ କଙ୍ଗୋଦ ନାମକ ଏକ ନୂତନ ରାଜ୍ୟର ସୃଷ୍ଟି ହୋଇଥିଲା, କାଳକ୍ରମେ ଉଡ୍ର ଓ ଉତ୍କଳ ଏକ ହୋଇଗଲେ । ତତ୍‌ପରେ ଉତ୍କଳ ଓ କଳିଙ୍ଗ ଗୋଟିଏ ରାଜ୍ୟର ଦୁଇଟି ଗୋଷ୍ଠୀ ଭାବରେ ପ୍ରତିଭାତ ହେଲେ । ସେହି ସମୟରେ ଏହି ଦୁଇଗୋଷ୍ଠୀର ଭାଷା, ସ୍ୱର ଓ ଲିପି ଗୋଟିଏ ଥିଲା । ଏତଦ୍‌ଭିନ୍ନ ତ୍ରିକଳିଙ୍ଗ ବୋଲି ଅନ୍ୟ ଏକ ରାଜ୍ୟର ନାମ ପ୍ରାଚୀନ ଇତିହାସରେ ମିଳେ । ଗବେଷକମାନେ ଏହାକୁ ଉତ୍କଳ, କଙ୍ଗୋଦ ଓ କଳିଙ୍ଗର ସମଷ୍ଟି ବୋଲି ବିବେଚନା କରିଥାନ୍ତି । କେତେକଙ୍କ ମତରେ ଏହା ଆନ୍ଧ୍ର, ଅମରାବତୀ ଓ କଳିଙ୍ଗର ସମଷ୍ଟି । ଗୁରୁତ୍ୱପୂର୍ଣ୍ଣ ହେଉଛି, କଳିଙ୍ଗର ରାଜା ଉତ୍କଳ ଓ କଙ୍ଗୋଦ ଅଧିକାର ନକରି ମଧ୍ୟ ତ୍ରିକଳିଙ୍ଗାଧିପତି ବୋଲାଉଥିଲେ । (୨) ଏପରିକି କଳଚୁରୀ ବଂଶୀୟ ରାଜାମାନେ ମଧ୍ୟ ଏହି ଉପାଧି ବ୍ୟବହାର କରୁଥିଲେ । ସମୟେ ସମୟେ ଚାଲୁକ୍ୟ ବଂଶୀୟ ରାଜନ୍ୟବୃନ୍ଦ ମଧ୍ୟ ଏହି ଉପାଧି ବ୍ୟବହାର କରିଛନ୍ତି । ଏଥିରୁ ଉପଲବ୍‌ଧ ହୁଏ ତ୍ରିକଳିଙ୍ଗ ଏକ ସ୍ୱତନ୍ତ୍ର ରାଜ୍ୟ, ଯାହା ବିସ୍ତୀର୍ଣ୍ଣ ଓଡ଼ିଶା ଭୂଖଣ୍ଡରେ ଅବସ୍ଥିତ ଥିଲା । ବିଭିନ୍ନ ପ୍ରାଚୀନ ଅଭିଲେଖ ଅନୁଧ୍ୟାନ କଲେ ଜଣାଯାଏ କଳିଙ୍ଗର ଉତ୍ତରାଞ୍ଚଳ, ଗଞ୍ଜାମର ମାଳଅଞ୍ଚଳ ଓ ବସ୍ତର ପ୍ରଭୃତି ତ୍ରିକଳିଙ୍ଗ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । (୩) ଋଷିକୁଲ୍ୟା ଓ ଲାଙ୍ଗୁଲ୍ୟ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ଯଥା– ଗଞ୍ଜାମ, ଜୟପୁର, ବସ୍ତର, ପାଟଣା, କଳାହାଣ୍ଡି, ସମ୍ବଲପୁର, ସୋନପୁରକୁ ମିଶାଯାଇ ତ୍ରିକଳିଙ୍ଗ ରାଜ୍ୟ ଗଠନ ହୋଇଥିଲେ ହେଁ ଏହାର ସୀମା ଓ ରାଜଧାନୀ ସର୍ବଦା ପରିବର୍ତ୍ତନ ହେଉଥିଲା । କଳିଙ୍ଗ ଓ କୋଶଳର ରାଜନ୍ୟବୃନ୍ଦ ତ୍ରିକଳିଙ୍ଗ ରାଜ୍ୟ ସହିତ ସର୍ବଦା ସଂଘର୍ଷ କରୁଥିଲେ ବୋଲି ଶାସ୍ତ୍ର ଓ ଅଭିଲେଖରୁ ଜଣାଯାଏ ।

ଉପରୋକ୍ତ ଐତିହାସିକ ବର୍ଣ୍ଣନା ବ୍ୟତୀତ ପ୍ରାଚୀନଶାସ୍ତ୍ର ସମୂହରୁ ଜଣାଯାଏ ଯେ ଓଡ଼ିଶା ଭୂଖଣ୍ଡର ଇତିହାସ ବେଦ ଓ

ପୁରାଣ ଯୁଗରୁ ଆରମ୍ଭ ହୋଇଛି । ବୈଦିକ ସାହିତ୍ୟରେ କଳିଙ୍ଗ, ଉଡ୍ର ବା ଉତ୍କଳର ନାମ ନଥିଲେ ହେଁ ପରବର୍ତ୍ତୀ ବ୍ରାହ୍ମଣ ସାହିତ୍ୟ ମଧ୍ୟରୁ ଐତ୍ତରୀୟ ବ୍ରାହ୍ମଣରେ କଳିଙ୍ଗର ନାମୋଲ୍ଲେଖ ରହିଛି । (୪) ମହାଭାରତରେ ଉଲ୍ଲେଖ ରହିଛି ଯେ କଳିଙ୍ଗର ରାଜଧାନୀ ରାଜପୁରୀ ଥିଲା । ଦୁର୍ଯ୍ୟୋଧନଙ୍କ ସହ କର୍ଣ୍ଣ କଳିଙ୍ଗ ରାଜକନ୍ୟା ଚିତ୍ରାଙ୍ଗଦାଙ୍କ ସ୍ୱୟମ୍ବର ସଭାରେ ଉପସ୍ଥିତ ଥିଲେ । ରାଜକନ୍ୟା ଯେତେବେଳେ ଦୁର୍ଯ୍ୟୋଧନଙ୍କୁ ଅତିକ୍ରମ କରି ଚାଲିଗଲେ ସେତିକିବେଳେ ଦୁର୍ଯ୍ୟୋଧନ କଳିଙ୍ଗ ରାଜକନ୍ୟା ଚିତ୍ରାଙ୍ଗଦାଙ୍କୁ ବଳପୂର୍ବକ ଅପହରଣ କରିନେଲେ । କର୍ଣ୍ଣଙ୍କ ଯୋଗୁଁ ଦୁର୍ଯ୍ୟୋଧନଙ୍କୁ କେହି ବିରୋଧ କରିପାରିଲେ ନାହିଁ । ଏହି ସ୍ୱୟଂମ୍ବର ସଭା ରାଜପୁରୀରେ ହୋଇଥିଲା ବୋଲି ବର୍ଣ୍ଣନା ରହିଛି । ଏହି ଘଟଣାବ୍ୟତୀତ ଅନ୍ୟାନ୍ୟ ବହୁ ପ୍ରସଙ୍ଗରେ କଳିଙ୍ଗର ନାମ ମହାଭାରତରେ ଉଲ୍ଲେଖ ରହିଛି । ଦ୍ରୌପଦୀଙ୍କ ସ୍ୱୟଂମ୍ବର ସଭାରେ କଳିଙ୍ଗରାଜା ଉପସ୍ଥିତ ଥିଲେ ବୋଲି ବର୍ଣ୍ଣନା ରହିଛି । କଳିଙ୍ଗ ରାଜା ଶ୍ରୁତାୟୁ ଓ ତାଙ୍କର ତିନିପୁତ୍ର ଭାନୁମାନ, କେତୁମାନ ଓ ଶୁକ୍ରଦେବ ଷାଠିଏ ହଜାର ରଥ ଓ ଦଶହଜାର ହାତୀ ତଥା ସୈନ୍ୟସାମନ୍ତ ସହ ମହାଭାରତ ଯୁଦ୍ଧରେ କୌରବଙ୍କ ପକ୍ଷରେ ଯୋଗ ଦେଇଥିଲେ ବୋଲି ଉଲ୍ଲିଖିତ । ଭୀମଙ୍କ ସହିତ କଳିଙ୍ଗ ରାଜାଙ୍କର 'ଜଗତ୍‌କ୍ଷୟଙ୍କର' ଯୁଦ୍ଧ ହୋଇଥିଲା ବୋଲି ବର୍ଣ୍ଣନା ରହିଛି । ମଧ୍ୟମ ପାଣ୍ଡବ ଅର୍ଜୁନ କଳିଙ୍ଗର ତୀର୍ଥସ୍ଥାନ ପରିଦର୍ଶନ କରିଥିବା ପ୍ରସଙ୍ଗ ବିଦ୍ୟମାନ । ସହଦେବ କଳିଙ୍ଗ ସେନାଙ୍କୁ ପରାସ୍ତ କରିଥିଲେ ବୋଲି ବର୍ଣ୍ଣିତ । ଯୁଧିଷ୍ଠିର ତୀର୍ଥଯାତ୍ରା ସମୟରେ କଳିଙ୍ଗ ଆସିଥିବା ମହାଭାରତର ବନପର୍ବରେ ଉଲ୍ଲେଖ ରହିଛି । ମହାଭାରତରେ କଳିଙ୍ଗ ଅଧିବାସୀଙ୍କୁ ପତିତକ୍ଷତ୍ରିୟ ବୋଲି କୁହାଯାଇଛି । କଳିଙ୍ଗରାଜା କୌରବଙ୍କ ପକ୍ଷରେ ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ ହେଁ ଓଡ୍ର ଦେଶର ରାଜା ପାଣ୍ଡବଙ୍କ ପକ୍ଷରେ ଯୋଗ ଦେଇଥିବା ବର୍ଣ୍ଣିତ । କର୍ଣ୍ଣ ଉତ୍କଳୀୟମାନଙ୍କୁ ପରାସ୍ତ କରିଥିଲେ ବୋଲି ମହାଭାରତରେ ଉଲ୍ଲେଖ ରହିଛି । ଏଥିରୁ ପ୍ରମାଣିତ ହୁଏ, ମହାଭାରତ ଯୁଗରେ ଓଡ୍ର, ଉତ୍କଳ ଓ କଳିଙ୍ଗ ସ୍ୱତନ୍ତ୍ର ରାଜ୍ୟ ରୂପେ ପରିଚିତ ଥିଲେ । ମହାଭାରତ ପୂର୍ବରୁ ରାମାୟଣରେ ମଧ୍ୟ ମେକଳ, ଉତ୍କଳ, ଦଶାର୍ଣ୍ଣ, ଅବନ୍ତୀ, ବିଦର୍ଭ, ଅସ୍ମକ, ମତ୍ସ୍ୟ ଓ କଳିଙ୍ଗ ପ୍ରଭୃତି ରାଜ୍ୟ ଗୋଦାବରୀର ଉତ୍ତରରେ ଓ ଦଣ୍ଡକାରଣ୍ୟର ପୂର୍ବରେ ଅବସ୍ଥିତ ଥିଲା ବୋଲି ଜଣାଯାଏ । ଟଲେମୀଙ୍କ ଭୂଗୋଳ ମତରେ ବ୍ରାହ୍ମଣୀ ନଦୀର ଉତ୍ପତ୍ତି ସ୍ଥଳହିଁ ଦଶାର୍ଣ୍ଣ ପ୍ରଦେଶ । ଉତ୍କଳକୁ ପୁଳିନ୍ଦ, ଦଶାର୍ଣ୍ଣ ଓ ମେକଳ ସାଙ୍ଗରେ ସ୍ଥାପନ କରାଯାଇଛି । ମହାଭାରତ ବନପର୍ବରେ ପଞ୍ଚୁପାଣ୍ଡବଙ୍କ ତୀର୍ଥଯାତ୍ରା ପ୍ରସଙ୍ଗରେ କୁହାଯାଇଛି–

ସସାଗରଂ ସମାସାଦ୍ୟ ଗଙ୍ଗାୟାଃ ସଙ୍ଗମେ ନୃପ,
ନଦୀ ଶତାନାଂ ପଞ୍ଚାନାଂ ମଧ୍ୟେ ଚକ୍ରେ ସମାପ୍ଲବମ୍ ।
ତତଃ ସମୁଦ୍ର ତୀରେଣ ଜଗାମ ବସୁଧାଧିପଃ,
ଭ୍ରାତୃଭିଃ ସହିତୋବୀରଃ କଳିଙ୍ଗାନ୍ ପ୍ରତି ଭାରତ ।
ଲୋମଶ ଉବାଚ
'ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ,
ଯତ୍ରା□ଜତ ଧର୍ମୋ□ ଦେବାବାଞ୍ଛରଣ ମେତ୍ୟ ବୈ
ଋଷିଭିଃ ସମୁପାଯୁକ୍ତଂ ଯଜ୍ଞୀୟଗିରି ଶୋଭିତଂ
ଉତ୍ତରଂ ତୀରମେତଦ୍ଧି ସତତଂ ଦ୍ୱିଜସେବିତଂ

ତତୋ ବୈତରଣୀଂ ସର୍ବେ ପାଣ୍ଡବା ଦ୍ରୌପଦୀ ତଥା,
ଅବତୀର୍ଯ୍ୟ ମହାଭାଗାସ୍ତପୟାଞ୍ଚକ୍ରିରେ ପିତୃନ୍
ତତଃ କୃତସ୍ତସ୍ୟୟନୋ ମହାତ୍ମା ଯୁଧିଷ୍ଠିରଃ
ସାଗରାମ୍ ଅଭ୍ୟଗଚ୍ଛତ୍ ।
କୃତ୍ୱାଚ ତତ୍ ଶାସନମସ୍ୟ ସର୍ବଂ ମହେନ୍ଦ୍ର ମାସାଦ୍ୟ
ନିଶାମୁବାସ ।'

ଉପରୋକ୍ତ ଶ୍ଳୋକରୁ ଜଣାଯାଏ ଯେ, ଗଙ୍ଗାସାଗର ସଙ୍ଗମଠାରୁ କଳିଙ୍ଗର ସୀମା ଆରମ୍ଭ ହେଉଥିଲା ଏବଂ ବୈତରଣୀ ନଦୀ କଳିଙ୍ଗ ମଧ୍ୟରେ ପ୍ରବାହିତ ହେଉଥିଲା । ଅର୍ଥାତ୍ ଗଙ୍ଗାନଦୀଠାରୁ ମହେନ୍ଦ୍ରାଚଳ ପର୍ଯ୍ୟନ୍ତ କଳିଙ୍ଗର ବିସ୍ତୃତି ଥିଲା । ସେହି ସମୟରେ ମକୋକଳିଙ୍ଗ, ଗଙ୍ଗାରାଦି କଳିଙ୍ଗ ଓ ମଡୋଗାଲଙ୍ଗ କଳିଙ୍ଗ ତିନିଗୋଟି କଳିଙ୍ଗ ଥିବାର ପ୍ରମାଣ ଉପଲବ୍ଧ । (୫) ଖ୍ରୀ.ପୂ. ୮୫୦ରେ କଳିଙ୍ଗବାସୀ ବ୍ରହ୍ମଦେଶ ଓ ଆରାକାନ ଅଧିକାର ପୂର୍ବକ ଜାଭା ଦ୍ୱୀପରେ ଉପନିବେଶ ସ୍ଥାପନ କରି କ୍ଳିଙ୍ଗ୍ ନାମରେ ପରିଚିତ ଥିଲେ । ପ୍ଲିନୀଙ୍କ ବର୍ଣ୍ଣନାନୁସାରେ ପାର୍ଥଲୀ ନାମକ ସ୍ଥାନ ପ୍ରାଚୀନ କଳିଙ୍ଗର ରାଜଧାନୀ ଥିଲା । ସେ ଦନ୍ତଗୁରୁ ନାମରେ କଳିଙ୍ଗର ଏକ ପ୍ରଧାନ ନଗରୀର ନାମ ଉଲ୍ଲେଖ କରିଅଛନ୍ତି । ଏହା ଦନ୍ତପୁରୀ ହେବ ବୋଲି ଅନୁମାନ କରାଯାଏ । ପ୍ଲିନୀଙ୍କ ପରେ ଟଲେମୀ ଭାରତର ଏକ ବିସ୍ତୃତ ଭୌଗଳିକ ବିବରଣୀ ପ୍ରଦାନ କରିଅଛନ୍ତି, ଯେଉଁଥିରେ କଳିଙ୍ଗର ନଦୀପର୍ବତ ଓ ବନ୍ଦରର ନାମ ଉଲ୍ଲେଖ କରିଛନ୍ତି । ସେତେବେଳେ ବ୍ରାହ୍ମଣୀ ନଦୀକୁ ଦଶାର୍ଣ୍ଣ ଓ ଏହାର ମୁହାଣରେ ଅବସ୍ଥିତ ବନ୍ଦରକୁ ଦଶାର୍ଣ୍ଣ ବନ୍ଦର କୁହାଯାଇଥିଲା । (୬) ସେ ତୋଷାଳୀକୁ ଏକ ପ୍ରଧାନ ନଗର ରୂପେ ଗ୍ରହଣ କରିଛନ୍ତି । ସେ ଯାହାଦେଉ, ମେଘାସ୍ଥିନିସ୍, ପ୍ଲୀନୀ ଓ ଟଲେମୀଙ୍କ

ବର୍ଣ୍ଣନାନୁସାରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗ ସୁବିସ୍ତୃତ ଥିଲା । ପଶ୍ଚିମାଞ୍ଚଳ କଳିଙ୍ଗର ଅନ୍ତର୍ଭୁକ୍ତ ଥିଲା ଏବଂ ସେହି ଅଞ୍ଚଳରେ ଶବର ଓ ମୁଣ୍ଡା ପ୍ରଭୃତି ଜନଜାତି ବାସ କରୁଥିଲେ । ସେମାନେ ଦଳୀୟ ସଭା ଦ୍ୱାରା ଶାସନ କାର୍ଯ୍ୟ ନିର୍ବାହ କରୁଥିଲେ ହେଁ କଳିଙ୍ଗ ରାଜାଙ୍କ ଆନୁଗତ୍ୟ ସ୍ୱୀକାର କରିଥିଲେ । ଅଶୋକ ସେହି ଆଟବିକ ରାଜ୍ୟ ସମ୍ପର୍କରେ ଶିଳାଲେଖରେ ଉଲ୍ଲେଖ କରିଛନ୍ତି ।

ଜୈନଗ୍ରନ୍ଥମାନଙ୍କରେ ମଧ୍ୟ କଳିଙ୍ଗର ନାମୋଲ୍ଲେଖ ରହିଛି । ଜୈନ ହରିବଂଶ ଉଲ୍ଲେଖ ଅନୁଯାୟୀ ମହାବୀର ବର୍ଦ୍ଧମାନ ଧର୍ମ ପ୍ରଚାର ନିମିତ୍ତ କଳିଙ୍ଗ ଆଗମନ କରିଥିଲେ ତଥା ଭଦ୍ରକଠାରେ ଚାରିଗୋଟି ବର୍ଷା କାଳ କଟାଇଥିଲେ । ବୌଦ୍ଧ ଯୁଗରେ ଦନ୍ତପୁର କଳିଙ୍ଗର ରାଜଧାନୀ ଥିଲା । ବେସ୍‌ସାନ୍ତରା ଜାତକ, ଶରଭଙ୍ଗ ଜାତକ, କୁମ୍ଭକାର ଜାତକ ଓ କଳିଙ୍ଗବୋଧି ଜାତକରେ କଳିଙ୍ଗ ନାମ ଉଲ୍ଲେଖ ରହିଛି । ଦୀର୍ଘନିକାୟ ଓ ମହାବସ୍ତୁ ଗ୍ରନ୍ଥ ବର୍ଣ୍ଣନାନୁସାରେ କଳିଙ୍ଗ ଏକ ସ୍ୱତନ୍ତ୍ର ରାଷ୍ଟ୍ରଥିଲା ଏବଂ ଏହାର ରାଜା ଶତ୍ତାଭୁ ଥିଲେ । 'ମହାଗୋବିନ୍ଦ ସତ୍ତାନ୍ତ'ରୁ ଜଣାଯାଏ ଯେ କଳିଙ୍ଗ ରାଜା ଶତ୍ତାଭୁ ବାରାଣସୀର ରାଜା ଦତ୍ତଭଚ୍ଛଙ୍କ ସମସାମୟିକ ଥିଲେ । ମହାବସ୍ତୁରେ ଉଦ୍‌ଗତ ନାମକ ଅନ୍ୟଜଣେ କଳିଙ୍ଗ ରାଜାଙ୍କ ନାମ ଉଲ୍ଲେଖ ରହିଛି । 'ନିଦ୍ଦେଶ'ରେ ଯେଉଁ ଜନପଦର ତାଲିକା ରହିଛି, ସେଥିରେ କଳିଙ୍ଗର ନାମ ଅଛି । 'ମହାପରି ନିର୍ବାଣ ସୁତ୍ତ'ରେ ବର୍ଣ୍ଣନା ରହିଛି ଯେ, ବୁଦ୍ଧଙ୍କ ନିର୍ବାଣ ପରେ ତାଙ୍କର ଗୋଟିଏ କଳଦାନ୍ତ କ୍ଷେମଥେର ନାମକ ବୌଦ୍ଧ ସନ୍ନ୍ୟାସୀ କଳିଙ୍ଗ ରାଜା ବ୍ରହ୍ମଦତ୍ତଙ୍କୁ ପ୍ରଦାନ କରିଥିଲେ । ବ୍ରହ୍ମଦତ୍ତ ସେହି ଦନ୍ତକୁ ସ୍ୱ ରାଜଧାନୀରେ ସ୍ତୂପ ନିର୍ମାଣ କରି ରଖିଥିଲେ ବୋଲି ରାଜଧାନୀର ନାମ ଦନ୍ତପୁର ହେଲା । 'ମଝ୍‌ଝିମ ନିକାୟ' ଓ 'ମହାବାଗ' ନାମକ ପାଲିଗ୍ରନ୍ଥରୁ ଜଣାଯାଏ ଉତ୍କଳର ତପସ୍‌ସୁ ଓ ଭଲ୍ଲିକ ନାମଧାରୀ ଦୁଇଜଣ ଭୂୟାଁ ଜାତିର ବଣିକ ଉତ୍କଳର ପୋଖରବତୀ ନଗରରୁ ରାଜଗୃହ ଯାଉଥିବା ବାଟରେ ଉରୁବେଳାଠାରେ ବୁଦ୍ଧଦେବଙ୍କ ଦର୍ଶନ ଲାଭ କରିଥିଲେ ଓ ମଧୁପିଷ୍ଟକ (ଆରିଶାପିଠା) ଖାଦ୍ୟ ନିମିତ୍ତ ଅର୍ପଣ କରିଥିଲେ । କେତେକ ଜୈନଶାସ୍ତ୍ର, ଅଶୋକଙ୍କ ଶିଳାଲେଖ ଓ ଖାରବେଳଙ୍କ ଶିଳାଲେଖରେ କଳିଙ୍ଗର ନାମ ସ୍ପଷ୍ଟ ଉଲ୍ଲେଖ ରହିଛି । ଖ୍ରୀଷ୍ଟପୂର୍ବ କାଳୀନ ଭାରତମୁନି ସ୍ୱରଚିତ 'ନାଟ୍ୟ ଶାସ୍ତ୍ର'ରେ ଓଡ୍ରମାଗାଧୀ ଭାଷା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । କାଳିଦାସ ରଘୁବଂଶରେ ଉତ୍କଳ ଓ କଳିଙ୍ଗକୁ ସ୍ୱତନ୍ତ୍ର ରାଜ୍ୟ ଭାବରେ ଦର୍ଶାଇଛନ୍ତି ।

ଜୈନ ଓ ବୌଦ୍ଧଯୁଗ ପରେ ପୁରାଣ ସମୂହ ରଚନା ହୋଇଥିଲା । ଉତ୍କଳ ଓ କଳିଙ୍ଗର ଉତ୍ପତ୍ତି ସମ୍ପର୍କରେ ପୁରାଣ ସାହିତ୍ୟରେ ବର୍ଣ୍ଣନା ରହିଛି ଯେ ବଳିରାଜାଙ୍କ ପତ୍ନୀ ସୁଦେଷ୍ଣାଙ୍କ ଗର୍ଭରୁ ତତ୍କାଳୀନ ନିୟୋଗ ପ୍ରଥାନୁସାରେ ଦୀର୍ଘତମା ଋଷିଙ୍କ ଦ୍ୱାରା ପାଞ୍ଚଗୋଟି ପୁତ୍ର ଜନ୍ମ ନେଇଥିଲେ । ସେମାନଙ୍କ ନାମ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ, ସେମାନେ ଯେଉଁ ଯେଉଁ ଅଞ୍ଚଳରେ ରାଜତ୍ୱ କଲେ ସେହି ସେହି ରାଜ୍ୟ ସେମାନଙ୍କ ନାମରେ ନାମିତ ହେଲା । ଏହା ବ୍ରହ୍ମାଣ୍ଡ ପୁରାଣ ଓ ମହାଭାରତର ଆଦିପର୍ବରେ ଉଲ୍ଲେଖ ଅଛି । ମତ୍ସ୍ୟ ଓ ବାୟୁପୁରାଣ ବର୍ଣ୍ଣନାନୁସାରେ ବୁଧଙ୍କ ପୁତ୍ର ପୁରସ୍ରବା ଓ କିଂ ପୁରୁଷ ଇଳାଙ୍କ ସଂଯୋଗରେ କଳିଙ୍ଗ ରାଜବଂଶର ଉତ୍ପତ୍ତି । ମନୁଙ୍କର ଦଶପୁତ୍ର ମଧ୍ୟରୁ ଇଳା ପାର୍ବତୀଙ୍କଠାରୁ ଅଭିଶାପ ପାଇ ନାରୀ ହୋଇଗଲେ । ପରବର୍ତ୍ତୀ କାଳରେ ଶିବଙ୍କ କୃପାରୁ ସେ ସୁଦ୍ୟୁମ୍ନ ହେଲେ ତଥା ତାଙ୍କ ପୁତ୍ର ଉତ୍କଳ ପ୍ରଥମେ ଉତ୍କଳ ରାଜ୍ୟ ପ୍ରତିଷ୍ଠା କରିଥିଲେ । କେତେକ ଶାସ୍ତ୍ର ଓ ଅଭିଲେଖରୁ ଜଣାଯାଏ ଓଡ୍ର ଜାତି ଯେଉଁଠାରେ ନିବାସ କଲେ, ତାହା ଉଡ୍ରରାଷ୍ଟ୍ର ହେଲା । ବିଭିନ୍ନ ପୁରାଣ ପର୍ଯ୍ୟାଲୋଚନା କଲେ ଜଣାଯାଏ, ଉତ୍ତର ଓଡ଼ିଶା ଥିଲା ଉଡ୍ରଦେଶ, ପାର୍ବତ୍ୟ ଅଞ୍ଚଳ ଉତ୍କଳ ଓ କଳିଙ୍ଗ ଏହି ଦୁଇଦେଶର ଦକ୍ଷିଣରେ ଥିଲା ।

ମନୁସଂହିତା ବର୍ଣ୍ଣନା ଅନୁଯାୟୀ ଅଙ୍ଗ, ବଙ୍ଗ, କଳିଙ୍ଗ, ସୌରାଷ୍ଟ୍ର ଓ ମଗଧ ପତିତ ଦେଶ ଥିଲା ।

ଅଙ୍ଗବଙ୍ଗ କଳିଙ୍ଗେଷୁ ସୌରାଷ୍ଟ୍ର ମଗଧେଷୁ ଚ
ତୀର୍ଥ ଯାତ୍ରାଂ ଦିନା ଯାତଃ ପୁନଃ ସଂସ୍କାର ମର୍ହତି ।

ଏଥିରୁ ହୃଦ୍‌ବୋଧ ହୁଏ, ବିଶାଳ ଆର୍ଯ୍ୟଗୋଷ୍ଠୀ ବିନ୍ଧ୍ୟାଞ୍ଚଳ ପାର ହୋଇ ଓଡ଼ିଶା ଭୂଖଣ୍ଡରେ ସ୍ଥାୟୀ ନିବାସ କରିବା ପରେ ମୂଳ ଆର୍ଯ୍ୟଗୋଷ୍ଠୀଙ୍କ ଦ୍ୱାରା ପତିତ ବିବେଚିତ ହୋଇଥିଲେ । ଆର୍ଯ୍ୟମାନେ ଯେତେବେଳେ ଓଡ଼ିଶା ଭୂଖଣ୍ଡରେ ପ୍ରବେଶ କଲେ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ପଶ୍ଚିମ ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ରହିଗଲେ । ସେମାନଙ୍କ ଅଧିପତି ଥିଲେ ପାଣ୍ଡବ ବା ସୋମବଂଶୀ କ୍ଷତ୍ରିୟ । ସେମାନେ କୋଶଳ ରାଜ୍ୟ ଗଠନ କରି ଶ୍ରୀପୁରକୁ ରାଜଧାନୀ କଲେ । ମହାଭାରତ ବର୍ଣ୍ଣନାରୁ ଜଣାଯାଏ ବିଦର୍ଭ ରାଜ୍ୟ ବିଭକ୍ତ ହୋଇ କାନ୍ତାରକ, କୋଶଳ ଓ ତ୍ରିପୁରୀ ପ୍ରଭୃତି ରାଜ୍ୟ ଭାବରେ ପ୍ରତିଭାତ ହୋଇଥିଲା । ଐତରେୟ ବ୍ରାହ୍ମଣ ଓ ମହାଭାରତ ରଚନା କାଳରେ କୋଶଳ ରାଜ୍ୟ ସୃଷ୍ଟି ହୋଇଥିଲା । ମଗଧରାଜ ଅଗ୍ନିମିତ୍ର ସୁଙ୍ଗ ବିଦର୍ଭ ରାଜାଙ୍କୁ ପରାସ୍ତ କରି ସ୍ୱରାଜ୍ୟର ସୀମା ଉଆର୍ଦ୍ଧା ନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ସେହି ସମୟରେ ପ୍ରାଚୀନ କୋଶଳ ରାଜ୍ୟ ଦୁଇ ଭାଗରେ ବିଭକ୍ତ

ହୋଇ ଗଙ୍ଗାଠାରୁ ଉଆର୍ଦ୍ଧାନଦୀ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡକୁ ଦକ୍ଷିଣକୋଶଳ କୁହାଗଲା । (୭) ପ୍ରାଥମିକ ପର୍ଯ୍ୟାୟରେ ସୋମବଂଶର ଜଣେ ରାଜା ସାମନ୍ତ ରାଜା ଭାବରେ ଶ୍ରୀପୁରରେ ରାଜଧାନୀ ସ୍ଥାପନ ପୂର୍ବକ ଦକ୍ଷିଣ କୋଶଳ ଶାସନ କରୁଥିଲେ ହେଁ ପରବର୍ତ୍ତୀ କାଳରେ ସେ ସ୍ୱାଧୀନ ଭାବରେ ଶାସନ କଲେ । ଏହି ଦକ୍ଷିଣ କୋଶଳ ଓ କାନ୍ତାର ଓଡ଼ିଶା ଭୂଖଣ୍ଡର ଅନ୍ତର୍ଭୁକ୍ତ ଥିଲା । ସମୁଦ୍ରଗୁପ୍ତ ଦାକ୍ଷିଣାତ୍ୟ ବିଜୟ କାଳରେ କୋଶଳର ରାଜା ଥିଲେ ମହେନ୍ଦ୍ର ଓ କାନ୍ତାରର ରାଜା ଥିଲେ ବ୍ୟାଘ୍ର ରାଜ । ଏହି ଦୁଇଟି ସ୍ୱତନ୍ତ୍ର ରାଜ୍ୟ ହେଲେ ହେଁ ଭାବ, ଭାଷା, ଆଚାର ବିଚାର ଓ ସଂସ୍କୃତି ଦୃଷ୍ଟିରୁ ଓଡ଼ିଶା ଭୂଖଣ୍ଡର ଅଂଶ ବିଶେଷ ଥିଲା । ଆଧୁନିକ ବିଳାସପୁର, ରାୟପୁର, ସମ୍ବଲପୁର, ସୁନ୍ଦରଗଡ, ସୁରଗୁଜା, ବଲାଙ୍ଗୀର, ପାଟଣା, କଳାହାଣ୍ଡି, ବସ୍ତର, ବୌଦ୍ଧ ଓ ଫୁଲବାଣୀ ପ୍ରଭୃତି ଅଞ୍ଚଳ କୋଶଳ ଅନ୍ତର୍ଭୁକ୍ତ ଥିଲା ଏବଂ କୋଶଳ ରାଜ୍ୟ କଳିଙ୍ଗର ଅଧୀନ ଥିଲା । (୮) ପ୍ଲୀନୀଙ୍କ ବର୍ଣ୍ଣନାନୁସାରେ କୋଶଳରେ ଚେଦୀବଂଶୀୟ ରାଜନ୍ୟବୃନ୍ଦ ଶାସନ କରୁଥିଲେ । ତାଙ୍କର ରାଜଧାନୀ ଥିଲା ତୋଷରା, ଯାହାକି ଗ୍ରୀକ୍ ପର୍ଯ୍ୟଟକ ଟଲେମୀଙ୍କ ଦ୍ୱାରା ଦୋସରା ନାମରେ ବର୍ଣ୍ଣିତ । (୯) ତୋଷରା ସମ୍ପ୍ରତି ବଲାଙ୍ଗୀରର ଏକ ସହର । ଅନେକଙ୍କର ମତ, ତୋଷରା ନାମରୁ ତୋଷାଳୀ ନାମର ଜନ୍ମ । କୋଶଳ ରାଜ୍ୟର ଦକ୍ଷିଣାଞ୍ଚଳ କିୟତ୍‌କାଳ କାନ୍ତାର ନାମରେ ପରିଚିତ ହୋଇଥିଲା ଏବଂ ସମୁଦ୍ରଗୁପ୍ତଙ୍କ ଦିଗ୍‌ବିଜୟ ସମୟରେ କାନ୍ତାରରେ ବ୍ୟାଘ୍ରରାଜ ରାଜତ୍ୱ କରୁଥିଲେ । ସେହି ସମୟରେ କୋଶଳ ଦୁଇଭାଗରେ ବିଭକ୍ତ ହୋଇଥିଲେ ହେଁ କଳିଙ୍ଗ ବହୁଭାଗରେ ବିଭକ୍ତ ହୋଇଥିଲା ।

ଉଡ୍ର, ଉତ୍କଳ, କଳିଙ୍ଗ, କଙ୍ଗୋଦ, କାନ୍ତାର ଓ କୋଶଳର ସକଳ ଇତିବୃତ୍ତି ଅନୁଧ୍ୟାନ କଲେ ହୃଦ୍‌ବୋଧ ହୁଏ ଖ୍ରୀଷ୍ଟପୂର୍ବ କାଳରୁ ଏହି ବିଶାଳ ଭୂଖଣ୍ଡ କଳିଙ୍ଗ ନାମରେ ପରିଚିତ ଥିଲା । ପରବର୍ତ୍ତୀ କାଳରେ ଏହା ତିନିଭାଗରେ ବିଭକ୍ତ ହୋଇ ତ୍ରିକଳିଙ୍ଗ ନାମ ଧାରଣ କଲା । ପ୍ରଥମ ଶତାବ୍ଦୀରେ ଭୌଗଳିକ ପ୍ଲୀନୀ ଏହାକୁ କଳିଙ୍ଗ, ମକୋକଳିଙ୍ଗ ଓ ଗଙ୍ଗଦେଶ କଳିଙ୍ଗ ନାମରେ ଅଭିହିତ କରିଥିଲେ । କ୍ରମେ କଳିଙ୍ଗର ଉତ୍ତରାଂଶ ଉତ୍କଳିଙ୍ଗ ଏବଂ ଅପଭ୍ରଂଶରେ ଉତ୍କଳ ନାମରେ ଖ୍ୟାତିଲାଭ କଲା, ଦକ୍ଷିଣାଂଶ କଳିଙ୍ଗ ନାମରେ ତଥା ପଶ୍ଚିମାଂଶ କୋଶଳ ନାମରେ ପ୍ରସିଦ୍ଧି ଲାଭ କଲା। ପ୍ରାଚୀନ ସାହିତ୍ୟରେ ଏହି ତିନିଗୋଟି ଭିନ୍ନ ଭିନ୍ନ ରାଜ୍ୟ ରୂପେ ଚିତ୍ରିତ ହେଲେ ହେଁ ଭାବ, ଭାଷା ଓ ଜାତୀୟତା ଦୃଷ୍ଟିରୁ ଅଭିନ୍ନ ଥିଲା । ଏହି ତିନିଗୋଟି ରାଜ୍ୟରେ ଆଦିବାସୀ ଓ ଦ୍ରାବିଡମାନଙ୍କ ସହିତ ବହୁସଂଖ୍ୟାରେ ଓଡ୍ରମାନେ ନିବାସ କରୁଥିଲେ । ଏପରିକି ଗୁପ୍ତଯୁଗ ଓ ପରବର୍ତ୍ତୀ କାଳରେ ଓଡ୍ରଦେଶ ବା ଓଡ୍ର ବିଷୟ ଥିବାର ଆଭିଲେଖିକ ପ୍ରମାଣ ମିଳିଛି । ଜାତିକୁ ନେଇ ରାଜ୍ୟ ସୃଷ୍ଟିର ପରମ୍ପରାରୁ ଓଡ୍ରଦେଶ, ଓଡ୍ର ବିଷୟ, ଓଡଭିଷା ଓ ଓଡ଼ିଶାର ସୃଷ୍ଟି । ଓଡ୍ରମାନେ ମହାଭାରତ ଯୁଗରେ ଅପୂର୍ବ ପରାକାଷ୍ଠା ଦେଖାଇ ବୀରଗତି ପ୍ରାପ୍ତ ହୋଇଥିଲେ । ଚୀନ୍ ପରିବ୍ରାଜକ ଓଡ଼ିଶା ବା ଉଚାଦେଶ ପରିଭ୍ରମଣ କରିଥିଲେ । ଭଞ୍ଜମାନେ ଓଡ୍ରଦେଶ ଶାସନ କରୁଥିଲେ ବୋଲି ପ୍ରମାଣ ରହିଛି । ପରିଶେଷରେ ସୂର୍ଯ୍ୟବଂଶ ରାଜତ୍ୱ କାଳରେ ଏହି ବିଶାଳ ଭୂଖଣ୍ଡ ଓଡ଼ିଶା ନାମରେ ଅଭିହିତ ହେଲା ।

ସଦସ୍ୟ
ଓଡ଼ିଶା ସାହିତ୍ୟ ଏକାଡେମୀ
ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ

ପାଦଟୀକା


୧. Ancient Geography of India by Cuningham-Edited by S,M. Majumdar (1921)

୨. Journal of Bihar of Orissa Research society Vol xiv part IV P.539-547(1928)

୩. The Orissa Historical Research Journal Vol-1, No-1, P. 7392 by P. Acharya

୪. ଓଡ଼ିଶା ଇତିହାସ- ଡକ୍ଟର ହରେକୃଷ୍ଣ ମହତାବ ପୃ-୪

୫. କଳିଙ୍ଗର ପ୍ରାଚୀନ ଭୂଗୋଳ-ବ୍ରଜବନ୍ଧୁ ଦାସ (ଉତ୍କଳ ସାହିତ୍ୟ, ୨୭ଭାଗ, ୧୧ଶ ସଂଖ୍ୟା ପୃ-୪୦୭)

୬. ଏଜନ୍ ପୃ ୪୦୯

୭. Early History of India- V.A. Smith P.188

୮. ସମ୍ବଲପୁର ଇତିହାସ-ଶିବ ପ୍ରସାଦ ଦାଶ ପୃ-୩୪

୯. Researches on ptolemy geography-gemini.

# ମୁଁ ଓଡ଼ିଶା କହୁଛି

ଡକ୍ଟର ସଂଘମିତ୍ରା ମିଶ୍ର

ପିଲାଏ ଶୁଣ । ଶୁଣୁଛ ନା ନାହିଁ ଯେ ? ମୁଁ ଡାକୁଚି ପରା । ମୁଁ 'ଓଡ଼ିଶା' ଭାରତବର୍ଷର ପୂର୍ବପାଖରେ ଖଣ୍ଡିଏ ରେଖାଙ୍କିତ ରାଜ୍ୟ । ମୋ ସମ୍ପର୍କରେ ତୁମେ କିନ୍ତୁ ଊଣା ଅଧିକ ଜାଣିଛ– ଯେମିତି ମୋର କ୍ଷେତ୍ରଫଳ, ଲୋକସଂଖ୍ୟା, ଜଳବାୟୁ, ସମାଜ ବ୍ୟବସ୍ଥା କୃଷି, ଶିଳ୍ପ, ଶିକ୍ଷା ଏପରିକି ରାଜନୀତି କଥା । କିନ୍ତୁ ମୁଁ ସେଠି ନାହିଁ । ମୁଁ ପରା ଅଛି ତୁମ ନିଃଶ୍ୱାସରେ । ତୁମ ବିଶ୍ୱାସରେ । ତୁମେ ମୋ ଛାତିରେ ପାଦ ରଖି ଚାଲି ଶିଖିଛ । ମୋ ପବନରେ ନିଃଶ୍ୱାସ ନେଉଛ । ମୋ ନଦୀ ସମୁଦ୍ର ତୁମକୁ ଶିଖାଇଛନ୍ତି ବଞ୍ଚିବାର କଳା । ମୋ ଅରଣ୍ୟ ଉଦ୍ୟାନରେ ତୁମେ ସ୍ୱପ୍ନ ଦେଖିଛ ଅସୁମାରୀ । ମୁଁ ପରା ତୁମ ମାଆ, ଜନନୀ ଓଡ଼ିଶା ।

ଜାଣିଛ ନା କେବେ ବିହାର, କେବେ ଆନ୍ଧ୍ର, ଛୋଟ ନାଗପୁର ବା ବଙ୍ଗଳାରେ ମୋ ଦେହରୁ ଖଣ୍ଡେ ଖଣ୍ଡେ ଛିଟିକି ପଡି ରହିଯାଇଥିଲା । କେଉଁଠୁ ଆସିଲେ ମୋ ଯୋଗ୍ୟ ପୁଅମାନେ ମଧୁବାରିଷ୍ଟର, ଗୋପବନ୍ଧୁ, ଗୌରୀଶଙ୍କର, କୃଷ୍ଣଚନ୍ଦ୍ର, ନୀଳକଣ୍ଠ, ବିଶ୍ୱନାଥ, ଗୋଦାବରୀଶ, ହରିହର ମର୍ଦ୍ଦରାଜ, ଭୁବନାନନ୍ଦ ଆହୁରି କେତେଜଣଙ୍କ ନାଁ ମୋର ମନେପଡୁନି । ସେମାନେ ଗଢିଲେ ଉତ୍କଳ ସମ୍ମିଳନୀ । ମୋର ଏଇ ଛିନ୍ନଭିନ୍ନ ବିପର୍ଯ୍ୟସ୍ତ ଚାପ ସେମାନଙ୍କୁ ବିଭ୍ରାନ୍ତ କରୁଥିଲା । କ୍ରମେ ମୋ ଭାଷାରେ କଥା କହୁଥିବା ସ୍ଥାନମାନ ଏକତ୍ର ହେଲେ । ମୋ ପିଲାଏ ମୋତେ ଏକାଠି କଲେ । ମାଆ ବୋଲି ସମ୍ମାନ ଜଣାଇଲେ । ମୋ ବାରିଷ୍ଟର ପୁଅ ତ ଗୀତ ଲେଖିଲା–

'କାନ ଦେଇ ଶୁଣ, ମାତା କହୁଛନ୍ତି
ଆସ ଆସ ବତ୍ସ ନୀର ପାନ କର
ଏଇ ନୀର ସେହି , ବୀର ମୋ ସନ୍ତାନେ
ବୀର ପ୍ରସବିନୀ କ୍ଷୀର ଏହି ନୀର'

ଏ ଗୀତ ଶୁଣିଲେ ଆଜି ବି ସତସ୍ତରୀ ବର୍ଷର ଏ ଶିଥିଳ ଶରୀର ରୋମାଞ୍ଚିତ ହୁଏ । ହଁ ଭୁଲିଯାଉଛି ଆଉଟିକେ ପଛକଥା କହିବାକୁ । ମୋ ରଜାପୁଅ କପିଳେନ୍ଦ୍ର, ପୁରୁଷୋତ୍ତମ, ମୋ କବିପୁଅ ଜଗନ୍ନାଥ, ବଳରାମ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ମୋ କିଶୋର ବାଳକ ଧରମା, ବାଜିଆ ଆଉ ଝିଅ ଶୁକଦେଈ ଏମାନଙ୍କ କଥା ନ ଜାଣେ କିଏ ? କିଏ ନଜାଣେ ବକ୍ସି ଜଗବନ୍ଧୁର ବୀରତ୍ୱ, ରାମଚନ୍ଦ୍ର ଦେବର ତ୍ୟାଗ ? ଏସବୁ ଯେତେ ଭାବେ ମୋତେ ସେତେ ଆନନ୍ଦ ଲାଗେ । ସତରେ ମୁଁ କି ଭାଗ୍ୟବତୀ । ମୋ ପାଦ ଧୋଇ ଦେଉଛି ବଙ୍ଗୋପସାଗର । ମୋ ନୀଳକନ୍ଦରରେ ବିରାଜିତ ପ୍ରଭୁ ଜଗନ୍ନାଥ । ଆହା ସେ କି ଅପୂର୍ବ ଠାକୁର, ଯାହା ଭିତରେ ଇତିହାସ କଡ ଲେଉଟାଏ । ଭକ୍ତି, ବିଶ୍ୱାସ ଆଉ ମହାନୁଭବତା ସହିତ ଯିଏ ଯାଚିଦିଅନ୍ତି କୈବଲ୍ୟ, ସେ ପରା ମୋତେ ବାରମ୍ବାର ରକ୍ଷା କରନ୍ତି, ଅନେକ ଦୁର୍ଦ୍ଦିନରେ ସେ ମୋର ସାହା ହୁଅନ୍ତି । ସେ ମୋର ବନ୍ଧୁ, ସଖା, ସନ୍ତାନ ନା ଜନକ କେଜାଣି । ମୁଁ କହିପାରିବିନି । ତୁମେ ତ ପାଠଶାଠ ପଢୁଛ । ଦେଶ ବିଦେଶ ବୁଲୁଛ । ତୁମେ କହିଦିଅ । ହଁ ଦିନେ ମୋ ମାଟିର ତନ୍ତୀ ତିଆରି କରୁଥିଲା ସୂକ୍ଷ୍ମବସ୍ତ୍ର, ଯାହା ସାରା ସଂସାରରେ ଖ୍ୟାତି ଅର୍ଜନ କରିଥିଲା । ମୋ ସୁନାରୀ ହାତ ତିଆରି ତାରକସି କାମ ତ ଆଜି ବି ଅନତିକ୍ରମ୍ୟ । ଆଉ ମୋ ପୁଅର କି କ୍ଷମତା ସତରେ ! ପଥର ଦେହରେ ପରା ସେ କୁଟିକମ କରି ପ୍ରତିମା ନିର୍ମାଣ କରିବାରେ ଧୁରନ୍ଧର । କୋଣାର୍କ, ଲିଙ୍ଗରାଜ ବା ମୁକ୍ତେଶ୍ୱର ଦେଖିଛଟି ? ପଥରର କବିତା ଲେଖିବା ପାଇଁ କେତେ ଧୈର୍ଯ୍ୟ କେତେ ସାଧନା ଲୋଡା ସତରେ !

ଆଉ କେଉଁ କଥା କହିବି ଯେ ? ସତ୍ୟବାଦୀ କାଳଖଣ୍ଡରେ ମୋର ଉନ୍ନତି ପାଇଁ ଖୁବ୍ ପ୍ରୟାସ୍ ହୋଇଥିଲା । ମଣିଷଗଢା

କାରଖାନା ପରା ଥିଲା ସତ୍ୟବାଦୀ ବନବିଦ୍ୟାଳୟ । ଆଜି ଅଗଣିତ ଆନ୍ତର୍ଜାତୀୟ ମାନର ବିଦ୍ୟାଳୟ ଭିତରେ ସତ୍ୟବାଦୀ କଥା ଭୁଲି ହେଉନି କାହିଁକି ? ଆଜି ବନ୍ୟାବାତ୍ୟାରେ ସରକାରୀ ବେସରକାରୀ ସ୍ୱେଚ୍ଛାସେବୀମାନେ ଲାଗିପଡି ଥିବାବେଳେ କାହିଁକି ମୋ ଗୋପବନ୍ଧୁର ଅଶ୍ରୁଳ ମୁଖ ମୋତେ ଅନ୍ୟମନସ୍କ କରୁଛି ? ଅନ୍ୟର ଦୁଃଖରେ କାନ୍ଦି ପକାଇବା ଭଳି ପୁଅଟିଏ ମୁଁ ଆଉ ପାଇବି କୋଉଠୁ ? ଆଜି ତ ତୁମମାନଙ୍କର ସଂଖ୍ୟା ଚାରି କୋଟିରେ ପହଞ୍ଚିଲାଣି । ଛାତିରେ ହାତ ଦେଇ ସତ କହିଲ, କେତେଜଣ ସରକାରୀ ଚାକିରି ନକରି ଦେଶସେବା କରିବ । ଆଉ ଜନ୍ମ ହେବା ବେଳକୁ ଓଡ଼ିଶାକୁ ଯେଉଁ ଭଳି ଦେଖିଥିଲ ମୃତ୍ୟୁ ବେଳକୁ ତା'ଠାରୁ ଉନ୍ନତ ଦେଖିବାକୁ ଚେଷ୍ଟା କରିବ ବୋଲି ଶପଥ କରିଛ ? ଏସବୁ କଥା ଭାବି ମୋ ଛାତି ଫାଟିଗଲା ଭଳି ଲାଗୁଛି ।

ତୁମେ କହିବ, ମୋର ବୟସ ଅଧିକ ହେଲାଣି ତ । ସେଥିପାଇଁ ଦୂର ଅତୀତର କଥା ମୋର ବେଶୀ ବେଶୀ ମନେ ପଡୁଛି । ହେଇଥିବ, ମୁଁ ମନା କରୁନି । ହେଲେ ବାପାମାନେ, ଯାହାର ଯୋଗ୍ୟ ପିଲାଏ ଥାଆନ୍ତି, ତା ମାଆ ନିରିମାଖୀ ହୋଇ ରହିବ କ'ଣ ପାଇଁ ? କାହିଁକି ଭାଷା ଭିତ୍ତିରେ ଗଢା ହୋଇଥିବା ମୋର ଶରୀର, ମନ, ଆତ୍ମା ଉପଯୁକ୍ତ ଆହାର ପାଇବ ନାହିଁ । ମୋ ଭାଷା, ଯେଉଁଥିରେ ମହାଭାରତ, ରାମାୟଣ, ଭାଗବତ ହରିବଂଶ ଲେଖାଯାଇଛି, ତାହା ଅପମାନିତ ହେବ ମୋରି ପିଲାଙ୍କ ଦ୍ୱାରା ? କାହିଁକି ଓଡ଼ିଆ ଭାଷା କ୍ରମେ ସଂକୁଚିତ ହୋଇ ନିଜ ଘରେ ନିଜେ ସାତପର ଭଳି ଗୁଞ୍ଜି ହୋଇ ମୁହଁ ଲୁଚାଇବ ? ତୁମେ ଅଧିକରୁ ଅଧିକ ଭାଷା ଶିଖ ଉନ୍ନତିର ସର୍ବୋଚ୍ଚ ସୋପାନକୁ ଯାଅ । ମୁଁ ଖୁସି ହେବି । କିନ୍ତୁ ମନେରଖିବ ଯିଏ ନିଜ ମାଆର ଭାଷାକୁ ସମ୍ମାନ ଦେଇ ଶିଖିନି, ସେ ସମ୍ମାନର ଯୋଗ୍ୟ ହେବା କଷ୍ଟକର । ଆରେ ପିଲାଏ, ତୁମେ ପରା ତୁମ ଜନ୍ମ ଦିନରୁ ମୋ ଭାଷାରେ କଥା କହୁଛ । ପରସ୍ପରକୁ ଗାଳି ଦେଉଛ, ଭଲପାଉଛ, ରାଗୁଛ, ସବୁରି ମାଧ୍ୟମ ତ ମୁଁ ନା । କିଏ କହିଦେଲା ସବୁ ବିଜ୍ଞାନ, ବୈଷୟିକ ବିଦ୍ୟାକୁ ମୋ ଭାଷା ଧରି ରଖିପାରିବ ନାହିଁ । ତୁମେ ବୁଝିଗଲ । କାହିଁକି ଚେଷ୍ଟାକରି ଦେଖିଲନି । ଚେଷ୍ଟାଥିଲେ ପରା ଅସାଧ୍ୟ ସାଧନ ହୋଇପାରେ । ତୁମ ସାଆନ୍ତଙ୍କ ସାଆନ୍ତବାପା ସାମନ୍ତ ଚନ୍ଦ୍ରଶେଖର କ'ଣ କଲା କହତ ! ଦିଖଣ୍ଡ ବାଉଁଶ କାଠି ଧରି ସରଗପୁରକୁ ମାପି ପକାଇଲା ! ପୁଣି 'ସିଦ୍ଧାନ୍ତ ଦର୍ପଣ' ଭଳି ପୁସ୍ତକ ଲେଖିଲା, ଯାହା ଆଜି ଅନେକ ବୈଜ୍ଞାନିକଙ୍କ ଆଖି ଖୋଲି ଦେଇଛି । ଆଉ ତୁମେ ସବୁ ଭୁଲି ଗୋଡାଣିଆ ହେଉଛ କାହିଁକି ?

ଆଜିତ ସାକ୍ଷର ସଂଖ୍ୟା ବଢିଛି । ଖବରକାଗଜ ଓ ଦୂରଦର୍ଶନ ସଂଖ୍ୟା ବଢିଛି । ସ୍କୁଲ କଲେଜ ବଢିଛି । ପତ୍ରପତ୍ରିକା ସଂଖ୍ୟା ବଢିଛି । ତେବେ କ'ଣ ପାଇଁ ମୋ ଭାଷାର ବନାନ, ଅକ୍ଷର ସଂଖ୍ୟା, ବ୍ୟାକରଣ ସବୁଥିରେ ଗଣ୍ଡଗୋଳିଆ ପରିସ୍ଥିତି ? କାହିଁକି ପ୍ରାଚୀନ ଓ ଶାସ୍ତ୍ରୀୟ ଭଳି ଗୁରୁତ୍ୱପୂର୍ଣ୍ଣ ବିଶେଷଣ ଲାଗିବା ସତ୍ତ୍ୱେ ମୋ ଭାଷାର ଭାଗ୍ୟ ପଥର ତଳେ ? କେବେ ସିନା ଜଣେ ତାଳପତ୍ର ଲେଖନୀ ଧରି ବେକଭାଙ୍ଗି, କୁଜାହୋଇ ବସି ଢେର ପରିଶ୍ରମ କରି ଗୋଟିଏ ବାକ୍ୟ ଲେଖୁଥିଲା, ଆଜି ତ ସେ ଅସୁବିଧା ନାହିଁ । ସପ୍ତାହେ ଭିତରେ ହଜାର ହଜାର ସଂଖ୍ୟାର ବହି ବାହାରି ଆସୁଛି । ତେବେ ଅସୁବିଧା ରହୁଛି କେଉଁଠି ମୁଁ ଜାଣିପାରୁନି । ତୁମେ ପରା ସମସ୍ତେ ମୋର ଅତି ଆପଣାର । ମୋତେ ସଂସାରର ସବୁ ପରିବର୍ତ୍ତନ ସମ୍ପର୍କରେ ଖବର ଦେବ କିଏ କହିଲ ? ଯାହାର ଯୋଗ୍ୟ ସନ୍ତାନ ଥାଆନ୍ତି, ସେମାନେ ମାଆକୁ ଅଣହେଳା କରନ୍ତି କି ? ଯଦି ତୁମେମାନେ ସତରେ ଭାବୁଥିବ ମୋର ଜୀବନ ଅଛି, ମୋତେ ଅପମାନ ବାଧେ, ମୋତେ କଷ୍ଟ ହୁଏ, ତେବେ ଥରେ ମୋ ଜାଗାରେ ନିଜକୁ ରଖି ଭାବିବ । ବୟସ ବଢିଲେ ତ ଅନୁଭୂତି ପାକଳ ହୁଏ । ତୁମେ ମୋର ଇତିହାସ ପଢ । ଦେଖିବ ତୁମ ଦେହରେ ଶତସିଂହର ଶକ୍ତି ଆସିଯିବ । ଜାଣିଛ ନା ପିଲାଏ ଦିନେ ମୋ ଗୋପବନ୍ଧୁ ଲେଖିଥିଲା–

'ପୁଣ୍ୟ ଦେଶମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?'

ସତରେ ଅଳ୍ପ ଯୋଗ୍ୟ ହୋଇ ପିଲାଟିଏ ନୂଆ ଘର କରିପାରେ ମାତ୍ର ଅଧିକ ଯୋଗ୍ୟ ସନ୍ତାନ ପିତୃପୁରୁଷର ପ୍ରାଚୀନ ଗୃହର ଜୀର୍ଣ୍ଣୋଦ୍ଧାର କରିବାକୁ ଜୀବନର ବ୍ରତ ମଣିଥାଏ । ମୁଁ ଭାବୁଛି, ତୁମେମାନେ ମୋତେ ବୁଝିବାକୁ ଚେଷ୍ଟା କରିବ । କିଏ ଲେଖିଲା–

'ମାଆ ମାଆ ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ
ଭାଇ ଭାଇ ବୋଲି କେତେ ମୁଁ ଡାକିଲି
ନଦେଲେ ଉତ୍ତର କେହି'

ହଁ ତ ମନେପଡିଲା ମୋର ବାରିଷ୍ଟର ପୁଅଟିଏ–

ପୁଣି ଆଉ ଜଣେ ପୁଅ ଲେଖିଲା–

'ମାତୃଭୂମି ମାତୃଭାଷାରେ ମମତା
ଯା ହୃଦେ ଜନମି ନାହିଁ
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ?

'ବନ୍ଦେ ଉତ୍କଳ ଜନନୀ' ଗୀତ ଶୁଣି ଆଜି ବି ମୋର ଦେହରେ ବଳଖୁନ୍ଦି ହୋଇଯାଏ । ସେ ତ ମୋରି ପୁଅ ଲକ୍ଷ୍ମୀକାନ୍ତ ନା । ଛାଡିଗଲି– ତୁହି ମା ଜନମ ଭୂମି ଉଦାର ଉତ୍କଳ ଭୂମି' ଲେଖି ମଧୁ ରାଓ ତ ମୋତେ ପ୍ରଥମେ ସ୍ୱତନ୍ତ୍ର ଭାବେ ସମ୍ମାନ ଜଣାଇଥିଲା । ଆଉ ମୋ ଗେହ୍ଲା ପୁଅ ଫକୀର କି ଗୀତ ଗାଇଥିଲା ମନେ ଅଛିନା –

'ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବ ତାଙ୍କୁ ଭକ୍ତି ଭରେ ଦିବସ ରଜନୀ'

ତୁମେ ତ ଏତେ କଥା ମନେ ରଖୁଛ । ଏଇସବୁ ଗୀତରୁ ପଦେ ଦି'ପଦ ଗାଇ ଭାଷଣମାନ ଦେଉଛ ଯେ ମୁଁ ଶୁଣି ଖୁସି ହୋଇଯାଉଛି । ଯାହା ହେଉ ମୋର ପିଲାଏ ତାଙ୍କ ବାପା ଜେଜେବାପାଙ୍କୁ ମନେ ରଖିଛନ୍ତି । କିନ୍ତୁ ମଞ୍ଚରୁ ଓହ୍ଲାଇ ଆସି ତୁମେ ପୁଣି ବାମନ ମଣିଷ ହୋଇଯାଉଛ କେମିତି ? କେମିତି ଜଳ, ଜମି, ଜଙ୍ଗଲ, ଖଣି ଖାଦାନକୁ ନେଇ ନିଜ ନିଜ ସ୍ୱାର୍ଥରେ ମାତିଯାଉଛ ? ଯେଉଁ ଭୂମିର ମଧୁବାରିଷ୍ଟର ଗୋଟିଏ ଜୋତା ଖରାପ ପଡିଥିବାରୁ ସମ୍ପୂର୍ଣ୍ଣ ଜୋତା କାରଖାନା ଜଳାଇ ଦେଇଥିଲା, ତୁମେ କ'ଣ ସତରେ ସେଇ ମାଟିର ସନ୍ତାନ ? କାହିଁକି ଆଇନ ଆଖିରେ ଧୂଳି ଦେଇ ତୁମେ ଗୌରବ ନେଇଛ ? 'ସରଳ ଜୀବନ ଉଚ୍ଚ ଚିନ୍ତା ' କଥାଟିର ଗୁରୁତ୍ୱ ନଷ୍ଟ କରୁଛ କ'ଣ ପାଇଁ ? ଧର୍ମ, ଜାତି ଯୋଗ୍ୟତାକୁ ନେଇ ନିଜ ନିଜ ଭିତରେ ପାଚେରୀ ସୃଷ୍ଟି କରୁଛ କାହିଁକି ? ମାଆକୁ ଅସମ୍ମାନ କରୁଥିବା ସନ୍ତାନ କ'ଣ ଜୀବନରେ ବଡ ହୋଇପାରେ ? ହଁ ପଇସା ରୋଜଗାର କର । ଦେଶ ବିଦେଶ ଯାଅ ମନା ନାହିଁ କିନ୍ତୁ ମୋତେ ମନେ ରଖିବ । ମୋତେ ଭୁଲିଯିବା ଅର୍ଥ ନିଜକୁ ଭୁଲିଯିବା ଆଉ ସଭ୍ୟତାର ଆଲୁଅ ଭିତରେ ଆଖିବୁଜି ଅନ୍ଧାରରେ ଅଛୁ ବୋଲି ଅଣ୍ଡାଳି ହେବା– ନୁହେଁ କି ? ବହୁତ କଥା ତୁମକୁ କହିବି ବୋଲି ତୁଣ୍ଡ ଖୋଲିଛି ଯେ ଆଗପଛ ହୋଇଯାଉଛି । ଏତେଦିନ ହେଲା ଭାବୁଥିଲି ତୁମେ ମୋତେ ବୁଝିଯିବ । ଅତି କଷ୍ଟ ହେଲାରୁ ପାଟି ଆପେ ଖୋଲିଗଲାରେ ପିଲାଏ । ଏଇଟା ମୋର ଅପରାଧ ନୁହେଁ ଅଧିକାର ବୋଲି ବୁଝିଯିବ । ପିଲାଏ, ମୁଁ ଜାଣେ ତୁମ କଷ୍ଟ । ତୁମେ ଆଉ ପାଞ୍ଚଜଣଙ୍କ ସହିତ ମନଖୋଲି ମିଶିପାରୁନ । ଭାବୁଛକି ତୁମେ ଅନ୍ୟମାନଙ୍କଠାରୁ ହୀନ । ନାହିଁରେ । ଥରେ ତୁମେ ଅତୀତକୁ ସ୍ମରଣ କର । ଯଯାତି, ଅନଙ୍ଗ, ମର୍କତ କେଶରୀଙ୍କଠାରୁ ଯେଉଁଠାଏ ତୁମ ଆଖି ପାଇବ ସେଯାଏ ଦେଖ । ତୁମେ ଏକ ବିପୁଳ ଐଶ୍ୱର୍ଯ୍ୟର ଅଧିକାରୀ, ବିରାଟ ପରମ୍ପରା ତୁମ ପଛରେ । ମଧୁବାବୁ ଭଳି ଗୋଟାଏ ପୁଅ ପରା ଦିନେ ବିଦେଶୀ ଶାସକର ନିଦ ହଜେଇ ଦେଇଥିଲା । ତା'ଠୁ ଜାତି ଗଢିବାର ମନ୍ତ୍ର ଶିଖିବାକୁ ଦିନେ ଜାତିର ପିତା ଗାନ୍ଧୀ ପରା ଆସିଥିଲେ କଟକ । ଉତ୍କଳଟ୍ୟାନେରୀ ଜୋତା କାରଖାନା ଦେଖି ଫେରିଯିବା ପରେ ନିଜେ ଗଢିଥିଲେ ସାବରମତୀରେ ଅନୁରୂପ କାରଖାନା । କି ପ୍ରଚଣ୍ଡ ସ୍ୱାଭିମାନ ଥିଲା ମୋ ପୁଅର !

ତୁମେମାନେ ମୋ କଥା ଶୁଣ । ଯଦି କାହାକୁ କଷ୍ଟ ହେଉଥିବ ତେବେ ମୁଁ ନାଚାର । ଯେଉଁ କଥା ଦିବାଲୋକ ଭଳି ସତ୍ୟ, ତାହା ଆପେ ବୁଝିଯିବା ଦରକାର । ତୁମେ ଯଦି ମୋତେ ନଦେଖିବ ତେବେ ମୋ ମଥା ଟେକ ରଖିବ କିଏ ? ତୁମେ ଯଦି ନିଜକୁ ଚିହ୍ନିବ ନାହିଁ ତେବେ ତୁମକୁ ଅନ୍ୟମାନେ ଆଡେଇ ଦେବେ । ଆଜିପରା ନିଜ କଥା ନିଜେ ଦମ୍ଭରେ କହିବା ସମୟ ଆସିଛି । ଯାହା କହିବ ଏକାଠି ସମସ୍ୱରରେ କୁହ । ପରସ୍ପର ପ୍ରତି ହିଂସା ଅସୂୟା ରଖ ନାହିଁ । ଏକମନ ଏକ ପ୍ରାଣରେ ଯଦି ତୁମେ ତୁମ ମାଆର ଟେକ ରଖିବାର ସଂକଳ୍ପ ନେବ, ତେବେ ଦେଖିବ ପୁଣି ଥରେ ମୁଁ ହସି ଉଠିବି । ମୋ ସ୍ୱପ୍ନ ସାର୍ଥକ କରିବାକୁ ମୁଁ ତୁମର ସଂକଳ୍ପ ଆଶା କରୁଛି । ଦେଖ ମୁଁ ଓଡ଼ିଶା । ଉତ୍କୃଷ୍ଟ କଳାର ଦେଶ ବୋଲି ମୁଁ ଉତ୍କଳ । ମୁଁ ତୁମ ଗର୍ଭଧାରିଣୀ ଜନନୀ । ପାଳନକର୍ତ୍ତ୍ରୀ ଧାତ୍ରୀ, ମୋ ମୁହଁକୁ ଚାହଁ । ଭୟ ଛାଡିଯିବ । ମୋ କଥା ଟିକେ ହେଜିବ ପିଲାଏ । ରହୁଛି ।

ପ୍ରଫେସର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଜନ୍ମଦାତା ମଧୁସୂଦନ ଦାସ

ରତିକାନ୍ତ ଦାସ

ଉତ୍କଳଗୌରବ ମଧୁସୂଦନ ଦାସ ଓଡ଼ିଆ ଜାତୀୟ ଜୀବନର ଅଗ୍ରଦୂତ । ସେ ଥିଲେ ଦେଶର ଜନ୍ମଦାତା ଓ ଶିଳ୍ପ ପ୍ରତିଷ୍ଠାତା ଏବଂ ସେଥିଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସ୍ରଷ୍ଟା ଓ କର୍ଣ୍ଣଧାର । କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ ସତ୍ୟଭାମାପୁର ଗ୍ରାମରେ ପିତା ଚୌଧୁରୀ ରଘୁନାଥ ଦାସ ଓ ମାତା ପାର୍ବତୀ ଦେବୀଙ୍କର ସେ ଥିଲେ ସୁଯୋଗ୍ୟ ସନ୍ତାନ । ୧୮୪୮ ମସିହା ଏପ୍ରିଲ ୨୮ ତାରିଖରେ ଚୌଧୁରୀ ବଂଶର କୁଳପ୍ରଦୀପ ହୋଇ ମାତା ପାର୍ବତୀଙ୍କର କୋଳମଣ୍ଡନ କଲେ ଯୋଗଜନ୍ମା ଯୁଗପୁରୁଷ ଦେଶଭକ୍ତ ମଧୁସୂଦନ । ବାଲ୍ୟକାଳରୁ ମଧୁବାବୁ ମାଆଙ୍କଠାରୁ ଗୋଟିଏ ମହାମନ୍ତ୍ର ଶିକ୍ଷା କରିଥିଲେ । 'ଆଲୋ ସଖୀ, ଆପଣା ମହତ ଆପେ ରଖି'– ମାଆ କହୁଥିବା ଏଇ ମନ୍ତ୍ରଟିକୁ ନିଜର ଆଦର୍ଶ କରି ସଯତ୍ନରେ ଜୀବନର ପ୍ରତ୍ୟେକ କାର୍ଯ୍ୟରେ ସେ ବ୍ରତୀ ହୋଇ ସଫଳତା ଲାଭ କରୁଥିଲେ ।

ସମଗ୍ର ଜୀବନକାଳ ଭିତରେ ଓଡ଼ିଶାର ଉନ୍ନତି ଓ ଓଡ଼ିଆ ଜାତିର ସ୍ୱାର୍ଥ ପାଇଁ ମଧୁବାବୁ ଥିଲେ ସମର୍ପିତ । ୧୯୩୬ ମସିହା ଏପ୍ରିଲ ୧ ତାରିଖରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଲାଭ କରିଥିଲା । ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରି ଓଡ଼ିଆ ଜାତିର ୧୬୫ତମ ଜୟନ୍ତୀ ସମ୍ବତ୍ସର ଅବସରରେ ଆମ୍ଭେମାନେ ତାଙ୍କର ଅମର ଆତ୍ମା ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ବ୍ୟକ୍ତିଗତ ସ୍ୱାର୍ଥକୁ ତ୍ୟାଗ କରି ଜାତୀୟ ସ୍ୱାର୍ଥ ପାଇଁ କାର୍ଯ୍ୟ କରିବା ଥିଲା ମଧୁସୂଦନଙ୍କର ମୂଳ ଲକ୍ଷ୍ୟ । ବନ୍ଦେ ଉତ୍କଳ ଜନନୀର ସେବା ଓ ସୁରକ୍ଷା ନିମନ୍ତେ ମଧୁବାବୁଙ୍କର ଅଭ୍ୟୁଦୟ ଥିଲା ଶୁଭଙ୍କର । ଆଜି ପର୍ଯ୍ୟନ୍ତ ଯୁଗ ଯୁଗ ଧରି ଜାତିପ୍ରାଣ ମଧୁସୂଦନଙ୍କର ଗୌରବ ଗାଥା ଓଡ଼ିଶାର ପ୍ରତ୍ୟେକ ପୁରପଲ୍ଲୀରେ ପ୍ରକଟ ହୋଇଆସୁଛି ।



'ପାଠ ପଢ଼ିବି ପାଠ ପଢ଼ିବି
କାଳିଆ ଘୋଡାରେ ଚଢ଼ିବି
ମଧୁବାବୁ ସଙ୍ଗେ ଲଢ଼ିବି ।'

ଗ୍ରାମ୍ୟ ପାଠଶାଳାରୁ ସହରୀ ଜୀବନ ସହିତ ଚଳି ଆସୁଥିବା ଶିଶୁ ପିଲାମାନଙ୍କ କଣ୍ଠରେ ଏହି ଭାବ ଗମ୍ଭୀର ପଦଟି ଶୁଣିବାକୁ ମିଳିଥାଏ । ବହୁ ସୁନାମଧନ୍ୟ ଜାତିପ୍ରାଣ ଉତ୍କଳ ଭୂଇଁରେ ଜନ୍ମଗ୍ରହଣ କରିଛନ୍ତି ସତ, କିନ୍ତୁ ମଧୁସୂଦନ ହିଁ କେବଳ ଓଡ଼ିଶା ମାଟିର ଜାତୀୟ ଗୌରବ ବା ଉତ୍କଳଗୌରବର ଅଧିକାରୀ ହୋଇପାରିଛନ୍ତି । ବିସ୍ମୃତିର ବାଲୁକା ଗର୍ଭରୁ ସେ ଓଡ଼ିଆମାନଙ୍କ ଜାତୀୟ ଜୀବନର ପୁନରୁଦ୍ଧାର କରିଛନ୍ତି । ଗ୍ରାମ୍ୟ ପାଠଶାଳାରୁ ପ୍ରାଥମିକ ଶିକ୍ଷା ଶେଷ କରି ସେ

୧୮୬୪ ମସିହାରେ ରେଭେନ୍ସା କଲେଜିଏଟ୍ ସ୍କୁଲରୁ ମାଟ୍ରିକ୍ୟୁଲେସନ ପାସ୍ କଲେ । ସ୍କୁଲ ଜୀବନର ଅଧ୍ୟାପନା ସମୟରେ କର୍ମବୀର ଗୌରୀଶଙ୍କରଙ୍କୁ 'ମାଷ୍ଟର' ବୋଲି ସମ୍ବୋଧନ କରି ସମ୍ମାନର ସହ ଭକ୍ତି କରୁଥିଲେ । ଅନଭିଜ୍ଞ ଓଡ଼ିଆ ଶିକ୍ଷକମାନଙ୍କ ଅଧ୍ୟାପନାରେ ଅସୁବିଧା ଉପଲବ୍ଧି କରି ତାହାର ଦୂରୀକରଣ ନିମନ୍ତେ ୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷ ପୂର୍ବରୁ ଓଡ଼ିଆ ଭାଷାରେ ଶିକ୍ଷାଦାନ ପାଇଁ ଆନ୍ଦୋଳନର ସୂତ୍ରପାତ କରିଥିଲେ । ମାଟ୍ରିକ ପାସ୍ କରିବା ପରେ ପିତାଙ୍କର ଅର୍ଥାଭାବ ଯୋଗୁଁ ମଧୁସୂଦନ ଆଉ ପଢିପାରିଲେ ନାହିଁ । ତେଣୁ ୧୮୬୫ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କରି ପରବର୍ତ୍ତୀ କାଳରେ ବାଲେଶ୍ୱର ରେଜିଷ୍ଟ୍ରେସନ ଅଫିସ୍‌ରେ କିରାଣୀ ଚାକିରି କଲେ । ବାଲେଶ୍ୱରରେ ଶିକ୍ଷକତା କରିବା ସମୟରେ ଫକୀର ମୋହନ, ରାଧାନାଥ ଓ ମଧୁସୂଦନ ରାଓଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତା ହୋଇଥିଲା । ତେଣୁ ସେମାନେ ଏକତ୍ର ବସି ତତ୍କାଳୀନ ଓଡ଼ିଶାର ଅନୁନ୍ନତ ଅବସ୍ଥାର ପ୍ରତିକାର ପାଇଁ ଚିନ୍ତା କରୁଥିଲେ । କିନ୍ତୁ ଶିକ୍ଷକତାର ଜୀବନଜୀବିକା ତାଙ୍କ ଭାଗ୍ୟରେ ସବୁଦିନ ରହିଲା ନାହିଁ । ତତ୍ପରେ ସେ ଉଚ୍ଚ ଶିକ୍ଷା ପାଇଁ ଚାନ୍ଦବାଲିରୁ ଷ୍ଟିମରରେ କଲିକତା ଅଭିମୁଖେ ଯାତ୍ରା କଲେ । ଉଚ୍ଚଶିକ୍ଷା ଲାଭ କରି ନିଜକୁ ପ୍ରତିଷ୍ଠିତ କରିପାରିଲେ ଜାତି ପ୍ରତିଷ୍ଠା ଲାଭ କରିବ, ଏହା ଥିଲା ତାଙ୍କର ସ୍ୱପ୍ନ । ୧୮୭୦ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏ ପାସ୍ ପରି ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍‌ର ଗୌରବ ଲାଭ କଲେ । କାଳର କ୍ରମାନୁସାରେ ୧୮୭୩ ମସିହାରେ କଲିକତା ଇନ୍‌ଷ୍ଟିଚ୍ୟୁସନରୁ ଇଂରାଜୀରେ ଏମ୍.ଏ ପାସ୍ କରି ୧୮୭୮ ମସିହାରେ କଲିକତା ପ୍ରେସିଡେନ୍ସି ସାନ୍ଧ୍ୟ ମହାବିଦ୍ୟାଳୟରୁ ବି.ଏଲ୍. ଡିଗ୍ରୀ ହାସଲ କରିବାରେ ସେ ଥିଲେ ପ୍ରଥମ ଓଡ଼ିଆ । ସେ ୧୮୭୩ ମସିହାରେ ବଙ୍ଗୀୟ ଖ୍ରୀଷ୍ଟିୟାନ୍ ଯୁବତୀ ସୌଦାମିନୀ ଚଟ୍ଟୋପାଧ୍ୟାୟଙ୍କୁ ୨୫ବର୍ଷ ବୟସରେ ବିବାହ କରିଥିଲେ । ୧୮୭୬ ମସିହାରେ ଖିଦିରପୁର ଗାର୍ଡେନରିଚ୍ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ଅବସ୍ଥାପିତ ହୋଇ ଶ୍ରମିକମାନଙ୍କର ଶିକ୍ଷା ନିମନ୍ତେ ଖିଦିରପୁରରେ ଏକ ନୈଶ୍ୟ ବିଦ୍ୟାଳୟ ସ୍ଥାପନ କରିଥିଲେ ଏବଂ କଲିକତାର ଉଚ୍ଚ ନ୍ୟାୟାଳୟରେ ୧୮୭୮ ମସିହା ପର୍ଯ୍ୟନ୍ତ ସାମୟିକ ଓଡ଼ିଆ ଅନୁବାଦକ ଭାବେ କାର୍ଯ୍ୟ କରିବା ସହ ଚବିଶ ପ୍ରଗଣା ଜିଲ୍ଲା ଅନ୍ତର୍ଗତ ଆଲିପୁର କୋର୍ଟରେ ଆଇନ୍ ବ୍ୟବସାୟ କଲେ । ପତ୍ନୀ ସୌଦାମିନୀଙ୍କର ହୃଦ୍‌ରୋଗରେ ହଠାତ୍ ପରଲୋକ ହେବାରୁ ସେ ଉଦ୍‌ବିଗ୍ନ ହୋଇ ୧୮୮୧ ମସିହାରେ କଟକ ପ୍ରତ୍ୟାବର୍ତ୍ତନ କଲେ । ବ୍ୟକ୍ତିଗତ ଜୀବନର ନିଃସଙ୍ଗତାକୁ ଲଘନ କରି ଦେଶ ମାତୃତାର ସେବାରେ ନିଜକୁ ନିୟୋଜିତ କରି ପୁନଶ୍ଚ କଟକରେ ଆଇନ୍ ବ୍ୟବସାୟ ଆରମ୍ଭ କଲେ । କଟକରେ ସ୍ୱଳ୍ପକାଳ ଆଇନ୍ ବ୍ୟବସାୟ କରି ନିଜର ବ୍ୟକ୍ତିତ୍ୱ ଓ ବୁଦ୍ଧିର ପ୍ରଦର୍ଶନ କରି ଅଳ୍ପ କେତେବର୍ଷ ଭିତରେ ଖ୍ୟାତିଲାଭ କରିବାରୁ ଲୋକମାନେ ତାଙ୍କୁ 'ମଧୁ ବାରିଷ୍ଟର' ବୋଲାଇଲେ ।

୧୮୬୯ ମସିହାରେ ଭାଷା ବିଲୋପ ଆନ୍ଦୋଳନ ଏବଂ ସମୟକ୍ରମେ ଓଡ଼ିଶାରେ ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ରାଜତ୍ୱ କାଳରେ ବିଭିନ୍ନ କରର ପ୍ରଚଳନ ଓ ଦମନଲୀଳା ଏ ଓଡ଼ିଆ ଜାତିକୁ ନିଷ୍ପେସିତ ଓ ଅବହେଳିତ କରିଦେଲା । ଓଡ଼ିଶାର ଏହି ସଙ୍କଟ କାଳରେ ଚରମ ଲାଞ୍ଛିତ ଓଡ଼ିଆ ଜାତିର ମର୍ଯ୍ୟାଦା ଓ ସ୍ୱାଭିମାନକୁ ବଞ୍ଚାଇ ରଖିବା ପାଇଁ ଉଦ୍ୟମ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ଉତ୍କଳ ଦୀପିକା, ଉତ୍କଳପୁତ୍ର, ପ୍ରଜାବନ୍ଧୁ ଏବଂ ପାଟ୍ରିଅଟ ଆଦି ପତ୍ରପତ୍ରିକା ପ୍ରକାଶନ କଲେ । ଓଡ଼ିଆ ଜାତିକୁ ଦୁର୍ଦ୍ଦିନର ଅନ୍ଧକାରରୁ ମୁକ୍ତି କରି ଆଲୋକର ସ୍ପର୍ଶ ଦେବା ପାଇଁ ଓ ନିଜ ମାତୃଭୂମି ପ୍ରତି ଅହେତୁକ ମମତା ଜାଗ୍ରତ କରାଇବା ପାଇଁ ସମଗ୍ର ଓଡ଼ିଆ ଜାତିର ପ୍ରାଣରେ ସୃଷ୍ଟି କଲେ ଅଗ୍ନିବର୍ଷୀ ଚେତାବନୀ । 'ଭାଇମାନେ ଆଗେଇ ଆସ । ସମସ୍ତେ ମିଳିମିଶି ଉତ୍କଳ ଜନନୀର ଦୁଃଖମୋଚନ ନିମନ୍ତେ ଲାଗି ପଡିବା ।' ମାତୃଭୂମିର ବ୍ୟଥା ଓ ବେଦନାକୁ ମର୍ମେ ମର୍ମେ ଅନୁଭବ କରି ସେ ମାନବ ସମାଜକୁ ଜାତୀୟତାର ଚେତାବନୀ ଶୁଣାଇଥିଲେ ।

'ତୁ ପରା ବୋଲାଉ ଉତ୍କଳ ସନ୍ତାନ ତେବେ କିମ୍ପା ଏତେ ଭୀରୁ
ତୋହର ଜନନୀ ରୋଦନ କରିଲେ କହିବାକୁ କିଆଁ ଡରୁ ।
ତୋ' ପୂର୍ବ ପୁରୁଷ ଜୟ କରିଥିଲେ ଗଙ୍ଗାଠାରୁ ଗୋଦାବରୀ
ତାଙ୍କରି ଔରସେ ଜନ୍ମ ହୋଇ ତୁହି କେଉଁ ଗୁଣେ ତାଙ୍କୁ ସରି ।'

ଆମେ ସମଗ୍ର ଭାରତବର୍ଷକୁ ନିଜର ମାତୃଭୂମି ରୂପେ ଗ୍ରହଣ କରି ମହାଭାରତୀୟ ଭାବରେ ଅନୁପ୍ରାଣିତ ହେବାକୁ ହେବ । ଏକତା ପ୍ରତିଷ୍ଠା କରିବାକୁ ହେବ । ଓଡ଼ିଶା ମହାଭାରତର ଏକ ଅଙ୍ଗ । ଜାତୀୟତା ଭିତ୍ତିରେ ନିଜ ସ୍ୱାର୍ଥପରତା, ସଂକୀର୍ଣ୍ଣତାର ସ୍ଥାନ ନାହିଁ । ପ୍ରାଦେଶିକ ଉନ୍ନତି ଭାରତୀୟ ଉନ୍ନତିର ପରିପନ୍ଥୀ ନୁହେଁ । ଆମେ ସଙ୍କଳ୍ପବଦ୍ଧ ହେବା ଏକାନ୍ତ ଆବଶ୍ୟକ । ତାଙ୍କର ଏହି ମନ୍ତ୍ରମୁଗ୍ଧ ଉଦ୍‌ବୋଧନୀ ଓଡ଼ିଆ ଜାତିକୁ ଏକତାର ମହାମନ୍ତ୍ରରେ ଦୀକ୍ଷିତ କଲା । ଉତ୍କଳ ସମ୍ମିଳନୀର ଆହ୍ୱାନ ଦେଇ ମଧୁବାବୁ ଓଡ଼ିଶାବାସୀଙ୍କୁ ଏକତ୍ରିତ କରାଇଲେ । ଓଡ଼ିଆମାନଙ୍କର ମହାମିଳନର ସଭା ଥିଲା ଏ ସମ୍ମିଳନୀ । ପ୍ରତ୍ୟେକ ଓଡ଼ିଆ ଥିଲେ ଏହି ସମ୍ମିଳନୀର ଜଣେ ଜଣେ ସଭ୍ୟ ଏବଂ ସମସ୍ତଙ୍କୁ ଜାତୀୟ ବନ୍ଧନରେ ଆବଦ୍ଧ କରି ରଖିବା ଥିଲା ଏହାର ଉଦ୍ଦେଶ୍ୟ । ସମ୍ମିଳନୀର ଅଗ୍ରଦୂତ ଭାବେ ମଧୁସୂଦନ ଦାସଙ୍କ ସହିତ ସାମିଲ ହୋଇଥିଲେ ଉତ୍କଳମଣି ଗୋପବନ୍ଧୁ । ସମ୍ମିଳନୀ ମଣ୍ଡପ ଜାତୀୟତାର ମହାଯଜ୍ଞରେ ପରିଣତ ହେଲା ।

ଓଡ଼ିଆମାନଙ୍କୁ ଉଦ୍‌ବୋଧନ ଦେଇ ଗୋପବନ୍ଧୁ କହିଥିଲେ–

'ଏଇ ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ କୋଟି ପ୍ରାଣ ବିନ୍ଦୁ ଧରେ
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ ଡେଇଁ ପଡି ସିନ୍ଧୁ ନୀରେ
ତରଙ୍ଗ ଉଠିବ ସିନ୍ଧୁ ଗରଜିବ ଶୁଣିବୁ ସିଂହର ରବ,
ବ୍ରିଟିଶ ରାଜ୍ୟରେ ଓଡ଼ିଆ ଜାତିର ବଢିବ ମାନ ଗୌରବ ।'

ରାଜନୈତିକ କାରଣରୁ ଉତ୍କଳ ବିଚ୍ଛିନ୍ନ ହୋଇଥିଲେ ସୁଦ୍ଧା ଖଣ୍ଡବିଖଣ୍ଡିତ ଓଡ଼ିଆମାନଙ୍କର ନୈସର୍ଗିକ ଜାତୀୟ ମିଳନ ଓ ଆକାଙ୍କ୍ଷା ଏହି ସମ୍ମିଳନୀ ମାଧ୍ୟମରେ ଜାଗ୍ରତ ହୋଇପାରିଥିଲା ଏବଂ ନିରାଶା ମଧ୍ୟରେ ଆଶା ଓ ଆଶ୍ୱାସନା ଆଣି ଦେଇଥିଲା । କୋଟିଏ ଲୋକଙ୍କ ମନରେ ଗୋଟିଏ ଜାତୀୟଭାବ ସୃଷ୍ଟି କରିପାରିଥିଲା । ଓଡ଼ିଆବାସୀଙ୍କ ଦୃଷ୍ଟିରେ ପ୍ରତୀୟମାନ ହେଲା ମଧୁବାବୁ ହିଁ ଓଡ଼ିଶା ଏବଂ ଓଡ଼ିଶାର ଗୌରବ ମଧୁବାବୁ । ଏଥିରୁ ଏ ଜାତିର ଅଗ୍ରଗଣ୍ୟଭାବେ ମଧୁସୂଦନଙ୍କ ଆଦର୍ଶ, ଉଦାରତା ଓ ଜାତିପ୍ରୀତିର ପ୍ରମାଣ ମିଳେ ।

ମଧୁସୂଦନ ଦାସ ଥିଲେ ଓଡ଼ିଆ ଜାତିର ଗଣଦେବତା । ନିଜେ ଦେବାଳିଆ ହୋଇ ରସାତଳଗାମୀ ହୋଇଛନ୍ତି । କିନ୍ତୁ ଓଡ଼ିଆ ଜାତିର ସମ୍ମାନକୁ ତଳେ ପକାଇ ନାହାଁନ୍ତି । ଓଡ଼ିଆମାନଙ୍କ ପାଇଁ ଅକୁଣ୍ଠିତ ଚିତ୍ତରେ ସେ ସର୍ବସ୍ୱ ଦାନ କରିଛନ୍ତି । କିନ୍ତୁ ମଥାପାତି କେବେ କାହାରି ପାଖରେ ଦୟାର ପାତ୍ର ହୋଇନାହାନ୍ତି । ବରଂ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଇଂରେଜ ସରକାରଙ୍କଠାରୁ ନ୍ୟାଯ୍ୟ ଦାବି ହାସଲ ଦିଗରେ ପଥ ସୁଗମ କରିଛନ୍ତି । ଶିଳ୍ପର ଉନ୍ନତି, ଖଟିଖିଆ ମେହନତି ମଜୁରିଆର ଭରଣପୋଷଣ ଏବଂ ଏଇ ଗରିବ ଦେଶର କଳାକୁଶଳୀ କାରିଗରଙ୍କର ସୁନାମ ପାଇଁ ସୁନା ରୂପାର ତାରକସି କାମ ଏବଂ ଉତ୍କଳ ଟାନେରୀ ଜୋତା କାରଖାନାରୁ ଉତ୍କୃଷ୍ଟ ମାନର ଜୋତା ନିର୍ମାଣ କରାଇ ଦେଶ ବିଦେଶକୁ ପ୍ରେରଣ କରିଛନ୍ତି । ନିଜେ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିଥିଲେ ମଧ୍ୟ ଶ୍ରୀଜଗନ୍ନାଥ ମନ୍ଦିରର ସୁରକ୍ଷା ନିମନ୍ତେ ରାଜାଙ୍କ ପକ୍ଷ ସମର୍ଥନ କରି ବ୍ରିଟିଶ ସରକାର ବିରୁଦ୍ଧରେ ଲଢେଇ କରିଥିଲେ । ତାଙ୍କ ଯୋଗୁଁ ଜାତି ଗଢା ହେଲା । ଇତିହାସରେ ତା'ର ସ୍ୱତନ୍ତ୍ର ସ୍ଥାନ ବଜାୟ ରହିଲା । ଏ ଦେଶବାସୀ ଜାତିପ୍ରାଣ ମଧୁବାବୁଙ୍କୁ ଆପଣାର ହୃଦୟରେ ସ୍ଥାନ ଦେଲେ । ସ୍ୱଦେଶପ୍ରୀତି, ଏକତା, ଜାତୀୟତା, ନିର୍ଭୀକତା, ସାହସିକତା, ନିଃସ୍ୱାର୍ଥପରତା, ବଳିଷ୍ଠ ବ୍ୟକ୍ତିତ୍ୱ, କର୍ତ୍ତବ୍ୟ ନିଷ୍ଠା ଓ ସ୍ୱଗଭୀର ଆତ୍ମବିଶ୍ୱାସ ପ୍ରଭୃତି ଗୁଣରେ ସେ ଭରିଦେଲେ ଉତ୍ତରପୁରୁଷଙ୍କୁ । ତେଣୁ ପ୍ରତ୍ୟେକ ବର୍ଷ ଏପ୍ରିଲ ପହିଲାରେ ଉତ୍କଳ ଦିବସର ତାତ୍ପର୍ଯ୍ୟ ଅନୁଭବ କଲାବେଳେ ଓଡ଼ିଶାବାସୀ ସେମାନଙ୍କର ମୁକୁଟ ବିହୀନ ସମ୍ରାଟ ରୂପେ ମଧୁସୂଦନ ଦାସଙ୍କୁ ସ୍ମରଣ କରି ଶ୍ରଦ୍ଧା ସୁମନ ଅର୍ପଣ କରିଥାନ୍ତି ।

ମଧୁବାବୁଙ୍କର ଛାତ୍ର ଜୀବନ ଥିଲା ଅତ୍ୟନ୍ତ ଦୁଃଖ ଦାୟକ ଓ ସଂଘର୍ଷପୂର୍ଣ୍ଣ । ଘରୁ ବାପାଙ୍କର କୌଣସି ସାହାଯ୍ୟ ନଥାଇ ମଧ୍ୟ ମଧୁସୂଦନ କଲିକତାରେ ଘରୋଇ ଶିକ୍ଷକତା କରି ଜୀବନ ବିତାଉଥିଲେ । ଏପରିକି ରାତିରେ ଫୁଟ୍‌ପାଥରେ ବସି ରାସ୍ତାକଡ ଆଲୋକରେ ପାଠ ପଢୁଥିଲେ । ସେ କଲିକତାରେ ପାଠ ପଢିବା ସମୟରେ young Bengal Organisation ସହିତ ଯୋଗ ଦେବା ସହିତ ଡିବେଟିଂ ସୋସାଇଟିର ବିତର୍କ ସଭାମାନଙ୍କରେ ଅଂଶଗ୍ରହଣ କରୁଥିଲେ । ବକ୍ତୃତା ପ୍ରତିଯୋଗିତାରେ ତାଙ୍କର ଉଚ୍ଚକୋଟୀର ପାରଦର୍ଶିତା ସମସ୍ତଙ୍କୁ ବିସ୍ମିତ କରିଦେଉଥିଲା । ନିଜସ୍ୱ ପ୍ରତିଭାର ବିଚକ୍ଷଣ ବାଗ୍ମିତା ପାଇଁ ସେ କଲିକତାର ଜନମାନସରେ ଉଚ୍ଚ ପ୍ରଶଂସିତ ହେବା ସଙ୍ଗେ ସଙ୍ଗେ ଛାତ୍ରସମାଜରେ 'ମଧୁ ଉଡିୟା' ନାମରେ ସୁପରିଚିତ । ଜାତିପ୍ରାଣ ଉତ୍କଳଗୌରବ ଓଡ଼ିଆ ଜାତିର ଏକତା ଓ ସଂସ୍କୃତିକୁ ଉଜ୍ଜୀବିତ କରି ଓଡ଼ିଆ ପ୍ରାଣରେ ନବଜୀବନ ସଂଚାର କରିବା କ୍ଷେତ୍ରରେ ମଧୁବାବୁଙ୍କର ଅବଦାନକୁ ଏ ଜାତି କେବେ ଭୁଲିପାରିବ ନାହିଁ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସ୍ୱପ୍ନକୁ ସେ ଯେଉଁଳି ସାକାର କରିପାରିଥିଲେ, ତାହା କେବଳ ଇତିହାସରେ ସୀମାବଦ୍ଧ ନହୋଇ ଏ ଓଡ଼ିଆ ଜାତିର ମାନସ ପଟରେ ସର୍ବଦା ଚିର ସ୍ମରଣୀୟ ହୋଇରହିବ । ନବ ଉତ୍କଳର ଜନକଭାବେ ସେ ୧୯୩୪ ମସିହା ଫେବୃଆରୀ ୩ତାରିଖ ଦିନ ସ୍ୱାସ୍ଥ୍ୟର ଅବନତି ଯୋଗୁଁ ରାତି ୧.୨୦ ମିନିଟ୍ ସମୟରେ (୪ତାରିଖ ଦିନ) କର୍ମମୟ ଜୀବନର ୮୬ ବର୍ଷ ବୟସରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସେ ଆଜି ମଧ୍ୟ ଓଡ଼ିଶାବାସୀଙ୍କ ହୃଦୟରେ ଚିର ଅମର ।

'ଉତ୍କଳ ବରେଣ୍ୟ ସ୍ୱନ୍ନ ହେ ମଧୁସୂଦନ
ତୁମ ଲାଗି ଏକା ଆଜି ଏ ଉତ୍କଳ ଧନ୍ୟ' ।

ମଧୁବାବୁ କେବଳ ଉତ୍କଳଗୌରବ କି ଜାତୀୟ ଗୌରବ ନଥିଲେ, ସେ ଥିଲେ ବିଶ୍ୱ ଗୌରବ । ସେ ହେଉଛନ୍ତି ଓଡ଼ିଶାର ଗର୍ବ, ଗୌରବ ଓ ଓଡ଼ିଆ ଜାତିର ସ୍ୱାଭିମାନର ଶ୍ରେଷ୍ଠତମ ପ୍ରତୀକ ।

ସମ୍ପାଦକ, ଆଦିତ୍ୟ କଲ୍ୟାଣ ଅନୁଷ୍ଠାନ
ତାରିଣୀ ଭବନ,
ଜଗନ୍ନାଥପୁର,କଲେଜରୋଡ୍,
ଭଦ୍ରକ–୭୫୬୧୦୦

# ଉତ୍କଳ ମିଳନ ଓ ଉତ୍କଳ ପ୍ରଦେଶ ଗଠନ

ସୋମା ଚାନ୍ଦ

'ଉତ୍କଳ ମିଳନ' କବିଶେଖର ଚିନ୍ତାମଣି ମହାନ୍ତିଙ୍କ ରଚିତ ଏକ ମହାକାବ୍ୟ । ଏହି କାବ୍ୟର ରଚନାକାଳ ହେଲା ୧୯୩୫ ମସିହା । ସ୍ୱତନ୍ତ୍ର ଉତ୍କଳ ଗଠନ ପ୍ରାକ୍-କାଳରେ କାବ୍ୟଟି ରଚିତ ହୋଇଥିଲା, ଯାହା ସାହିତ୍ୟପ୍ରେମୀ ଆଠମଲ୍ଲିକ ନରେଶ ଶ୍ରୀଯୁକ୍ତ କିଶୋର ଚନ୍ଦ୍ର ଦେବଙ୍କୁ ଅର୍ପିତ ।

ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଭାଷାଭିତ୍ତିରେ ଅପ୍ରେଲ ୧ ତାରିଖ ୧୯୩୬ ମସିହାରେ ବିହାରଠାରୁ ଅଲଗା ହୋଇ ଓଡ଼ିଶା ଭାରତ ମାନଚିତ୍ରରେ ଆତ୍ମପ୍ରକାଶ କରିଥିଲା । ଯଦିଓ ବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ଓଡ଼ିଆଙ୍କର ଏହି ପ୍ରଚେଷ୍ଟା ଫଳବତୀ ହୋଇଥିଲା କିନ୍ତୁ ସ୍ୱତନ୍ତ୍ର ଉତ୍କଳ ଗଠନର ପ୍ରକ୍ରିୟା ଆରମ୍ଭ ହୋଇଥିଲା ବହୁପୂର୍ବରୁ ।

ଏଇ ପରିପ୍ରେକ୍ଷୀରେ ଉଲ୍ଲେଖ କରାଯାଇପାରେ ଯେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଥିଲା ଓଡ଼ିଶାବାସୀଙ୍କ ପାଇଁ ଏକ ସନ୍ଧିକ୍ଷଣ ସମୟ । ଏହି ସମୟରେ ଓଡ଼ିଆ ଜାତି ଘୋର ଦୁର୍ଦ୍ଦିନର ସମ୍ମୁଖୀନ ହୋଇ ଭାଷା, ସଂସ୍କୃତି ତଥା ପରିଚିତ ଦୃଷ୍ଟିରୁ ଥିଲା ବେଶ ଅସୁରକ୍ଷିତ ଅବସ୍ଥାରେ । ଭାରତର ବିଭିନ୍ନ ପ୍ରଦେଶ ସହିତ ବିକ୍ଷିପ୍ତ ଭାବରେ ଯୁକ୍ତ ରହି ଓଡ଼ିଆ ଜାତି ହରାଇ ବସିଥିଲା ନିଜର ଐକ୍ୟ, ସମ୍ମାନ ଓ ସ୍ୱାଭିମାନ । ପୁନଶ୍ଚ ସତୁରୀ ଦଶକର ଓଡ଼ିଆ ଭାଷା ବିଲୋପର ହୀନ ପ୍ରଚେଷ୍ଟା ଏ ଜାତିର ମନୋବଳକୁ ଆହୁରି ଦୁର୍ବଳ କରିଦେଇଥିଲା । ଠିକ୍ ଏଇ ଘଡିସନ୍ଧି ମୁହୂର୍ତ୍ତରେ ବହୁ ମନୀଷୀ ଜାତିର ପୁନରୁତ୍‌ଥାନ ପାଇଁ ବିଚ୍ଛିନ୍ନାଞ୍ଚଳ ଓଡ଼ିଆମାନଙ୍କ ଏକତ୍ରୀକରଣ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିର ସୁରକ୍ଷା ପାଇଁ ସଂଗ୍ରାମ କରି ଏକ ନବଚେତନା ଆଣିବାକୁ ପ୍ରତିଶ୍ରୁତିବଦ୍ଧ ଥିଲେ । ଏହି ଆନ୍ଦୋଳନର ମୁଖ୍ୟ ପୁରୋଧା ଥିଲେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସହ ଅନ୍ୟାନ୍ୟ ବହୁ ବରପୁତ୍ର । ସେମାନେ ଆପଣା ବଳିଷ୍ଠ ଭୂମିକାକୁ ବେଶ ଦାୟିତ୍ୱର ସହିତ ତୁଲାଇଥିଲେ ।

ସ୍ୱତନ୍ତ୍ର ଉତ୍କଳ ଗଠନ ଆନ୍ଦୋଳନର ପ୍ରଧାନ ସଂଗଠନ ଉତ୍କଳ ସମ୍ମିଳନୀ ଆତ୍ମପ୍ରକାଶ କରିଥିଲା ୧୯୦୩ ମସିହାରେ । ଏହି ସମ୍ମିଳନୀର ଏକମାତ୍ର ଲକ୍ଷ୍ୟ ଥିଲା ଛିନ୍ନମସ୍ତା ଉତ୍କଳ ଜନନୀର ସମସ୍ତ ଅଙ୍ଗକୁ ଏକତ୍ରିତ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା । ଏହି ଲକ୍ଷ୍ୟ ପୂରଣ ପାଇଁ ଏହାର କର୍ମକର୍ତ୍ତାମାନେ ଫିଲିଫ ଡଫ୍ କମିଟି ସାଇମନ କମିଶନ, ଓଡୋନେଲ କମିଟି ଅଟଲି କମିଟି ଆଦି ବିଭିନ୍ନ ରାଜନୈତିକ ସୋପାନ ଅତିକ୍ରମ କରିବାକୁ ଅକାଟ୍ୟଯୁକ୍ତି ଓ ସାକ୍ଷ୍ୟ ପ୍ରମାଣ ଉପସ୍ଥାପିତ କରିଥିଲେ । ସେମାନଙ୍କ ତ୍ୟାଗ, ନିଷ୍ଠା ଓ ଏକାଗ୍ର ପ୍ରଚେଷ୍ଟାରୁ ଉତ୍କଳ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ହାସଲ କରିଥିଲା ।

ସ୍ୱତନ୍ତ୍ର ଉତ୍କଳ ଗଠନର ଏଇ ରାଜନୈତିକ ପଟ୍ଟଭୂମିରେ ସାରସ୍ୱତ ସାଧକଙ୍କ ଭୂମିକା କୌଣସି ଗୁଣରେ ନ୍ୟୂନ ନଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେଉଁ ଆଧୁନିକତାର ଧାରା ଓଡ଼ିଆ ସାହିତ୍ୟରେ ଆରମ୍ଭ ହୋଇଥିଲା ତଦ୍ୱାରା ମଧ୍ୟଯୁଗୀୟ ଭକ୍ତିରସ ବା ପ୍ରେମ ସମ୍ବଳିତ ରଚନା ଧୀରେ ଧୀରେ ବିଦାୟ ନେଇଥିଲା । ସେହି ସ୍ଥାନରେ ଆତ୍ମପ୍ରକାଶ କରିଥିଲା ପ୍ରକୃତି, ସ୍ୱଦେଶପ୍ରୀତି, ଇତିହାସ, ନୈତିକତା, ମାନବିକତା, ଲୋକ ସଂସ୍କୃତି ଆଧାରିତ ବିବିଧ ସାହିତ୍ୟକୃତି । କବିଶେଖର ଚିନ୍ତାମଣି ମଧ୍ୟ ଏହି ଧାରାରେ ଆପ୍ଲୁତ ରହି ସୃଷ୍ଟି କରିଥିଲେ ବିଶାଳ ସାରସ୍ୱତ ଭଣ୍ଡାର, ଯାହା ମଧ୍ୟରୁ କବିଙ୍କର କାବ୍ୟକୃତିର ପରିଧି ଅନେକ ବିସ୍ତୃତ ।

କବିଙ୍କ କାବ୍ୟ ସଂଖ୍ୟା ୪୮ । 'ଉତ୍କଳ ମିଳନ' ତାଙ୍କର ଅନ୍ୟତମ ଐତିହାସିକ କାବ୍ୟ ଯାହା ୧୯୩୫ ମସିହା ଅପ୍ରେଲ

ମାସରେ ପ୍ରକାଶିତ ହୋଇଥିଲା । କାବ୍ୟଟି ଅମିତ୍ରାକ୍ଷର ଛନ୍ଦରେ ଲିଖିତ । କାବ୍ୟ ପ୍ରକାଶନ ବେଳକୁ ସ୍ୱତନ୍ତ୍ର ଉତ୍କଳ ଗଠନର ପ୍ରକ୍ରିୟା ଏକ ନିର୍ଦ୍ଦିଷ୍ଟ ରୂପରେଖ ନେଇ ସଫଳତା ଆଡକୁ ଅଗ୍ରସର ହେଉଥାଏ । ଓଡ଼ିଆ ଜାତିର ଏପରି ମାଙ୍ଗଳିକ ଲଗ୍ନରେ ହାସ୍ୟମୁଖୀ ଉତ୍କଳ ଜନନୀ ନିଜ ପ୍ରିୟ ସଖୀମାନଙ୍କ ସହିତ ମିଳିତ ହୋଇଥିଲେ । ସେମାନଙ୍କର ଏଇ ମିଳନ ବେଳାରେ ଉତ୍କଳ ଜନନୀ ନିଜ ହୃଦୟର ଆନନ୍ଦ ଉଚ୍ଛ୍ୱାସକୁ କିପରି ଗଭୀର ଭାବରେ ସଖୀମାନଙ୍କ ପାଖରେ ଉପସ୍ଥାପିତ କରିଛନ୍ତି, ତାହାହିଁ କାବ୍ୟର ବିଷୟବସ୍ତୁ । ପୁନଶ୍ଚ ଛିନ୍ନମସ୍ତା ଜନନୀକୁ ଯେଉଁମାନେ ଏକତ୍ରୀକରଣର ସଞ୍ଜିବନୀ ସୁଧା ପ୍ରଦାନ କରିବାରେ ସାହାଯ୍ୟ କରିଛନ୍ତି, ଆପଣାର ସେଇ ସୁଯୋଗ୍ୟ ସନ୍ତାନମାନଙ୍କୁ ଶ୍ରଦ୍ଧା ଓ ମମତାର ସହିତ ସ୍ମରଣ କରିଛନ୍ତି ଉତ୍କଳ ଜନନୀ ଆପଣା ସଖୀଙ୍କ ପାଖରେ ।

ଏଠାରେ ଆଉ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ ଯେ ସ୍ୱତନ୍ତ୍ର ଉତ୍କଳ ଗଠନର ପ୍ରମୁଖ ନେତୃବୃନ୍ଦଙ୍କ ବ୍ୟତୀତ ବହୁ ବଦାନ୍ୟ ବିସ୍ମୃତ ବ୍ୟକ୍ତିତ୍ୱ ଯେଉଁମାନଙ୍କର ଏହି ଆନ୍ଦୋଳନରେ କିଛି କିଛି ଅବଦାନ ରହିଛି, ସେମାନଙ୍କୁ ମଧ୍ୟ କବି ଉତ୍କଳ ଜନନୀ କାବ୍ୟରେ ସମ୍ମାନ ଜଣାଇଛନ୍ତି, ରାମଙ୍କ ସେତୁବନ୍ଧ ନିର୍ମାଣ ବେଳେ ସାମାନ୍ୟ ଗୁଣ୍ଡୁଚିଟିର କିଞ୍ଚିତ ଅବଦାନକୁ ମଧ୍ୟ ରାମ ଶତମୁଖରେ ପ୍ରଶଂସା କରିଥିଲେ । ସେମିତି ସ୍ୱତନ୍ତ୍ର ଉତ୍କଳ ଗଠନ ପାଇଁ ଅଳ୍ପବହୁତ ଯେଉଁମାନଙ୍କର ଅବଦାନ ରହିଛି କବି ଯଥାର୍ଥରେ ସେମାନଙ୍କୁ ସ୍ମରଣ କରି ପୂଜ୍ୟପୂଜାର ଯେଉଁ ଅନନ୍ୟ ପରମ୍ପରା ସୃଷ୍ଟି କରିଛନ୍ତି, ତାହା ବାସ୍ତବିକ ପ୍ରଶଂସନୀୟ । ଏଇ ଦୃଷ୍ଟିରୁ କାବ୍ୟଟି ମଧ୍ୟ ଅତୁଳନୀୟ । ଏଥିରେ ଉଲ୍ଲିଖିତ ପ୍ରତ୍ୟେକ ବ୍ୟକ୍ତି ଥିଲେ ସଚ୍ଚା ଉତ୍କଳପ୍ରେମୀ । ୧୯୨୦ ମସିହା ପରେ ଓଡ଼ିଶାର ତୁଙ୍ଗ ନେତାମାନେ ଭାରତର ସ୍ୱାଧୀନତା ସଂଗ୍ରାମକୁ ପ୍ରାଧାନ୍ୟ ଦେଇ ଯେତେବେଳେ ଉତ୍କଳ ସମ୍ମିଳନୀର କାର୍ଯ୍ୟକୁ ଗୌଣ କରିଦେଲେ ସେତେବେଳେ ଏଇ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱମାନେ ହିଁ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ପୂରଣ ପାଇଁ ଯଥେଷ୍ଟ ଯତ୍ନବାନ ଥିଲେ, ଏମାନଙ୍କର ସ୍ମରଣୀୟ ଭୂମିକା ତଥା ବଳିଷ୍ଠ ଅବଦାନରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ଭବପର ହୋଇଥିଲା ।

କାବ୍ୟ ପ୍ରାରମ୍ଭରେ ରାଜରାଜେଶ୍ୱରୀ ସୁଜଳା ସୁଫଳା ଉତ୍କଳ ଜନନୀ ସ୍ୱର୍ଣ୍ଣରଥରେ ଉପବିଷ୍ଟା ହୋଇ ନୀଳାଚଳ ଧାମରେ ଉପସ୍ଥିତ ହେବା ପରେ ଦକ୍ଷିଣରୁ ଗଞ୍ଜାମ ଦେବୀ ତାଙ୍କ ସହଚରୀମାନଙ୍କ ସହ, ଉତ୍ତରରୁ ମେଦିନୀ ଦେବୀ ସହଚରୀ ପରିବେଷ୍ଟିତା ହୋଇ, ପଶ୍ଚିମରୁ ସିଂହଭୂମି, ରାୟପୁରୀ, ବିଳାସପୁରୀ ଓ ଜୟପୁରୀ ଆଦି ଦେବୀଗଣ ସେମାନଙ୍କ ଅନୁଗାମିନୀଙ୍କ ସହ ଉତ୍କଳ ଜନନୀଙ୍କ ପାଖକୁ ଆସିଥିଲେ । ତାଙ୍କୁ ଅନ୍ତରର ଶ୍ରଦ୍ଧା ନିବେଦନ କରିଥିଲେ । ଉତ୍କଳ ଜନନୀ ମଧ୍ୟ ଏତେଦିନର ବିଚ୍ଛିନ୍ନ ସଖୀଙ୍କୁ ପାଖରେ ପାଇ ହର୍ଷୋତ୍‌ଫୁଲ୍ଲିତା ହୋଇ ମନଭରି ସେମାନଙ୍କ ଆଗରେ ବଖାଣି ବସିଥିଲେ ତାଙ୍କୁ ଏକତ୍ରିତ କରି ସ୍ୱତନ୍ତ୍ର ମାନ୍ୟତା ପ୍ରଦାନର କାହାଣୀ । ସେ ତାଙ୍କର ଯେଉଁ ପୁତମାନଙ୍କ ନାମ ଉଲ୍ଲେଖ କରିଥିଲେ ସମସ୍ତଙ୍କର କିନ୍ତୁ ସ୍ୱତନ୍ତ୍ର ଉତ୍କଳ ଗଠନରେ ରହିଥିଲା ନିର୍ଦ୍ଦିଷ୍ଟ ଭୂମିକା । ତେଣୁ ଭାବବିହ୍ୱଳ ଉତ୍କଳ ଜନନୀଙ୍କ ଭାଷା କବି ଲେଖନୀରେ ନିମ୍ନମତେ ଫୁଟିଉଠିଛି:

ଅନନ୍ତର ହାସ୍ୟମୁଖୀ ଉତ୍କଳ ଜନନୀ
କହିଲେ ମଧୁର ସ୍ୱରେ ସଙ୍ଗିନୀ ନିକରେ
ଶୁଣ ସର୍ବେ ଏକମନେ କହୁଛି ମୁଁ ଯାହା
ମୋ ଅଂଗ ସଂଯୋଗ ଲାଗି ପୁତ୍ରମାନେ ମୋର
କରିଛନ୍ତି ବହୁଚେଷ୍ଟା ବହୁବର୍ଷ ବ୍ୟାପୀ
ବ୍ୟଥା ମୋର ରାଜଦ୍ୱାରେ ଗାଇଲେ କରୁଣେ

ଘଟାଇଲେ ବହୁ ବାଧା ଲଗାଇଲେ କଳି
ସେ ଦୁର୍ଲଂଘ୍ୟ ବାଧାମାନ ନପାରି ଉଲଘିଂ
ପୁତ୍ରମାନେ ମୋର ହେଲେ ନାହିଁ ହତୋତ୍ସାହ
ଲାଗିଥିଲେ ଆଜିଯାଏ ସଂକଳ୍ପ ସାଧନେ ।

ଏହାପରେ ଉତ୍କଳ ଜନନୀ ଯେଉଁମାନଙ୍କ ନାମ ଉଚ୍ଚାରଣ କରିଛନ୍ତି ସମସ୍ତେ କିନ୍ତୁ ଥିଲେ ଗଠନ ପ୍ରକ୍ରିୟାରେ ନିବେଦିତ ପ୍ରାଣ । ପ୍ରକାରାନ୍ତରେ ସେହି କୃତୀ ସନ୍ତାନଙ୍କ ନାଁ ଉତ୍କଳ ଜନନୀ ମୁହଁରେ ସ୍ମରଣ କରାଇ କବି ସେମାନଙ୍କୁ ଆସୀନ କରିଛନ୍ତି ଶ୍ରଦ୍ଧା ଓ ସମ୍ମାନର ଶୀର୍ଷଦେଶରେ ।

ମଧୁ ମୋର ଜ୍ୟେଷ୍ଠ ପୁତ୍ର ମାତୃ ପରାୟଣ
ମୋ ମହିମା ବୃଦ୍ଧି ପାଇଁ ଉତ୍ସର୍ଗିଲା ପ୍ରାଣ
ମହାପ୍ରାଣ ମାନବ ସେ ଧନମାନ ଦେଇ
ଲାଗିଲା ପୂଜାରେ ମୋର ବୀର ବିକ୍ରମେ ।
ଅର୍ଜିଅଛି ପୁତ୍ରମଣି ରାଶି ରାଶି ଅର୍ଥ
କିନ୍ତୁ ହାୟ ! ମୋହ ଲାଗି ହେଲା ଋଣଗ୍ରସ୍ତ
ତେବେ ସୁଦ୍ଧା ନାହିଁ ତାର ତିଳେ ହେଁ ଭ୍ରୂକ୍ଷେପ ।

ଜ୍ୟେଷ୍ଠ ହିଁ ଶ୍ରେଷ୍ଠ । ଏହି ନ୍ୟାୟରେ ଜନନୀ ପ୍ରଥମେ ସ୍ମରଣ କରିଛନ୍ତି ତାଙ୍କ ଜ୍ୟେଷ୍ଠପୁତ୍ର ମଧୁବାବୁଙ୍କୁ ଯିଏ ଥିଲେ ସ୍ୱତନ୍ତ୍ର ଉତ୍କଳ ଗଠନର ବରେଣ୍ୟ ଅଗ୍ରଗାମୀ ନେତା । ନିଜ ଧନମାନ

ଯଶ ଅର୍ଥ ସବୁକୁ ଜନ୍ମମାଟି କଲ୍ୟାଣରେ ନିୟୋଜିତ କରି ସିଏ ମାତୃ ପରାୟଣତା ତଥା ଓଡ଼ିଆ ସ୍ୱାଭିମାନର ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ତା'ର ପଟାନ୍ତର ନାହିଁ । ତାଙ୍କ ପରେ ଆସିଛି ଅନ୍ୟାନ୍ୟ କୃତୀସନ୍ତାନଙ୍କ କଥା । ଯେମିତି ମଧୁବାବୁଙ୍କ ପରେ କବି ସ୍ମରଣ କରିଛନ୍ତି ସ୍ୱତନ୍ତ୍ର ଉତ୍କଳ ଗଠନର ଅନ୍ୟତମ କାଣ୍ଡାରୀ ପାରଳା ରାଜାଙ୍କୁ ।

ଶୁଭକ୍ଷଣେ ଉଦେ ହେଲ ପାରଳା ରାଜ୍ୟରେ
କୃଷ୍ଣଚନ୍ଦ୍ର ଗଜପତି ଗଜପତି ବଂଶେ

ସୁଦୂର ପ୍ରବାସେ ତେର ସମୁଦ୍ର ସେପାରେ
ଜଣାଇଲା ଚକ୍ରବର୍ତ୍ତୀ ଦରବାରେ ତହିଁ
ସବୁ ଦୁଃଖ ବ୍ୟଥା ମୋର ଦେଖାଇ ଦାୟିକା
ଗାଇଲା କରୁଣେ ମୋର ଦୁର୍ଦ୍ଦଶାର ଗୀତ
ମର୍ମଭେଦୀ ସ୍ୱରେ ଯୁକ୍ତି ଦେଖାଇ ଅକାଟ୍ୟ
ତାହାରି ସେ ସକାତର ନ୍ୟାଯ୍ୟ ପ୍ରାର୍ଥନାରେ
ତିନ୍ତିଲା ସମ୍ରାଟ ହୃଦ ଦୟାରେ ସଜଳ
ତହିଁ ତାଙ୍କ ଶୁଭାଦେଶ ଶୁଭଦୃଷ୍ଟି ଫଳେ
ସଂଯୋଜିତ ହେଲା ମୋର ବିଖଣ୍ଡିତ ଦେହ ।

ସ୍ୱତନ୍ତ୍ର ଉତ୍କଳ ଗଠନରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମହୋଦୟଙ୍କ ଭୂମିକାର କି ସୁନ୍ଦର ସୁଲଳିତ ଆକଳନଟିଏ ! କବିତାର ମନୋରମ ଛାନ୍ଦ ମଧ୍ୟଦେଇ କବି ଦର୍ଶାଇ ଦେଇଛନ୍ତି କୃଷ୍ଣଚନ୍ଦ୍ରଙ୍କ ଅଗ୍ରଣୀ ଭୂମିକା କଥା । ସ୍ୱତନ୍ତ୍ର ଉତ୍କଳ ଗଠନର ଅନ୍ୟତମ କର୍ଣ୍ଣଧାର କୃଷ୍ଣଚନ୍ଦ୍ର ଗଜପତିଙ୍କ ବିନା ଏହି ସ୍ୱପ୍ନ ଯେ ଅଧୁରା ରହିଥାନ୍ତା, ତାହା କବି ପ୍ରକାରାନ୍ତରେ ଦର୍ଶାଇଛନ୍ତି ।

ଏହାପରେ କବିଙ୍କ ବର୍ଣ୍ଣନାରେ ସ୍ଥାନ ପାଇଛନ୍ତି ଚିକିଟି ନୃମଣି ଗୌରଚନ୍ଦ୍ର ଦେବ, ଧରାକୋଟ ନରେଶ ମଦନମୋହନ ଦେବ, ଖଲିକୋଟ ନୃପ ରାମଚନ୍ଦ୍ର ଦେବ, ଜୟପୁର ପତି ଶ୍ରୀ ବିକ୍ରମ ଦେବ, କଳାହାଣ୍ଡି ନୃପ ରାମଚନ୍ଦ୍ର ଦେବ ଇତ୍ୟାଦି । ଏହି ରାଜାମାନଙ୍କ ଭୂମିକାକୁ ସ୍ମରଣ କରି ସେମାନଙ୍କୁ ଯଥାଯୋଗ୍ୟ ସମ୍ମାନ ଦେବାକୁ ଭୁଲିନାହାନ୍ତି ଜାତିପ୍ରାଣ କବି ଚିନ୍ତାମଣି । ଏମାନେ ବିଚ୍ଛିନ୍ନାଞ୍ଚଳ ସବୁକୁ ଓଡ଼ିଶା ସହିତ ଏକତ୍ରିତ କରିବା ପାଇଁ ଅନେକ ସମୟରେ ପରୋକ୍ଷରେ ଉତ୍ସାହ, ଉଦ୍ଦୀପନା, ଆର୍ଥିକ ସାହାଯ୍ୟ ଯୋଗାଇଛନ୍ତି ଓ ଦରକାର ବେଳେ ପ୍ରତ୍ୟକ୍ଷ କର୍ମୀ ଭାବରେ ମଧ୍ୟ ପ୍ରାଙ୍ଗଣରେ ଅବତୀର୍ଣ୍ଣ ହୋଇଛନ୍ତି । ପୁତ୍ରଗର୍ବେ ଗରବିନୀ ଉତ୍କଳ ଜନନୀ ଅକୁଣ୍ଠ ଚିତ୍ତରେ ନରପତି ପୁତ୍ରମାନଙ୍କ ନିଷ୍ଠା, ଉତ୍ସର୍ଗ ଓ ଉଦ୍ୟମ ମନୋବୃତ୍ତି ପ୍ରତି ପ୍ରଶଂସାରେ ପଞ୍ଚମୁଖ ହୋଇଥିଲା ବେଳେ ଅନ୍ୟ ପୁତ୍ରମାନଙ୍କୁ ମଧ୍ୟ ବିସ୍ମୃତ ହୋଇନାହାନ୍ତି । ସେମାନେ ଇତିହାସରେ ସ୍ଥାନ ପାଇନଥିଲେ ହେଁ କବିଙ୍କ ଲେଖନୀ ମୁନରେ ସେମାନେ ହୋଇ ଉଠିଛନ୍ତି ଜୀବନ୍ତ ।

ଆଉ କେତେ କୃତୀ ପୁତ୍ର ମୋ ଉଦ୍ଧାର ଜାଗେ
ଘୃତ ପୁଷ୍ପ ଯଜ୍ଞ କାଷ୍ଠ ଅକ୍ଷତ ସ୍ୱରୂପେ
ବ୍ୟୟ କରି ଧନ ବଳ ବୁଦ୍ଧି ପରମାୟୁ
ହୋଇଛନ୍ତି ସାହା ମୋର ପୂର୍ଣ୍ଣାଙ୍ଗ ପ୍ରାପ୍ତିରେ
ସହିଛନ୍ତି ଥଟ୍ଟା ଗାଳି ନିନ୍ଦା ଅପମାନ ।

ମୋ ଶ୍ରୀକୃଷ୍ଣ ମହାପାତ୍ର ବୀର ଧନୁର୍ଦ୍ଧର
ବାସ୍ତବରେ ମହାପାତ୍ର ସେହୁ, ଦେଖାଇଲା
ରାଜଦ୍ୱାରେ ଓଡ଼ିଆର ପ୍ରତିଭା ପ୍ରଭାବ ।
ଲକ୍ଷ୍ମୀବନ୍ତ ଲକ୍ଷ୍ମୀଧର ରାୟବାହାଦୁର
ମୋର ଦକ୍ଷ ପୁତ୍ର, ତାର ସାର୍ଥକ ଉପାଧି
ଗୁଣଧର ପୁତ୍ର ମୋର ଭିକାରୀ ଚରଣ
ଏଣ୍ଡିବିଦ୍ୟା ପ୍ରବର୍ତ୍ତକ, ନବ ହୃନ୍ଦରିଥା
କର୍ମବୀର ମାତୃଭକ୍ତି ଆଦର୍ଶ ତାହାର ।

ଏମାନଙ୍କ ପରେ କବିଙ୍କ ବର୍ଣ୍ଣନା ପରିସରକୁ ଆସିଛନ୍ତି ନୀଳମଣି ସେନାପତି, ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ, ଲବକୁଶ ଦୁଇଭାଇ–ଭୁବନାନନ୍ଦ ଦାସ ଓ ବିଚିତ୍ରାନନ୍ଦ ଦାସ, ମେଦିନୀପୁରର ଓକିଲ ରାଧାନାଥ ପତି, ନିମାପଡାର ପୋଲିସ ସୁପରିଟେଣ୍ଡେଣ୍ଟ୍ ଦାମୋଦର ରଥ ପ୍ରମୁଖ କର୍ମବୀରମାନେ, ଆପଣା ପେଶାଗତ ଜୀବନ ବ୍ୟତିରେକ ସ୍ୱତନ୍ତ୍ର ଉତ୍କଳ ଗଠନ ପାଇଁ ସେମାନଙ୍କ ଏକନିଷ୍ଠ ଉଦ୍ୟମ ଉତ୍କଳ ଜନନୀଙ୍କୁ ବିମୋହିତ କରିଛି । ତେଣୁ ପ୍ରାଣଭରି ଜନନୀ ସେମାନଙ୍କୁ ଆଶୀର୍ବାଦ କରି ସେମାନଙ୍କ ଉତ୍ତରୋତ୍ତର ମଙ୍ଗଳ କାମନା କରିଛନ୍ତି ।

ଭାଷାକୋଷ ପ୍ରଣେତା ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ ଭାଷାକୋଷ ପ୍ରଣୟନ କରି ଓଡ଼ିଆ ଭାଷାର ସୁରକ୍ଷା ଓ ଉନ୍ନତି କଳ୍ପେ ଯାହା କରିଛନ୍ତି, ତାହା ଏକକଥାରେ ଅତୁଳନୀୟ । ଭାଷା ହେଲା ଜାତୀୟ ଚରିତ୍ର ଗଠନର ଏକ ବଳିଷ୍ଠ ମାଧ୍ୟମ । ଭାଷା ମଧ୍ୟ ଜାତୀୟ ଐକ୍ୟକୁ ସୁଦୃଢ କରି ବାନ୍ଧିରଖେ ଏକତାର କଠିନ ରଜ୍ଜୁରେ । ଭାଷାକୋଷ ପ୍ରଣୟନ ତାତ୍ତ୍ୱିକ ଦୃଷ୍ଟିକୋଣରୁ ଓଡ଼ିଆଙ୍କୁ ଏକତ୍ରିତ କରି ପ୍ରତ୍ୟକ୍ଷ କର୍ମର ଆହ୍ୱାନ ଦେଇଛି । ତେଣୁ ତାଙ୍କ କୃତିରେ ଉତ୍କଳ ଜନନୀ ପ୍ରଶଂସାରେ ଶତମୁଖ ସମ୍ବଲପୁରର ଓକିଲ ରାମନାରାୟଣ ମିଶ୍ର ଓ ସେଠାକାର ସକ୍ରିୟ ନେତା ଚନ୍ଦ୍ରଶେଖର ବେହେରା, ସୁପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ମୃତ୍ୟୁଞ୍ଜୟ କାବ୍ୟତୀର୍ଥ

ଏହାପରେ ଉତ୍କଳ ଜନନୀଙ୍କ ଆଶୀର୍ବାଦ ଲଭିଛନ୍ତି । ଜନନୀ ଏଇ ସୁପୁତ୍ରମାନଙ୍କ ନିଷ୍ଠା ଓ କର୍ମ ଏକାଗ୍ରତାରେ ବିମୋହିତ ହୋଇ ଆପଣା ସଖୀମାନଙ୍କୁ ମଧ୍ୟ କହିଛନ୍ତି ସେମାନଙ୍କୁ ଆଶୀର୍ବାଦ କରିବାକୁ ।

ବାଲେଶ୍ୱରର ସମାଜସେବୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ ପ୍ରଥମ ବାଚସ୍ପତି ମୁକୁନ୍ଦ ପ୍ରସାଦ ଦାସ, ବାଚସ୍ପତି ଓ ସାଂସଦ ନନ୍ଦକିଶୋର ଦାସ, ଭଦ୍ରକର ରାୟବାହାଦୁର ଭୂୟାଁ ଭାସ୍କରଚନ୍ଦ୍ର, ସିଂହତୁଲ୍ୟ ଜଗବନ୍ଧୁ ସିଂହ ଆଦି ଉତ୍କଳ ଗଠନର ଉଦ୍ୟୋଗୀ ବ୍ୟକ୍ତିତ୍ୱମାନେ କବିଙ୍କ ବର୍ଣ୍ଣନାରେ ସ୍ଥାନ ପାଇଛନ୍ତି । ପୁନଶ୍ଚ ଆଉ କିଛି ଅଣଉଲ୍ଲେଖିତ ବ୍ୟକ୍ତିଙ୍କ ଅବଦାନକୁ ସ୍ମରଣ କରି କବି ଲେଖିଛନ୍ତି–

କରିଛନ୍ତି ବହୁଚେଷ୍ଟା ମହନ୍ତମଣ୍ଡଳୀ
ରାଧାକାନ୍ତ ଏମାରାଦି ମଠ ସମୂହର
ଧର୍ମଗୁରୁ ଧର୍ମତତ୍ତ୍ୱ ବିଜ୍ଞାତ ସକଳେ
ଅର୍ଜିଲେ ଅକ୍ଷୟ ପୁଣ୍ୟ ଜନନୀ ସେବାରେ
ଖ୍ରୀଷ୍ଟାନ୍ ମୁସଲମାନ ପୁତ୍ରମାନେ ମୋର
ଆବର ଦେଶର ସଭା ସମିତି ସକଳ
କରିଛନ୍ତି ରାଜଦ୍ୱାରେ ମୋ ସକାଶେ ଅଳି
ନିବେଦନ ଆବେଦନ ଅନୁନୟ ସହ ।

ସ୍ୱତନ୍ତ୍ର ଉତ୍କଳ ଗଠନ କୌଣସି ଜଣେ ବ୍ୟକ୍ତିର ଏକକ ପ୍ରଚେଷ୍ଟାର ଫଳ ନୁହେଁ । ଏଥିରେ ରହିଛି ବହୁ ପ୍ରତ୍ୟକ୍ଷ ପରୋକ୍ଷ, ନିରବ ଅବା ସକ୍ରିୟ କର୍ମୀଙ୍କ ତ୍ୟାଗପୂତ ଏକନିଷ୍ଠ ଭୂମିକା । ସେମାନେ ସମସ୍ତେ କିନ୍ତୁ ଇତିହାସର ପୃଷ୍ଠାମଣ୍ଡନ କରିନାହାନ୍ତି । ଏହିପରି କିଛି ନିରୁଚ୍ଚାରିତ କର୍ମୀଙ୍କୁ କବି ସାମୂହିକ ଭାବରେ ଉତ୍କଳ ଜନନୀର ମୁହଁରେ ପ୍ରଶଂସାର ବାଣୀ ଶୁଣାଇଛନ୍ତି ଯାହା ତାଙ୍କ ଉଦାର ମାନବିକତା ତଥା ଜାତିପ୍ରୀତିର ପରିଚାୟକ ।

ଏହାପରେ କବିଙ୍କ ଦୃଷ୍ଟି ଯାଇ ନିବଦ୍ଧ ହୋଇଛି ଦକ୍ଷିଣ ଓଡ଼ିଶାରେ । 'ଆଶା'ର ଜନକ ଶଶୀଭୂଷଣ ରଥ, ବିଶ୍ୱନାଥ ଦାଶ, ଆସ୍କାର ନିରଞ୍ଜନ ପଟ୍ଟନାୟକ, ବ୍ରହ୍ମପୁରର ବ୍ୟବସ୍ଥାପକ ଓକିଲ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, ବ୍ରହ୍ମପୁରର ଦୀନବନ୍ଧୁ ଦାସ, ଲିଙ୍ଗରାଜ ପାଣିଗ୍ରାହୀ, ମଧୁସୂଦନ ପାଣିଗ୍ରାହୀ, ଉମାଚରଣ ପଟ୍ଟନାୟକ, ମାନ୍ଧାତା ନିତ୍ୟାନନ୍ଦ ପଟ୍ଟନାୟକ, ପାରଳା କଲେଜର ଅଧ୍ୟାପକ ଯୁଗଳ କିଶୋର ପାଣିଗ୍ରାହୀଙ୍କ କର୍ମଗାଥା ଓ ଜନ୍ମଭୂମି ପ୍ରତି ମମତାକୁ ସ୍ମରଣ କରି କବି ଉଚ୍ଚକଣ୍ଠରେ ଗାନ କରିଛନ୍ତି ସେମାନଙ୍କ ଭୂମିକାକୁ । ପ୍ରଜାବନ୍ଧୁର ସମ୍ପାଦକ ଅବା ଜୟପୁର ରାଜପରିବାରର କୁମାର ବିଦ୍ୟାଧର ସିଂହଦେବ ମଧ୍ୟ କବିଙ୍କ ରଚନାରୁ ବାଦ୍ ପଡିନାହାନ୍ତି । ଯେମିତି–

ପ୍ରଜାବନ୍ଧୁ ସମ୍ପାଦକ ଶ୍ରୀ ଭୁବନେଶ୍ୱର
କରିଛି ମୋ ଲାଗି ଚିନ୍ତା ବହୁ ଶକ୍ତି ବ୍ୟୟ
ତାହାପରି ସ୍ପଷ୍ଟବାଦୀ ନୈତିକ ସାହସୀ
ଅଛନ୍ତି ଅତ୍ୟଳ୍ପ ମୋର ପୁତ୍ରଗଣ ମଧ୍ୟେ

ବିଦ୍ୟାଧର ସିଂହଦେବ ଯୋଗ୍ୟପୁତ୍ର ମୋର
ତାହାପରି ସୂକ୍ଷ୍ମଦର୍ଶୀ ସୁପ୍ରତିଭାବନ୍ତ
ବିରଳ ସର୍ବଥା ନବ୍ୟ ଉତ୍କଳ ସମାଜେ ।
ଛିନ୍ନାଂଶ ସଂଯୋଗ ମୋର ଅଣ୍ଟାଭିଡି ଦୃଢେ
କରିଅଛି ପୁତ୍ରରତ୍ନ ଦୁଃସାଧ୍ୟ ସାଧନ ।

ସ୍ୱତନ୍ତ୍ର ଉତ୍କଳ ଗଠନରେ କେବଳ ପୁତ୍ରମାନଙ୍କ ଭୂମିକାକୁ ସ୍ମରଣ କଲେ କଥାଟା ଅପୂର୍ଣ୍ଣ ରହିଯିବ । ସମାଜର ଅନ୍ୟ ଏକ ଅଂଗ କନ୍ୟାମାନଙ୍କ ଭୂମିକାକୁ ମଧ୍ୟ କୌଣସି ଗୁଣରେ ଅସ୍ୱୀକାର କରାଯାଇନପାରେ । ମାତାଙ୍କର ସୁଯୋଗ୍ୟା କନ୍ୟାମାନେ ମଧ୍ୟ ନିଜ ନିଜ ପରିଧି ଭିତରେ ମାତାର ଏକତ୍ରୀକରଣ ପାଇଁ କିଛି କମ୍ ଅବଦାନ କରିନାହାନ୍ତି । ମା'ର ଦୁଃଖ ସାଧାରଣ ଭାବେ ଝିଅ ବେଶୀ ଅନୁଭବ କରିପାରେ । ଝିଅକୁ ଗୋଟି ଗୋଟି ହୋଇ ଦେଖାଯାଏ ମା'ର ଦୈନ୍ୟ ଓ ଯନ୍ତ୍ରଣା । ଉତ୍କଳ ଜନନୀଙ୍କ କନ୍ୟାମାନେ ଅବା ଏଇ ନିୟମରୁ ବ୍ୟତିକ୍ରମ ହେବେ କିପରି ? ସେମାନେ ମଧ୍ୟ ମାତାର ପୂର୍ଣ୍ଣାଙ୍ଗ କଳେବର ପ୍ରକାଶ ପାଇଁ ଆପଣା କ୍ଷେତ୍ରରେ କର୍ମରତ । ତେଣୁ ସାମୂହିକ ଭାବେ ନିଜ କନ୍ୟାମାନଙ୍କ ଶୁଭ ଓ ମଙ୍ଗଳ ମନାସି ଉତ୍କଳ ଜନନୀ ଝରାଇ ଦେଇଛନ୍ତି ତାଙ୍କ ଆଶୀର୍ବାଦର ଫଲ୍‌ଗୁଧାରା ।

ନାରୀର ଗୌରବ ପୁଣି ନାରୀର ଆସନ
ପାରିଲେଣି କଳି ଏହା ଅନ୍ଧାରେ ଆଲୁଅ
ସୁଖ–ଶ୍ରୀ–ସୌଭାଗ୍ୟ ସ୍ୱାସ୍ଥ୍ୟ ଭୁଞ୍ଜନ୍ତୁ ସକଳେ
ଏଇ ସୁକଲ୍ୟାଣ ମୋର ପ୍ରିୟ କନ୍ୟାଗଣ ।
କେତେ ମୁଁ କହିବି ସଖି ଜାଣତ ସକଳେ
ସବୁ କଥା ଅଛନ୍ତି ଗୋ ଆହୁରି ଅନେକେ
ମାତୃପ୍ରାଣ ମାତୃପ୍ରାଣା ପୁତ୍ରକନ୍ୟା ମୋର
ସାଧୁଛନ୍ତି ସାଧ୍ୟମତେ ମାତୃମହୀ ହିତ
କର ମଧୁପାନ ତାଙ୍କ ମଙ୍ଗଳ ମନାସି ।

ସ୍ୱତନ୍ତ୍ର ଉତ୍କଳ ଗଠନ ପରିପ୍ରେକ୍ଷୀରେ ସଖିଙ୍କ ସହିତ ମିଳନରେ ମଜ୍ଜିଥିବା ବେଳେ ଉତ୍କଳ ଜନନୀ କାବ୍ୟର ଶେଷଭାଗରେ ସଚେତନ ହୋଇ ପଡିଛନ୍ତି । ଉତ୍କଳର ସବୁ ଘଟଣାର ନିରବ ସାକ୍ଷୀ ଜଗନ୍ନାଥଙ୍କ ଆଶୀର୍ବାଦ ବିନା ସବୁ କିଛି ଅଧୁରା । ତେଣୁ ଜଗତର ନାଥ ଜଗନ୍ନାଥଙ୍କ ଆଶୀର୍ବାଦ କାମନା କରି ଉତ୍କଳ ଜନନୀ ସଖୀ ବିମଣ୍ଡିତା ହୋଇ ପ୍ରବେଶ କରିଛନ୍ତି ବଡଦେଉଳରେ । ଜଗତର ପିତାଙ୍କୁ ଜଣାଇଛନ୍ତି ନିଜର ବିଖଣ୍ଡିତ ହୀନ ଅବସ୍ଥା କଥା । ଆଗତ ଉଜ୍ଜଳ ଭବିଷ୍ୟତର ସୂଚନା ଦେଇ ମହାପ୍ରଭୁ ଜଗନ୍ନାଥ ଉତ୍କଳ ଜନନୀଙ୍କୁ ଯେଉଁ ସାନ୍ତ୍ୱନାର ବାଣୀ ଶୁଣାଇଛନ୍ତି ତାହା ବାସ୍ତବରେ ସମଗ୍ର ଉତ୍କଳ ଭୂମିର ଚାରିତ୍ରିକ ବୈଶିଷ୍ଟ୍ୟକୁ ପ୍ରତିପାଦନ କରେ ।

ତୁହି ମୋର ଲକ୍ଷ୍ମୀକନ୍ୟା ଭାଗ୍ୟବତୀ କନ୍ୟା<br>
କି ସମ୍ପଦ ନାହିଁ ତୋର ଅକ୍ଷୟ ଭଣ୍ଡାରେ<br>
କାର ଅଛି ତୋହ ପରି ଗିରୀନ୍ଦ୍ର ମହେନ୍ଦ୍ର<br>
କା'ର ଅଛି ତୋର ଯଥା ଚିଲିକା ଅଂଶୁପା<br>
କୋଣାର୍କ, ଭୁବନେଶ୍ୱର, ଅଳତି ଶିଖରୀ–<br>
ଚନ୍ଦନଶୀତଳ ଖଣ୍ଡଗିରି–ଶିଳ୍ପେ ଯାର<br>
ପରାଜିତ ବିଶ୍ୱକର୍ମା ଦେବଶିଳ୍ପୀ ବର ।<br>
ତୋ ପରି କାହାର ଅଛି ଦ୍ୱିତୀୟ ଜାହ୍ନବୀ<br>
ଚିତ୍ରୋତ୍ପଳା ମହୋଦଧି–ନିଧିର ଆକର<br>
ଝର ତୀର୍ଥ ଦେବାଳୟ, ଘନ ଅରଣ୍ୟାନୀ ।<br>
କେଉଁ ରତ୍ନ କେଉଁ ଧାତୁ କେଉଁ ମହୌଷଧି<br>
ନାହିଁ ତୋ ଭଣ୍ଡାରେ ଏତେ ଅମୂଲ୍ୟ ସମ୍ପଦ<br>
କାହାର ବା ଅଛି ଆଉ ତୋର ବ୍ୟତିରେକ ?

ବାସ୍ତବିକ ପ୍ରାଚୁର୍ଯ୍ୟଭରା ସମୃଦ୍ଧ ଉତ୍କଳର ଏକ ମନୋରମ ଚିତ୍ର ଯେମିତି କବି ଆଣି ଥାପି ଦେଇଛନ୍ତି ପାଠକଙ୍କ ସାମ୍ନାରେ ।

କାବ୍ୟର ଶେଷଭାଗରେ ତୃପ୍ତା ସନ୍ତୁଷ୍ଟା ଉତ୍କଳ ଜନନୀ ଓ ତାଙ୍କ ସଖୀମାନେ ଫେରି ଯାଇଛନ୍ତି ଆପଣା ଆପଣା ଆଳୟକୁ । ଜଗତର ନାଥଙ୍କ ସ୍ନେହ, ଆଦର ଓ ଭବିଷ୍ୟତ ସୌଭାଗ୍ୟର ଆଶୀର୍ବାଦକୁ ପାଥେୟ କରି ସମସ୍ତେ ପ୍ରତ୍ୟାବର୍ତ୍ତନ କରିଯାଇଛନ୍ତି ଆଗାମୀ ଉଜ୍ଜଳ ଭବିଷ୍ୟତର ସ୍ୱପ୍ନ ନେଇ ।

'ଉତ୍କଳ ମିଳନ' କାବ୍ୟଟି ସ୍ୱତନ୍ତ୍ର ଉତ୍କଳ ଗଠନ ପ୍ରାକ୍କାଳରେ ରଚିତ ହୋଇଥିବାରୁ ଏଥିରେ ରହିଛି ସ୍ୱପ୍ନ ସାକାର ହେବାର ପରିପ୍ରକାଶ । ସଖିଙ୍କ ସହିତ ମିଳନ ବେଳାରେ ଉତ୍କଳ ଜନନୀର ଉତ୍‌ଫୁଲ୍ଲିତ ଭାବକୁ କବି ଯେଉଁ ବର୍ଣ୍ଣାଢ୍ୟ ପରିପାଟୀ ଦେଇ ଉପସ୍ଥାପିତ କରିଛନ୍ତି, ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ । ପୁନଶ୍ଚ ସ୍ୱତନ୍ତ୍ର ଉତ୍କଳ ଗଠନ ପରିପ୍ରେକ୍ଷୀରେ ଏହା ପଛରେ ଥିବା ସୁଯୋଗ୍ୟ କୃତୀ ସନ୍ତାନମାନଙ୍କୁ ଅନ୍ତରର ଅକୁଣ୍ଠ ଶ୍ରଦ୍ଧା ମମତା ଓ ସମ୍ମାନ ଜଣାଇବାରେ କବିଙ୍କର ଲେଖନୀ ଆଦୌ କାର୍ପଣ୍ୟ କରିନାହିଁ । କାବ୍ୟଟି ଯଥାର୍ଥରେ ସ୍ୱତନ୍ତ୍ର ଉତ୍କଳ ଗଠନର ସ୍ୱର୍ଣ୍ଣିମ ସ୍ୱାକ୍ଷର ତଥା ଦେଶପ୍ରାଣ କବିଙ୍କ ଦେଶପ୍ରୀତିର ଉଜ୍ଜ୍ୱଳ ପରିପ୍ରକାଶ ।

ପ୍ରାଧ୍ୟାପିକା, ଇତିହାସ ବିଭାଗ
ରମାଦେବୀ ମହିଳା (ସ୍ୱୟଂଶାସିତ) ମହାବିଦ୍ୟାଳୟ
ଭୁବନେଶ୍ୱର

❖ ❖ ❖

# ଦେଶପ୍ରାଣ ମଧୁସୂଦନ

ରବୀନ୍ଦ୍ର କୁମାର ବେହୁରିଆ



କଟକ ଜିଲ୍ଲା ସତ୍ୟଭାମାପୁର ଗ୍ରାମରେ ମଧୁବାବୁଙ୍କ ଜନ୍ମ ୧୮୪୮ ମସିହା ଏପ୍ରିଲ ମାସ ୨୮ ତାରିଖରେ । ଗ୍ରାମ ଚାଟଶାଳୀ ପାଠ ଶେଷ କରି ମଧୁବାବୁ ନିଜ ଗ୍ରାମ ନିକଟରେ ଥିବା ପାର୍ସି ସ୍କୁଲରେ ଉଚ୍ଚ ପ୍ରାଥମିକ ଶିକ୍ଷା ଶେଷ କରିଥିଲେ । ତା'ପରେ କଟକଠାରେ ଜିଲ୍ଲା ସ୍କୁଲରେ ଷଷ୍ଠଶ୍ରେଣୀରେ ଯୋଗଦେଇ ମାଟ୍ରିକ (ଏଣ୍ଟ୍ରାନ୍ସ) ପାଶ୍ କରିଥିଲେ ୧୮୬୫ ମସିହାରେ । ତା'ପରେ ବାଲେଶ୍ୱରରେ ଶିକ୍ଷକ ଭାବରେ ଗୋଟିଏ ବର୍ଷ କାର୍ଯ୍ୟକରି ଉଚ୍ଚଶିକ୍ଷା ଲାଗି କଲିକତା ଗଲେ । ଏଫ୍ଏ ଠାରୁ ଏମ୍.ଏ ଓ ବି.ଏଲ୍ ପାଶ୍ କରିବାରେ ମଧୁବାବୁ ଥିଲେ ପ୍ରଥମ ଓଡ଼ିଆ । ତା'ପରେ ସେ ଓକିଲାତି ଲାଇସେନ୍ସ ଆଣି ପ୍ରଥମ ଓଡ଼ିଆ ଓକିଲ ଭାବରେ କିଛି ବର୍ଷ କଲିକତାରେ ଓକିଲାତି କରି ୧୮୮୧ ମସିହାରେ କଟକ ଆସି ଓକିଲାତି କଲେ । ବଙ୍ଗଳା ଭାଷୀ– ଓକିଲମାନଙ୍କ ଉଦାସୀନ ମନୋଭାବ ହେତୁ ଜିଲ୍ଲା ଜଜ୍ ମଧୁବାବୁଙ୍କ ବସିବା ପାଇଁ ଅଲଗା ଏକ କୋଠରୀରେ ବ୍ୟବସ୍ଥା କରିଥିଲେ । ସେତେବେଳେ ଓଡ଼ିଆମାନଙ୍କ ସାମାଜିକ, ଶିକ୍ଷାଗତ ଓ ଆର୍ଥିକ ଅବସ୍ଥା ବହୁ ତଳ ସୋପାନରେ ରହିଥିଲା ।

କର୍ମବହୁଳ ଦୀର୍ଘ ଜୀବନକାଳ ମଧ୍ୟରେ ସେ ପାଞ୍ଚଟି ବର୍ଷ ମାତ୍ର ଦାମ୍ପତ୍ୟ ଜୀବନ ଅତିବାହିତ କରିଥିଲେ । ଯୌବନରେ ସ୍ତ୍ରୀ (ସୌଦାମିନୀ) ଚାଲିଗଲେ ମଧ୍ୟ ଜୀବନସାରା ସେ ଆଉ ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କରିନାହାନ୍ତି, ପୁଣି ସହାଧ୍ୟାୟୀ ତଥା ଛାତ୍ରାବାସର ଅନ୍ତେବାସୀର (ଅମ୍ବିକା ଚରଣ ହାଜରା) କନ୍ୟାକୁ ପୋଷ୍ୟକନ୍ୟା କରିନେଇଛନ୍ତି, ସହାଧ୍ୟାୟୀର ଅନ୍ୟ ସନ୍ତାନ–ସନ୍ତତିଙ୍କୁ ଦୁନିଆରେ ମଣିଷ କରି ଠିଆ କରିଛନ୍ତି । ପାଳିତା କନ୍ୟାକୁ (ଶୈଳବାଳା) ଲଣ୍ଡନ ପଠାଇ ଉଚ୍ଚଶିକ୍ଷିତା କରିଛନ୍ତି ସ୍ତ୍ରୀ ଶିକ୍ଷାର ଅଗ୍ରଦୂତୀ ଭାବରେ ତିଆରି କରିବାକୁ । ସୀମିତ ଅର୍ଥରେ ନିଜର ପରିବାର କହିଲେ ଏଇ କେତେଜଣଙ୍କୁ ନେଇ, କିନ୍ତୁ ବ୍ୟାପକ ଅର୍ଥରେ ସମସ୍ତ ଉତ୍କଳ ହେଉଛି– ତାଙ୍କର ବିରାଟ ପରିବାର । ମଧୁସୂଦନ କହିଲେ ଓଡ଼ିଆ ଜାତି, ଓଡ଼ିଶା ଦେଶ ।

ମଧୁସୂଦନ ଥିଲେ କେବଳ ଓଡ଼ିଆ ଜାତି କାହିଁକି, ସମଗ୍ର ମାନବ ଜାତିର ଗର୍ବ ଓ ଗୌରବ । ସେ ଥିଲେ ବିଚକ୍ଷଣ ବ୍ୟକ୍ତିତ୍ୱର ଅଧିକାରୀ । ଓଡ଼ିଆ ଜାତିର ଜୀବନରେ ନବଜାଗରଣ ଆଣିଦେବାରେ ସେ ଥିଲେ ଅଗ୍ରଦୂତ । ଓଡ଼ିଆ ଜାତିର ବ୍ୟକ୍ତିତ୍ୱ ଓ ମହତ୍ତ୍ୱ ପ୍ରତିଷ୍ଠା ପାଇଁ ତାଙ୍କର ସେବା ଓ ତ୍ୟାଗ ଇତିହାସରେ

ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଓଡ଼ିଆ ଜାତିର ଘଡିସନ୍ଧି ମୁହୂର୍ତ୍ତରେ ତାଙ୍କର ଆବିର୍ଭାବ, ଜାତିପାଇଁ ତାଙ୍କର ସ୍ୱାଧୀନ, ନିର୍ଭୀକ ସଂକଳ୍ପବଦ୍ଧ କାର୍ଯ୍ୟସୂଚୀ ଓ ଗଭୀର ନିଷ୍ଠା ଏ ଜାତିକୁ ପ୍ରେରଣା ଦେଉଥିବ ।

ମଧୁସୂଦନ ଏକାଧାରରେ ଥିଲେ ଜଣେ ସ୍ପଷ୍ଟବାଦୀ, ନିର୍ଭୀକ, ସ୍ୱାଭିମାନୀ ଖାଣ୍ଟି ଓଡ଼ିଆ । ତାଙ୍କର ପ୍ରତି ରକ୍ତ କଣିକାରେ ଜାତୀୟତାର, ଦେଶ ମାତୃକା ଭାବର ସ୍ପନ୍ଦନ ଖେଳି ଚାଲିଥିଲା । ତାଙ୍କର ବାଗ୍ମିତା, ସହିଷ୍ଣୁତା ତଥା ଆତ୍ମନିର୍ଭରଶୀଳତା ଥିଲା ଅସାଧାରଣ । କ୍ଷଣକୋପୀ ହେଲେ ମଧ୍ୟ ଅନ୍ତର ତାଙ୍କର ଥିଲା ସ୍ନେହ ସହାନୁଭୂତିଭରା ଓ ମାନବିକତାପୂର୍ଣ୍ଣ । ବଦାନ୍ୟତା ଓ ତ୍ୟାଗ ଥିଲା ତାଙ୍କ ବ୍ୟକ୍ତିତ୍ୱର ଭୂଷଣ । ଓଡ଼ିଆ ଜାତିର କଲ୍ୟାଣ ପାଇଁ ନିଜକୁ ଉତ୍ସର୍ଗ କରି, ଜୀବନରେ ସବୁକିଛି ତ୍ୟାଗ କରି ଦେବାଳିଆ ହୋଇ ଦାରିଦ୍ର୍ୟ ବରଣ କରିଥିଲେ ।

ମଧୁସୂଦନ ଯେଉଁ ସମୟରେ ଆବିର୍ଭୂତ ହୋଇଥିଲେ, ସେତେବେଳେ ଓଡ଼ିଶା ବୋଲି ସ୍ୱତନ୍ତ୍ର ପ୍ରଦେଶ କିଛି ନଥିଲା । ଛବିଶ ଗଡଜାତକୁ ଛାଡିଦେଲେ ଓଡ଼ିଶା ଡିଭିଜନ କହିଲେ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାକୁ ବୁଝାଉଥିଲା । ତାହା ପୁଣି ଲାଞ୍ଜ ହୋଇଥିଲା ବଙ୍ଗପ୍ରଦେଶର, ଯେଉଁ ବଙ୍ଗ ପ୍ରଦେଶ ଆସାମ, ବିହାର ଓ ଓଡ଼ିଶା ଡିଭିଜନକୁ ନେଇ ବିପୁଳ କାୟା ବିସ୍ତାର କରିଥିଲା । ବ୍ରିଟିଶମାନେ ନିଜର ସାମରିକ ସୁବିଧା ଦୃଷ୍ଟିରୁ ରାଜନୈତିକ ୟୁନିଟ୍‌ଗୁଡିକ ଗଠନ କରିଥିଲେ । ଫଳରେ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଦକ୍ଷିଣରେ ମାନ୍ଦ୍ରାଜ, ପଶ୍ଚିମରେ ମଧ୍ୟପ୍ରଦେଶ, ଉତ୍ତରରେ ବିହାର (ସିଂହଭୂମି, ଧଳଭୂମ) ଓ ବଙ୍ଗପ୍ରଦେଶରେ (ବାଙ୍କୁଡା, ପୁରୁଲିଆ, ମେଦିନୀପୁର) ରହିଯାଇଥିଲା । ଇଂରେଜମାନଙ୍କର ଉତ୍କଳାଧିକାର ସମୟରୁ (୧୮୦୩) ଉତ୍କଳ ପ୍ରତି ଏଇ ଅବିଚାର ଓ ବିଚ୍ଛିନ୍ନତାବୋଧ ଦୃଷ୍ଟିଭଙ୍ଗୀ ଲାଗି ରହିଥିଲା । ବଙ୍ଗବାସୀମାନଙ୍କର ଏକ ହୀନ ପ୍ରଚାରଭିତ୍ତିକ ରଚନା ଥିଲା– 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୟ ।' ଏ ସମସ୍ତ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ମଧ୍ୟ ଯୋଗଜନ୍ମା ମଧୁସୂଦନ ବିଚଳିତ ହୋଇ ନଥିଲେ ।

ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବିହାର ଓ ବଙ୍ଗରେ ରହିଯାଇଥିବା ଓଡ଼ିଆମାନଙ୍କର ଭାଷା ଓ ସଂସ୍କୃତି ଅତି ନିର୍ମମ ଭାବେ ଉପେକ୍ଷିତ ହୋଇଥିଲା । ମାନ୍ଦ୍ରାଜ ପ୍ରଦେଶରେ ଓଡ଼ିଆମାନେ ତେଲୁଗୁ ପଢିବାକୁ ବାଧ୍ୟ ହେଉଥିଲେ । ଏପରିକି ଖାଣ୍ଟି ଓଡ଼ିଆ ଅଞ୍ଚଳ ସମ୍ବଲପୁର ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହୋଇଥିବାରୁ କଚେରିରେ ହିନ୍ଦୀ ଭାଷା ବାଧ୍ୟତାମୂଳକ ଭାବରେ ପ୍ରବର୍ତ୍ତନ କରାଯାଇଥିଲା । ଅବଶ୍ୟ ୧୯୦୫ ବେଳକୁ କଚେରିର ଓଡ଼ିଆ ଭାଷା ହୋଇଥିଲା । ବଂଗପ୍ରଦେଶ ଅନ୍ତର୍ଗତ ମେଦିନୀପୁର, ବାଙ୍କୁଡା ଓ ପୁରୁଲିଆରେ ଓଡ଼ିଆଭାଷା ଓ ସଂସ୍କୃତି ଉପେକ୍ଷିତ ହୋଇଥିଲା । ତିନୋଟି ଜିଲ୍ଲାରେ ଅଣ ଓଡ଼ିଆ ବିଶେଷତଃ ଓଡ଼ିଶା ଡିଭିଜନରେ ବଂଗୀୟ କର୍ମଚାରୀଙ୍କ ଓଡ଼ିଆ ବିଦ୍ୱେଷ ହେତୁ ବିଭିନ୍ନ ସମୟରେ ଓଡ଼ିଆ ଭାଷା ଓ ସଂସ୍କୃତି ଉପରେ ନିର୍ମମ ଆକ୍ରମଣ ଚାଲିଥିଲା । ବାଲେଶ୍ୱର ଜିଲ୍ଲା ସ୍କୁଲର ତତ୍କାଳୀନ ଜଣେ ବଙ୍ଗୀୟ ଶିକ୍ଷକ (କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ) ଓଡ଼ିଆ ଠିକ୍ ଭାବରେ ଉଚ୍ଚାରଣ କରି ଶ୍ରେଣୀରେ ପଢାଇ ନପାରି ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଖଣ୍ଡିଏ ପୁସ୍ତିକା ଲେଖି ଓଡ଼ିଆ ବିଦ୍ୟାଳୟମାନଙ୍କରୁ ଓଡ଼ିଆ ଉଠାଇ ଦେବାକୁ ଅନ୍ୟମାନଙ୍କ ସହ ହୀନ ଚକ୍ରାନ୍ତ କରିଥିଲେ । ଅବଶ୍ୟ ସେତେବେଳେ ବାଲେଶ୍ୱରର କଲେକ୍ଟର ବହୁଭାଷାବିତ୍ ଜନ୍ ବୀମ୍‌ସଙ୍କ ବହୁ ପ୍ରାମାଣିକ ତଥ୍ୟପୂର୍ଣ୍ଣ ଗବେଷଣାତ୍ମକ ଲେଖା (ଓଡ଼ିଆ ଭାଷାର ପ୍ରାଚୀନତା ଓ ସ୍ୱତନ୍ତ୍ର ସମ୍ପର୍କରେ) ଏବଂ Linguishic Survey of Indiaରଲେଖକ ଗ୍ରିୟରସନ୍‌ଙ୍କର ଓଡ଼ିଆ ଭାଷାର ପ୍ରାଚୀନତା ଓ ମୌଳିକତା ସମ୍ପର୍କରେ ବଳିଷ୍ଠ ଯୁକ୍ତି ଏବଂ ଓଡ଼ିଆ ଡିଭିଜନ୍‌ର କମିଶନର ଟି.ଇ. ରେଭେନ୍ସାଙ୍କ ବଳିଷ୍ଠ ମତ ଓ ଅନୁମୋଦନ ହେତୁ ଅଧିକ ସଂଖ୍ୟାରେ ଓଡ଼ିଆ ବିଦ୍ୟାଳୟମାନ ପ୍ରତିଷ୍ଠିତ ହେବା ଓ ଓଡ଼ିଶାର ବିଶ୍ୱବିଦ୍ୟାଳୟ ମାନଙ୍କରେ ମାତୃଭାଷା ଓଡ଼ିଆ ମାଧ୍ୟମରେ ଶିକ୍ଷା ଦେବାର ଏବଂ ଓଡ଼ିଆରେ ପାଠ୍ୟପୁସ୍ତକମାନ ପ୍ରଣୟନ ଓ ଅନୁବାଦର ଆଦେଶ ହେବାରୁ ବଙ୍ଗୀୟମାନଙ୍କର ହୀନ ଚକ୍ରାନ୍ତ ବ୍ୟର୍ଥ ହୋଇଯାଇଥିଲା ।

ସେତେବେଳକୁ ଭାରତୀୟ ଜାତୀୟ କଂଗ୍ରେସ ଜନଗଣର ସମର୍ଥନ ଲାଭକରି ଧୀରେ ଧୀରେ ପ୍ରଭାବଶାଳୀ ହୋଇ ଉଠୁଥିଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଇତ୍ୟାଦି ବନ୍ଧୁମାନେ ସମର୍ଥନ କରୁନଥିଲେ ହେଁ ମହାଭାରତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ମଧୁସୂଦନ କଂଗ୍ରେସରେ ଯୋଗଦେଇଥିଲେ । ଉଦ୍ଦେଶ୍ୟ ଥିଲା, ଭାରତର ସ୍ୱାଧୀନତା ପାଇଁ ଏକ ପ୍ରବଳ ପରାକ୍ରାନ୍ତ ସାମ୍ରାଜ୍ୟବାଦୀ ବିଦେଶୀ ଶାସନ ସହିତ ସମ୍ମିଳିତ ସଂଗ୍ରାମ କରିବା ସହିତ କଂଗ୍ରେସ ଅନୁଷ୍ଠାନର ସାହଚର୍ଯ୍ୟରେ ଉତ୍କଳ ରାଜ୍ୟ ଗଠନ ପାଇଁ ଉଦ୍ୟମ କରିବା । ୧୯୦୩ ମସିହାରେ ମାନ୍ଦ୍ରାଜଠାରେ ଅନୁଷ୍ଠିତ ହୋଇଥିବା କଂଗ୍ରେସ ଅଧିବେଶନରେ ସେ ଯୋଗଦେଇଥିଲେ । ଉତ୍କୃଷ୍ଟ କଳା ଓ ସଂସ୍କୃତିରେ ସମୃଦ୍ଧ, ଏକ ଉଜ୍ଜ୍ୱଳ ଐତିହ୍ୟର ଅଧିକାରୀ ଏବଂ ନୌ–ବାଣିଜ୍ୟରେ ଚରମ ପରାକାଷ୍ଠା ଲାଭ କରିଥିବା ଉତ୍କଳ ଖଣ୍ଡ ବିଖଣ୍ଡିତ ହୋଇ ଯେତେଦିନ ଯାଏଁ ବିଭିନ୍ନ ରାଜ୍ୟ ସହିତ ମିଶି ରହିଥିବ ସେତେଦିନ ଯାଏଁ ଓଡ଼ିଆ ଜାତିର ଉନ୍ନତି ହେବନାହିଁ ।

ଅପରନ୍ତୁ ହୀନମନ୍ୟତାର ଶିକାର ହୋଇ ସେ ଜାତି ନିଜର ସତ୍ତା ବିସ୍ମୃତ ହୋଇଯିବ । ଅତ୍ୟନ୍ତ ବ୍ୟାକୁଳତାର ସହିତ ଏସବୁ କଥା କହି ସେହି ଅଧିବେଶନ ମଞ୍ଚରେ ଏକ ସ୍ୱତନ୍ତ୍ର ଉତ୍କଳ ରାଜ୍ୟ ଗଠନ ହେବା ଜରୁରୀ ବୋଲି ଏକ ପ୍ରସ୍ତାବ ଆଗତ କରିଥିଲେ ।

ଓଡ଼ିଶାର ସର୍ବବିଧ କଲ୍ୟାଣ ପାଇଁ ଓଡ଼ିଶା ଯୁବ ସଂଘ ସ୍ଥାପନ ସହ ନିଜର ଗୁରୁ ଗୌରୀଶଙ୍କର ରାୟ, ଚୌଧୁରୀ କାଶୀନାଥ ଦାସ ପ୍ରଭୃତିଙ୍କ ସହଯୋଗରେ ଓଡ଼ିଶାରେ ଏକ ଜାତୀୟ ଅନୁଷ୍ଠାନ ଗଠନର ଆବଶ୍ୟକତା ଉପଲବ୍ଧି କରି ନିରବଚ୍ଛିନ୍ନ ଭାବରେ ଆନ୍ଦୋଳନ ଚଳାଇବା ପାଇଁ ମଧୁସୂଦନ ୧୮୮୨ରେ ଉତ୍କଳ ସଭା ସ୍ଥାପନ କରିଥିଲେ । ଏହାର ଉପ-ସଭାପତି ଥିଲେ ମଧୁସୂଦନ ଓ ସମ୍ପାଦକ ଥିଲେ ଗୌରୀଶଙ୍କର ରାୟ । ଉତ୍କଳ ସଭା ଆନୁକୂଲ୍ୟରେ ଦେଶର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ସଭାସମିତି ଅନୁଷ୍ଠିତ ହୋଇ ପ୍ରସ୍ତାବମାନ ଗୃହୀତ ହେଉଥିଲା ଏବଂ ବହୁ ସ୍ମାରକପତ୍ର ସରକାରଙ୍କୁ ପଠାଯାଉଥିଲା । ୧୮୮୮ରେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କୁ ଉତ୍କଳ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଆବେଦନ କରାଯାଏ । ସେହି ଲକ୍ଷ୍ୟରେ ବାଲେଶ୍ୱରର ରାଜା ବୈକୁଣ୍ଠ ନାଥ ଦେ ୧୯୦୨ରେ ଭାଇସରାୟ ଲର୍ଡ କର୍ଜନ୍‌ଙ୍କୁ ସ୍ମାରକପତ୍ର ପ୍ରଦାନ କରନ୍ତି । ଓଡ଼ିଶା ସହ ଗଞ୍ଜାମର ମିଶ୍ରଣ ପାଇଁ ପ୍ରବଳ ଆଗ୍ରହ ଦେଖାଯାଏ । ୧୯୦୧ରେ ମଧୁବାବୁଙ୍କ ସଭାପତିତ୍ୱରେ ଖଲିକୋଟ୍‌ର ରମ୍ଭାଠାରେ ଦେଶମିଶ୍ରଣ ସଭା ରାଜା ହରିହର ମର୍ଦ୍ଦରାଜଙ୍କ ଆଗ୍ରହରେ ଆୟୋଜିତ ହୋଇ ଗଞ୍ଜାମ ଜାତୀୟ ସମ୍ମିଳନୀର କଳ୍ପନା କରାଯାଏ । ୧୯୦୧ ମାର୍ଚ୍ଚରେ ମଧୁବାବୁ ବଙ୍ଗ ବ୍ୟବସ୍ଥା ସଭାକୁ ଜଣେ ସଭ୍ୟ ଭାବରେ ନିର୍ବାଚିତ ହୁଅନ୍ତି ।

୧୮୮୬ ମସିହାରେ ଯେଉଁ ମହାନ ଉଦ୍ଦେଶ୍ୟ ସାଧନ ପାଇଁ ଉତ୍କଳ ସଭାକୁ ସେ ଭାରତୀୟ ଜାତୀୟ କଂଗ୍ରେସରେ ମିଶାଇ ଦେଇଥିଲେ ତାଙ୍କର ସେ ଉଦ୍ଦେଶ୍ୟ କଂଗ୍ରେସ ସହାୟତାରେ ଚରିତାର୍ଥ ହେବନାହିଁ, ଏକଥା ଯେତେବେଳେ ସ୍ପଷ୍ଟ ହୋଇଗଲା ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ଅନ୍ୟପନ୍ଥା ଅବଲମ୍ବନ କରିବାକୁ ସେ ବାଧ୍ୟ ହେଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ବ୍ୟାସକବି ଫକୀରମୋହନ ସେନାପତି, କର୍ମବୀର ଗୌରୀଶଙ୍କର ରାୟ, ପଲ୍ଲୀକବି ନନ୍ଦକିଶୋର ବଳ, ଓଡ଼ିଆ ପ୍ରାଣ ବ୍ରଜ ସୁନ୍ଦର ଦାସ, କବିବର ରାଧାନାଥ ରାୟ, ସ୍ୱଭାବ କବି ଗଙ୍ଗାଧର ମେହେର, ରାଜର୍ଷି ବିକ୍ରମ ଦେବ, ରାମଚନ୍ଦ୍ର ଦେବ ଏବଂ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସହିତ ବର୍ତ୍ତମାନ ଓଡ଼ିଶା ବାହାରେ ରହିଯାଇଥିବା ଓଡ଼ିଆ ଭାଷୀ ଅଞ୍ଚଳର ବହୁ ବୁଦ୍ଧିଜୀବୀ ଏବଂ ନେତୃମଣ୍ଡଳୀକୁ ନେଇ ସମ୍ପୂର୍ଣ୍ଣ ଏକ ଓଡ଼ିଆ ଅନୁଷ୍ଠାନ ଉତ୍କଳ ସମ୍ମିଳନୀ ଗଠନ କରିଥିଲେ । ପ୍ରଥମେ ୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ କଟକଠାରେ ମଧୁବାବୁଙ୍କ ଉଦ୍ୟମରେ ପ୍ରଥମ ଉତ୍କଳ ଜାତୀୟ ସମ୍ମିଳନୀ ବା 'ଉତ୍କଳ ସମ୍ମିଳନୀ'ର ବୈଠକ ବସିଥିଲା । ଅନ୍ୟାନ୍ୟ ଉଦ୍ୟୋକ୍ତାମାନଙ୍କ ମଧ୍ୟରେ କନିକା ଜମିଦାର ଓ ମୟୂରଭଞ୍ଜର ମହାରାଜା ଥିଲେ ଅନ୍ୟତମ । ମୟୂରଭଞ୍ଜ ମହାରାଜା ଏଥିରେ ସଭାପତିତ୍ୱ କରିଥିଲେ । ଏହି ସମ୍ମିଳନୀକୁ ଜାତିର ପ୍ରାଣସିନ୍ଧୁ ବୋଲି ବର୍ଣ୍ଣନା କରି ମଧୁବାବୁ ଗାଇଥିଲେ–

ଏହି ସମ୍ମିଳନୀ ଜାତିପ୍ରାଣସିନ୍ଧୁ କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ ଡେଇଁ ପଡି ସିନ୍ଧୁନୀରେ ।

ଏହି ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତୀୟତାର ଏକମାତ୍ର ଅନୁଷ୍ଠାନ ଥିଲା । ଏହାପରେ 'ଉତ୍କଳ ସମ୍ମିଳନୀ' ବର୍ଷକୁ ବର୍ଷ ଓଡ଼ିଶାର ବିଭିନ୍ନ ସ୍ଥାନରେ ବସୁଥିଲା । ଏହାର ମୁଖ୍ୟ ଦାବି ଥିଲା, ସମସ୍ତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ । ଏହାର ଅବିସମ୍ବାଦୀ ନେତାଥିଲେ ମଧୁସୂଦନ ଦାସ । ମଧୁବାବୁ ସେତେବେଳକୁ କଟକରେ ଓକିଲାତି ଆରମ୍ଭ କରିଦେଇଥିଲେ । ସେ ଓଡ଼ିଶାର ଏକ ପ୍ରବାଦପୁରୁଷ ରୂପେ ପରିଗଣିତ ହୋଇଥିଲେ । ତାଙ୍କୁ ଲୋକେ ଓଡ଼ିଶାର ଆଶାଆକାଂକ୍ଷା ତଥା ଅଭାବ ଅସୁବିଧାର ପ୍ରବକ୍ତା ରୂପେ ଗ୍ରହଣ କରିଥିଲେ । ୧୯୧୨ ମସିହା ଏପ୍ରିଲ ମାସ ୬-୭ ତାରିଖରେ ବ୍ରହ୍ମପୁରଠାରେ 'ଉତ୍କଳ ସମ୍ମିଳନୀ'ର ୮ମ ବାର୍ଷିକ ଅଧିବେଶନରେ ମଧୁବାବୁ କହିଥିଲେ ଯେ– ! ବ୍ରିଟିଶ– ଶାସନରେ କୌଣସି ଜାତି ଓଡ଼ିଆଙ୍କ ପରି ଅନ୍ୟାୟୋଚିତ ଏବଂ ନିର୍ଦ୍ଦୟ ବ୍ୟବହାର ପାଇନାହାନ୍ତି । ଅଥଚ ଏଥିପାଇଁ ଓଡ଼ିଆ ଜାତି କୌଣସି ଭୁଲ୍ ତ୍ରୁଟି କରିନାହାନ୍ତି ।'

ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ମି. ଦାସ କେତେ ଆନ୍ତରିକ ଭାବରେ ଚିନ୍ତା କରୁଥିଲେ, ତାହା ତାଙ୍କର ଏକ ବକ୍ତବ୍ୟରୁ ପ୍ରମାଣିତ ହୋଇପାରିବ । ୧୯୧୨ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ରେଭେନ୍ସା କଲିଜିଏଟ୍ ସ୍କୁଲର ସାହିତ୍ୟ ଆଲୋଚନା ସଭାରେ ମଧୁବାବୁ ପ୍ରଧାନ ଅତିଥି ଭାବେ ନିମନ୍ତ୍ରିତ ହୋଇ ଯେଉଁ ଭାଷଣ ପ୍ରଦାନ କରିଥିଲେ, ତାହାର କିୟଦଂଶ ଏହିପରି–

'ଆମ ଉତ୍କଳ ସମ୍ମିଳନୀର ଗୋଟିଏ ସୂକ୍ତି ଥିଲା–

ମାତୃଭାଷା ମାତୃଭୂମି ଉଭୟେ ଜନନୀ
କର ତାଙ୍କ ପାଦପୂଜା ଦିବସ ରଜନୀ ।'

ପ୍ରାଣରେ, ଚିନ୍ତାରେ, ଚେତନାରେ ସେ ଥିଲେ ସର୍ବୋତ ଭାବରେ ଓଡ଼ିଆ । ସେ ବାରମ୍ବାର ଆହ୍ୱାନ ଜଣାଇଥିଲେ– 'ନିଜର ଜୀବନ ଜାତିକୁ ଅର୍ପଣ କଲେ ମିଳେ ଜାତିପ୍ରାଣ । ଜାତୀୟ ଜୀବନ ନମିଳିବ କଲେ ହାଟେ ବାଟେ ଅନ୍ୱେଷଣ ।' ଓଡ଼ିଆ ଜାତୀୟ ଜୀବନର ମହାନ ପ୍ରବକ୍ତା, ଓଡ଼ିଶାରେ ନବ ଜାଗରଣର ପ୍ରମୁଖ ନେତା, ଓଡ଼ିଆ ଜାତିର ଚିରସ୍ମରଣୀୟ ବ୍ୟକ୍ତିତ୍ୱ ଉତ୍କଳଗୌରବ ମଧୁସୂଦନଙ୍କୁ ଯେକୌଣସି ପରିସ୍ଥିତିରେ ସ୍ମରଣ କଲେ ଓଡ଼ିଆର ପ୍ରାଣରେ ପୁଲକ ଓ ସ୍ପନ୍ଦନ ସୃଷ୍ଟି ହୁଏ । ଉତ୍କଳବାସୀଙ୍କୁ ଚେତାବନୀ ଶୁଣାଇ କବି ଗାଇଛନ୍ତି–

'ଜାତି ନନ୍ଦିଘୋଷ ଚଳିବକି ଭାଇ
ସ୍ୱାର୍ଥକୁ ସାରଥି କଲେ
ଟାଣେକିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ?'

ମଧୁସୂଦନ ନିଜେ ଜଣେ ବିଚକ୍ଷଣ ବୁଦ୍ଧିଜୀବୀ (ଆଇନଜ୍ଞ) ଦେଶପ୍ରେମୀ, ନିଃସ୍ୱାର୍ଥପର ଦେଶସେବକ ଓ ରାଷ୍ଟ୍ରନୀତିଜ୍ଞ ଭାବରେ ଭାରତର ବଡ଼ଲାଟଠାରୁ ଆରମ୍ଭ କରି ଶିକ୍ଷକ, ଅଧ୍ୟାପକ, କୁଳପତି, ବିଚାରପତି ତ୍ୟାଗୀ ନେତାଙ୍କର ଶ୍ରଦ୍ଧା ଓ ସମ୍ମାନ ଆକର୍ଷଣ କରିଥିଲେ । ମଧୁବାବୁ ଯେଉଁ ଦେଶ ମିଶ୍ରଣ ପାଇଁ ସଂଗ୍ରାମ କରୁଥିଲେ, ତା'ର ଫଳସ୍ୱରୂପ ୧୯୩୧ ମସିହାରେ ତାଙ୍କ ଜୀବନ ଦଶାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ବ୍ରିଟିଶ ସରକାର ଘୋଷଣା କରିଥିଲେ । ଜାତିପାଇଁ ଓଡ଼ିଆମାନଙ୍କ ପାଇଁ ସେ ନିଃସ୍ୱ ହୋଇଯାଇଥିଲେ ସତ, କିନ୍ତୁ ଏକ ସମ୍ପୂର୍ଣ୍ଣ ଜୀବନଯାପନ କରି ନିଜ ଜୀବନର କର୍ମଫଳ ଲାଭକରି ସେ ୧୯୩୪ ମସିହାରେ ଇହଧାମ ତ୍ୟାଗ କରିଥିଲେ । ୧୯୩୬ ମସିହା ଏପ୍ରିଲ ପହିଲା ତାରିଖ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କରିବା ତାଙ୍କ ପ୍ରଚେଷ୍ଟାର ଫଳ ।

ମଧୁବାବୁ ରାଜନୀତି, ଅର୍ଥନୀତି, ଶିଳ୍ପ, ସାହିତ୍ୟ ଇତ୍ୟାଦି ପ୍ରତ୍ୟେକ କ୍ଷେତ୍ରରେ ଦ୍ରୁତ ପରିବର୍ତ୍ତନ ଆଣି ଓଡ଼ିଆ ଜାତିକୁ ଅଚିରେ ସମଗ୍ର ବିଶ୍ୱରେ କେବଳ ପରିଚିତ ନୁହେଁ, ପ୍ରତିଷ୍ଠିତ କରିବା ପାଇଁ ଦୀର୍ଘ ପଚାଶ ବର୍ଷ କାଳ ନିରବଚ୍ଛିନ୍ନ ଭାବରେ ସେ ସଂଗ୍ରାମ କରି ଚାଲିଥିଲେ । ଓଡ଼ିଆ ଜାତିର ସେ ଥିଲେ ତତ୍କାଳୀନ ଦିଗ୍‌ଦର୍ଶକ ଓ ନିୟନ୍ତ୍ରକ । ତେଣୁ ଯଥାର୍ଥରେ ମଧୁବାବୁଙ୍କ ଜୀବନ କାହାଣୀ ଉତ୍କଳର ଅର୍ଦ୍ଧ ଶତାବ୍ଦୀର ଇତିହାସ ।

ବିଧାନ ପରିଷଦ ସଭ୍ୟ ଓ ମନ୍ତ୍ରୀ ହେବାରେ ମଧୁବାବୁ ଥିଲେ ପ୍ରଥମ ଓଡ଼ିଆ, ମନ୍ତ୍ରିତ୍ୱ ପରିତ୍ୟାଗ କରିବାରେ ମଧ୍ୟ ସେ ଥିଲେ ପ୍ରଥମ ଭାରତୀୟ । ମଧୁବାବୁଙ୍କ ପରି ଦେଶପ୍ରେମୀ, ସର୍ବତ୍ୟାଗୀ ଦିଗ୍‌ଦର୍ଶକ, ନିର୍ଭୀକ ଜନନାୟକଙ୍କ ଅନୁପସ୍ଥିତି ଆମେ ଆଜି ପ୍ରାଣେ ପ୍ରାଣେ ଅନୁଭବ କରୁଛୁ ଏବଂ ସେହି ନବ ଉତ୍କଳର ନିର୍ମାତା, ଯୋଗଜନ୍ମା ଯୁଗପୁରୁଷଙ୍କର ଆଦର୍ଶ ଓ କର୍ମରେ ଉଦ୍‌ବୁଦ୍ଧ ହୋଇ ବ୍ୟକ୍ତିଗତ ଓ ସମ୍ମିଳିତ ଭାବରେ କାର୍ଯ୍ୟକରିବା ପାଇଁ ଦୃଢ଼ ସଂକଳ୍ପବଦ୍ଧ ହେଲେ, ଆମେ ତାଙ୍କର ଯୋଗ୍ୟ ଦାୟାଦ ବୋଲି ନିଜକୁ ପରିଚିତ କରାଇ ପାରିବା । ପ୍ରତ୍ୟେକଙ୍କ ଜୀବନରେ ମଧୁସୂଦନଙ୍କର ଜୀବନାଦର୍ଶର ସାମାନ୍ୟ ପ୍ରତିଫଳନ ଘଟିଲେ ଜୀବନ ହେବ ସାର୍ଥକ ଓ ଶ୍ରେୟସ୍କର । ବ୍ୟାସକବି ଫକୀର ମୋହନଙ୍କ ଭାଷାରେ–

'ତୁମେତ ଆଲୋକପ୍ରାପ୍ତ ମୁହିଁ ଅନ୍ଧାରିଆ
କିନ୍ତୁ ଭାଇ ଦୁଇଜଣ ଜାତିରେ ଓଡ଼ିଆ ।'

ସଂଗଠନ ସମ୍ପାଦକ
'ଉତ୍କଳ ସମ୍ମିଳନୀ', ଚାନ୍ଦବାଲି,
ଭଦ୍ରକ, ପିନ୍–୭୫୬୧୩୩

❖ ❖ ❖

# ଉତ୍କଳ ପ୍ରଦେଶ ଗଠନରେ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଭୂମିକା

**ଅଧ୍ୟାପିକା ସୌଦାମିନୀ ବେହେରା**

ଆମ ରାଜ୍ୟ ନାମ ଓଡ଼ିଶା । ଏହାର ପୁରାତନ ନାମ ଉତ୍କଳ । ଉତ୍କୃଷ୍ଟ କଳାର ଦେଶକୁ ଉତ୍କଳ କୁହାଯାଏ । ଏହାର ଭାଷା, ଐତିହ୍ୟ, ପରମ୍ପରା, ଚଳଣିକୁ ପରଖିଲେ କିଛି ସ୍ୱତନ୍ତ୍ରତା ପରିଲକ୍ଷିତ ହୋଇଥାଏ । ପ୍ରକୃତରେ ଆମେ ଓଡ଼ିଆ ବୋଲି ଆଜି ବିଶ୍ୱ ଦରବାରରେ ଗର୍ବିତ କିନ୍ତୁ ଦିନଥିଲା ଏହି ଉତ୍କଳ ମାଟିର ସ୍ୱାଧୀନତା, ସ୍ୱତନ୍ତ୍ରତାର ଚିହ୍ନବର୍ଣ୍ଣ ନଥିଲା । ଏହା ହଜି ଯାଇଥିଲା କାଳର କେଉଁ କରାଳ ଗର୍ଭରେ । ଯେଉଁ କେତେଜଣ ମହାପୁରୁଷଙ୍କ ଅସୀମ ତ୍ୟାଗ, ଧୈର୍ଯ୍ୟ, କଷ୍ଟ ଓ ତ୍ୟାଗ ଯୋଗୁଁ ଆଜି ଏ ଓଡ଼ିଶା ମାଟିରେ ସବୁଜିମା ସୃଷ୍ଟି ହୋଇପାରିଛି ଓ ସମସ୍ତ ଓଡ଼ିଆମାନଙ୍କ ଓଠରେ ହସ ଫୁଟିଛି, ସେମାନଙ୍କ ମଧ୍ୟରୁ ମହାରାଜା କଷ୍ଣଚନ୍ଦ୍ର ଗଜପତିଙ୍କ ଭୂମିକା ଅତୁଳନୀୟ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କ ଅବଦାନକୁ ସମଗ୍ର ଓଡ଼ିଶାବାସୀଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷିତ ହୋଇ ରହିଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଇତିହାସର ପୃଷ୍ଠାକୁ ଅବଲୋକନ କଲେ ଜଣାପଡେ ଯେ, ପଞ୍ଚମ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ଦକ୍ଷିଣାଂଶରେ ଗଙ୍ଗରାଜବଂଶ ଶାସନ କରୁଥିଲେ । ଗଙ୍ଗବଂଶୀ ରାଜାମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇଛି ଯଥା– ମହୀଶୂର ଗଙ୍ଗବଂଶ ଏବଂ ଓଡ଼ିଶାର ତ୍ରିକଳିଙ୍ଗରେ ରାଜତ୍ୱ କରୁଥିବା ଗଙ୍ଗବଂଶ । ଏମାନେ ମୂଳତଃ ଚନ୍ଦ୍ରବଂଶୀ ହୋଇଥିଲେ ମଧ୍ୟ ଗଙ୍ଗା କୂଳରେ ବାସ କରୁଥିବା ବ୍ରାହ୍ମଣ କନ୍ୟା ଗଙ୍ଗଦେବୀଙ୍କ ଗର୍ଭରୁ ଏ ବଂଶର ଆଦି ପୁରୁଷ ଜନ୍ମ ହୋଇଥିବା ଯୋଗୁଁ ମାତୃ ନାମାନୁସାରେ ଏମାନେ ଗଙ୍ଗାବଂଶୀ ବା କାଳକ୍ରମେ ଗଙ୍ଗବଂଶୀ ଭାବେ ପରିଚିତ ହେଲେ ।

ପାରଳାଖେମୁଣ୍ଡିର ସୁଯୋଗ୍ୟ ରାଜା ଗୌରଚନ୍ଦ୍ର ଗଜପତିଙ୍କ ଔରସରୁ ଓ ରାଣୀ ରାଧାମଣି ଦେବୀଙ୍କ ଗର୍ଭରୁ ୧୮୯୨ ମସିହା ଏପ୍ରିଲ ୨୬ ତାରିଖରେ ଓଡ଼ିଆ ଜାତିର ପ୍ରାଣକର୍ତ୍ତା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଜନ୍ମ ହୋଇଥିଲେ । ସେଦିନ ସମଗ୍ର ପାରଳାଖେମୁଣ୍ଡି ସହର ଉତ୍ସବ ମୁଖରିତ ହୋଇଉଠିଲା ଆନନ୍ଦ ଉଲ୍ଲାସ ମଧ୍ୟରେ ।

ପିତାଙ୍କ ଶୃଙ୍ଖଳା, ପିତୃବ୍ୟ ପଦ୍ମନାଭ ଦେବଙ୍କ ସଂସ୍କୃତି ପ୍ରୀତି ଓ ଗଜପତି ରାଜବଂଶର ପୂର୍ବଜପୁରୁଷମାନଙ୍କ କାର୍ଯ୍ୟାବଳୀର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ବାଳକ କୃଷ୍ଣଚନ୍ଦ୍ରଙ୍କ ଉପରେ ପଡିଥିଲା । କାଳକ୍ରମେ ସେ ଦେଶପ୍ରେମୀ ପାଲଟି ଯାଇଥିଲେ । ରାଜା କୃଷ୍ଣଚନ୍ଦ୍ର ଅତ୍ୟନ୍ତ ଅଭିମାନୀ ଓ ସତ୍ୟନିଷ୍ଠ ଥିଲେ । ଏହି ସ୍ୱଭାବ ଯୋଗୁଁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନରେ ସେ ନିଜକୁ ସାମିଲ କରିପାରି ସଫଳତା ପାଇପାରିଥିଲେ ।

ସେ ମାନ୍ଦ୍ରାଜର ଆବାସିକ କଲେଜରୁ ଶିକ୍ଷା ସମାପ୍ତ କରି ୧୯୧୨ ସେପ୍ଟେମ୍ବର ମାସରେ ପାରଳାଖେମୁଣ୍ଡି ପ୍ରତ୍ୟାବର୍ତ୍ତନ କରିଥିଲେ । ତାଙ୍କର ୨୨ତମ ଜନ୍ମ ଦିବସ ୨୬ ଏପ୍ରିଲ ୧୯୧୩ରେ ପାରମ୍ପରିକ ଅଭିଷେକ ଉତ୍ସବ ଖୁବ୍ ଧୁମ୍‌ଧାମରେ ପାଳନ କରାଗଲା ଓ ସେହିଦିନ ସେ ପାରଳାଖେମୁଣ୍ଡି ରାଜବଂଶର ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ' ଭାବେ ପରିଚିତ ହେଲେ । ସେହିଦିନଠାରୁ ସେ ଜନହିତକର ପରିକଳ୍ପନା କାର୍ଯ୍ୟକାରୀ କରିବା ପାଇଁ ଶପଥ ନେଇଥିଲେ ।

ମହାରାଜା ଗଜପତି ଦାୟିତ୍ୱ ଗ୍ରହଣ କରିବା ପରେ ଉତ୍କଳ ସାହିତ୍ୟ ସମାଜକୁ ୫୦୦ଟଙ୍କା ଦାନ ସ୍ୱରୂପ ପଠାଇଲେ । ସେହିଭଳି ସତ୍ୟବାଦୀ ବନବିଦ୍ୟାଳୟକୁ ୫୦୦ଟଙ୍କା ଦାନ ପଠାଇ ଥିଲେ । ଏଥିପାଇଁ ଉତ୍କଳଗୌରବ ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ ଦାସ ରାଜାଙ୍କୁ ଭୂୟସୀ ପ୍ରଶଂସା କରି ସମ୍ବାଦପତ୍ର ଜରିଆରେ ପ୍ରାପ୍ତିସ୍ୱୀକାର କରିଥିଲେ ।

ପାରଳାଖେମୁଣ୍ଡିର ବିଭିନ୍ନ ଅଞ୍ଚଳରେ ଶିକ୍ଷାର ପ୍ରସାର ଘଟାଇ ଅନେକ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ପାରଳାର ଅତୀତ ଗୌରବ ସ୍ମରଣ କରି ଭକ୍ତ କବି ଗୋପାଳକୃଷ୍ଣ ପଟ୍ଟନାୟକ, ଗୌରଚନ୍ଦ୍ର ଗଜପତି, ଗୌରହରି ପରିଚ୍ଛାଚନ୍ଦ୍ର, ମହାରାଜା ପଦ୍ମନାଭ ନାରାୟଣ, ରାଣୀ ପଦ୍ମାବତୀ ପ୍ରଭୃତି ମହାନ୍ ବ୍ୟକ୍ତିତ୍ୱଙ୍କ ନାମରେ ସେହି ବିଦ୍ୟାଳୟଗୁଡ଼ିକୁ ନାମିତ କଲେ । ମାନ୍ଦ୍ରାଜ୍‌ରେ ଥିବା ଉଚ୍ଚ ବିଦ୍ୟାଳୟକୁ ସେ ନିଜ ଗୁରୁଙ୍କ ନାମ ଅନୁସାରେ ବା ମୋରିସନ୍ ସଂପ୍ରସାରଣ ନାମରେ ନାମିତ କରିଥିଲେ । ଶିକ୍ଷା ଓ ସାହିତ୍ୟର ଉନ୍ନତି ଯୋଗୁଁ ସମଗ୍ର ଓଡ଼ିଶା ମାନ୍ଦ୍ରାଜ୍ ଗଭର୍ଣ୍ଣରଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲା । ସିଂହଭୂମି ଜିଲ୍ଲାର ଖରସୁଆଁ ରାଜା ମହେନ୍ଦ୍ର ନାରାୟଣ ସିଂହଦେଓଙ୍କ ଜେମା ନଳିନୀ ଦେବୀଙ୍କ ସହିତ କଷ୍ଣଚନ୍ଦ୍ର ଗଜପତିଙ୍କ ବିବାହ ଅନୁଷ୍ଠିତ ହୋଇଥିଲା ।

ମାନ୍ଦ୍ରାଜ ଗଭର୍ଣ୍ଣର ୧୯୧୪ ଅଗଷ୍ଟ ୩୦ ତାରିଖରେ କୃଷ୍ଣଚନ୍ଦ୍ରଙ୍କ ନିକଟକୁ ଏକ ପତ୍ର ଲେଖି ପାରଳାଖେମୁଣ୍ଡି ଜମିଦାରୀ ସୁପରିଚାଳନାରେ ସନ୍ତୋଷ ପ୍ରକାଶ କରିଥିଲେ । ମହାରାଜା କୃଷ୍ଣଚନ୍ଦ୍ରଙ୍କର ମାତୃଭୂମି ତଥା ଓଡ଼ିଆ ଭାଷା ସାହିତ୍ୟ ପ୍ରତି ପ୍ରଗାଢ ମମତା ଥିଲା । ସେଥିପାଇଁ ଓଡ଼ିଆ ଆନ୍ଦୋଳନର ଅଗ୍ରଭାଗରେ ଥିବା ମଧୁସୂଦନ ଦାସଙ୍କ ସହିତ ତାଙ୍କର ବନ୍ଧୁତା ନିବିଡ ଥିଲା । ଖ୍ରୀ ୧୯୦୧ରେ ଖଲିକୋଟ ରାଜାଙ୍କ ଚିଲିକାକୂଳସ୍ଥ ରମ୍ଭା ବଙ୍ଗଳାରେ ସାହିତ୍ୟ ଆସରର ଏକ ବନ୍ଧୁ ମିଳନ ଆୟୋଜନ କରାଯାଇଥିଲା । ଓଡ଼ିଆ ଭାଷାର ସୁରକ୍ଷା ଓ ଓଡ଼ିଆ ଭାଷାଭାଷୀଙ୍କୁ ଏକ ଶାସନାଧୀନ କରିବା ପାଇଁ ଓ ସଂଘଟିତ ଓଡ଼ିଆଙ୍କ ସମସ୍ୟା ସମାଧାନ ପାଇଁ ଏକ ଜାତୀୟ ଅନୁଷ୍ଠାନର ଆବଶ୍ୟକତା ଥିଲା । ୧୯୦୨ରେ ବ୍ରହ୍ମପୁରଠାରେ ଗଞ୍ଜାମ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଓ ତା ପରବର୍ଷ ୧୯୦୩ରେ କଟକଠାରେ ଉତ୍କଳ ସମ୍ମିଳନୀ ଗଠନ ହୋଇ ସେଠାରେ ପ୍ରଥମ ଅଧିବେଶନ ବସିଲା । ମଧୁସୂଦନ ଦାସ ଓ ରାଜାଙ୍କ ପୌରହିତ୍ୟରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପାରଳାଖେମୁଣ୍ଡିରେ ୧୯୧୪ ଡିସେମ୍ବର ୨୬ ଓ ୨୭ ତାରିଖ ୨ଦିନ ଧରି ଅନୁଷ୍ଠିତ ହେଲା । କୃଷ୍ଣଚନ୍ଦ୍ର ଗଜପତିଙ୍କ ଜାତୀୟବାଦୀ ମନୋଭାବ ସମସ୍ତଙ୍କ ମନରେ ଆନନ୍ଦ ଓ ଉନ୍ମାଦନା ସୃଷ୍ଟି କରିଥିଲା । ସମ୍ମିଳନୀ ପ୍ରାରମ୍ଭରେ ଗଜପତି ପ୍ରସ୍ତାବ ଦେଲେ ଯେ– ଓଡ଼ିଆ ଭାଷାଭାଷୀଙ୍କୁ ଏକ ଶାସନାଧୀନ କରିବା ପାଇଁ କେବଳ ଦାବି ନକରି ବିଚ୍ଛିନ୍ନ ସମସ୍ତ ଓଡ଼ିଆ ଅଞ୍ଚଳକୁ ଏକାଠି କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି କରିବା ଯୁକ୍ତିଯୁକ୍ତ ହେବ । ଏହି ପ୍ରସ୍ତାବକୁ କାର୍ଯ୍ୟକାରୀ ସମିତିର ଉପସ୍ଥିତ ସଭ୍ୟଙ୍କ ମନକୁ ଛୁଇଁଲା । ଗୋପବନ୍ଧୁ ଦାସ, ଶଶିଭୂଷଣ ରଥ, ଫକୀର ମୋହନ ସେନାପତି, ଜଗବନ୍ଧୁ ସିଂହ, ଧରାକୋଟ, ମଧୁପୁର ରାଜା ସମେତ ବହୁ ପ୍ରତିନିଧିଙ୍କ ସମର୍ଥନ ହେତୁ ଓଡ଼ିଶା ପ୍ରଦେଶ ଗଠନ ଦାବି ସରକାରଙ୍କଠାରେ ଉପସ୍ଥାପିତ ପାଇଁ ଗୃହୀତ ହେଲା । ଶେଷରେ ମଧୁବାବୁ ଏ ପ୍ରସ୍ତାବକୁ ସମର୍ଥନ କରିଥିଲେ । ଅନ୍ୟ ପ୍ରସ୍ତାବଗୁଡ଼ିକ ମଧ୍ୟରେ ସିଂହଭୂମି, ଜୟପୁର ଓ ଫୁଲ୍‌ଝର ପ୍ରଭୃତି ସ୍ଥାନର କୋର୍ଟମାନଙ୍କରେ ଓଡ଼ିଆ ଭାଷାର ପ୍ରଚଳନ, ଓଡ଼ିଆ ସ୍କୁଲ୍ ପ୍ରତିଷ୍ଠା କରି ସେଥିରେ ଓଡ଼ିଆ ଶିକ୍ଷକ ନିଯୁକ୍ତି, ଓଡ଼ିଆ ଭାଷାଭାଷୀ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ଗଠନ, ଖୋର୍ଦ୍ଧା–ସମ୍ବଲପୁର ରେଳରାସ୍ତା ନିର୍ମାଣ ବିଶାଖାପାଟଣା ଜୟପୁରକୁ ନେଇ ଏକ ସ୍ୱତନ୍ତ୍ର ଜିଲ୍ଲା ଗଠନ ଦାବି ସର୍ବସମ୍ମତିକ୍ରମେ ନିର୍ଦ୍ଧାରଣ ହୋଇଥିଲା । କୃଷ୍ଣଚନ୍ଦ୍ରଙ୍କ ୨ୟ ପ୍ରସ୍ତାବ ରାଜ୍ୟର ଅଧିକାଂଶ ବୁଦ୍ଧିଜୀବୀଙ୍କୁ ଆକର୍ଷିତ କରିଥିଲା ଓ ଗଞ୍ଜାମ ଜିଲ୍ଲାର ବହୁ ଉଚ୍ଚଶିକ୍ଷିତ ସଂଭ୍ରାନ୍ତ ବ୍ୟକ୍ତି ଓଡିଆ ଆନ୍ଦୋଳନ ସହିତ ସମ୍ପୃକ୍ତ ହୋଇଥିଲେ । ମହାରାଜା ଗଜପତି ସାର ମଣ୍ଟେଗୁ–ଚେମ୍‌ସଫୋର୍ଡଙ୍କ ନିକଟକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ସ୍ମାରକପତ୍ର ପ୍ରେରଣ କରିଥିଲେ । ଓଡ଼ିଆମାନଙ୍କ ପାଇଁ ରାଜାଙ୍କ ମନ ସଦା ବ୍ୟାକୁଳ ହୋଇଉଠୁଥିଲା ।

ରାଜା କୃଷ୍ଣଚନ୍ଦ୍ର ଦେବ କୃଷି କ୍ଷେତ୍ରରେ ଯୁଗାନ୍ତକାରୀ ପଦକ୍ଷେପ ନେଇଥିଲେ । ଦାୟିତ୍ୱ ଗ୍ରହଣ କରିବା ପରେ କାଶିନଗର ନିକଟରେ 'ନଳିନୀ କୃଷ୍ଣ ସାଗର' ଓ ବର୍ତ୍ତମାନ ଶ୍ରୀକାକୁଲମ୍ ଜିଲ୍ଲା ମଧ୍ୟରେ ଥିବା 'ବାସା ସାଗର' ନିର୍ମାଣ କରିଥିଲେ । ବିଭିନ୍ନ ଜଳପ୍ରକଳ୍ପ ଲୋକଙ୍କ କୃଷି କାର୍ଯ୍ୟ ଓ ସୁବିଧା ପାଇଁ କରିଥିଲେ । ପାରଳାଖେମୁଣ୍ଡିଠାରୁ ୭କି.ମି. ଦୂରରେ ଏକ ଶହ ଏକର ସମତଳ ଚାଷୋପଯୋଗୀ ଜମିରେ ସେ ଏକ କୃଷି ଫାର୍ମ କରିଥିଲେ ତାହା 'ହୋମ ଫାର୍ମ' ନାମରେ ପରିଚିତ ।

ଆମ ଓଡ଼ିଶାର ବର୍ତ୍ତମାନ କଟକ ବିଦ୍ୟାଧର ପୁରଠାରେ କାର୍ଯ୍ୟ କରୁଥିବା 'କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ' ସେହି ସମୟର ପରିକଳ୍ପନା । ମହାରାଜାଙ୍କ ମାନସ ପ୍ରସୂତ ଯୋଜନା କାର୍ଯ୍ୟକାରୀ ହେବା ପାଇଁ ବହୁ ସମୟ ଲାଗିପଡି ୨ୟ ପ୍ରତିଷ୍ଠାନ ୧୯୪୬ରୁ କୃଷି ସେବାରେ ନିଜକୁ ସମର୍ପି ଦେଇଛି । କୃଷି କ୍ଷେତ୍ରରେ ନିଜର କାର୍ଯ୍ୟଦକ୍ଷତାକୁ ମାପିପାରି ବ୍ରିଟିଶ ସରକାର ତାଙ୍କୁ ମାନ୍ଦ୍ରାଜ ପ୍ରେସିଡେନ୍‌ସି ପରିସରସ୍ଥ କୋଇମ୍ବାଟୁର ସରକାରୀ କୃଷି କଲେଜର ଉପଦେଷ୍ଟା ଭାବେ ମନୋନୀତ କରିଥିଲେ । ଆହୁରି ମଧ୍ୟ ସେ ନୂଆଦିଲ୍ଲୀସ୍ଥିତ ଭାରତୀୟ ଗବେଷଣା ପରିଷଦର ପ୍ରଶାସକ ମଣ୍ଡଳୀ ସଭ୍ୟ ଓ ଅନୁଷ୍ଠାନର ଉପଦେଷ୍ଟା ମନୋନୀତ ହୋଇଥିଲେ ।

ବିଂଶ ଶତାବ୍ଦୀର ଆରମ୍ଭରେ ଦକ୍ଷିଣପୂର୍ବ ରେଳପଥ ନିର୍ମାଣ ହେଲା । ତାଙ୍କରି ଚେଷ୍ଟାରେ ନଉପଡା ଷ୍ଟେସନଠାରୁ ପାରଳାଖେମୁଣ୍ଡି ଯାଏ ରେଳରାସ୍ତା ସଂଯୋଗ ହେଲା ଓ ପାରଳା ରାଜ୍ୟର ଅଧିବାସୀ ମାନ୍ଦ୍ରାଜ୍‌ଠାରୁ କଲିକତା ଯାଏ ସୁବିଧାରେ ଯାତାୟାତ କରିପାରିଲେ ।

ଏକଦା ପାରଳାଖେମୁଣ୍ଡି ଥିଲା ଶିକ୍ଷାର ପ୍ରାଣକେନ୍ଦ୍ର । ରାଜା କୃଷ୍ଣଚନ୍ଦ୍ରଙ୍କ ପ୍ରଚେଷ୍ଟାରେ ଅନେକ ସଂସ୍କୃତ ଟୋଲ ପ୍ରତିଷ୍ଠା କରି କିଛିବର୍ଷ ପରେ ସଂସ୍କୃତ କଲେଜରେ ପରିଣତ କରିଥିଲେ । ମେଧାବୀ ଛାତ୍ରମାନଙ୍କୁ ବୃତ୍ତି ଦେଇ ମାନ୍ଦ୍ରାଜ୍ ବିଶ୍ୱବିଦ୍ୟାଳୟକୁ ପଠାଇଥିଲେ । ସେ 'ଗଜପତି ପ୍ରେସ୍' ସ୍ଥାପନ କରିଥିଲେ । ଏହି ପ୍ରେସ୍‌ରୁ ରାଜାଙ୍କ ସମ୍ପାଦନାରେ ଇଂରାଜୀ ସାପ୍ତାହିକ ପତ୍ରିକା 'ଗଞ୍ଜାମ ନିଉଜ' ପ୍ରକାଶ ପାଇଲା ।

୧୯୩୦ରେ ମାନ୍ଦ୍ରାଜ୍ ବିଧାନସଭା ପାଇଁ ନିର୍ବାଚନ ହେଲା । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଦେବ ଗଞ୍ଜାମ–ବିଶାଖାପାଟଣା ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ ହୋଇଥିଲେ ଓ ବିପୁଳ ଭୋଟରେ ବିଜୟୀ ହୋଇ ମାନ୍ଦ୍ରାଜ୍ ବିଧାନସଭାର ସଦସ୍ୟ ହୋଇପାରିଥିଲେ । ସେ ଓଡ଼ିଆ ଭାଷା, ସୁରକ୍ଷା ଓ ଓଡ଼ିଆଙ୍କ ସ୍ୱାର୍ଥରକ୍ଷା ଓ ସ୍ୱତନ୍ତ୍ର ଓଡ଼ିଶା ଗଠନ ସମେତ ମାନ୍ଦ୍ରାଜ୍ ପ୍ରଦେଶରେ ରହିଥିବା ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶାରେ ମିଶାଇବା ପାଇଁ ହିଁ କାର୍ଯ୍ୟ କରିଥିଲେ ।

ଗଜପତି ଦେବ ଓଡ଼ିଆମାନଙ୍କ ପ୍ରତିନିଧିଭାବେ ଲଣ୍ଡନଠାରେ ଅନୁଷ୍ଠିତ ହୋଇଥିବା 'ଗୋଲ ଟେବୁଲ ବୈଠକ'ରେ ଯୋଗଦେବା ପାଇଁ ମନୋନୀତ ହେଲେ । ୧୯୩୧ ଜାନୁଆରୀ ୧୬ ତାରିଖରେ ଅନୁଷ୍ଠିତ ବୈଠକରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦୃଢ଼ଦାବି ଉପସ୍ଥାପନ କରିଥିଲେ । ଏହାପରେ ସେପ୍ଟେମ୍ବର ୧୯୩୧ 'ଦ୍ୱିତୀୟ ଗୋଲ ଟେବୁଲ' ବୈଠକରେ ଆଲୋଚନା ଓ ଅନୁକୂଳ ମତପ୍ରକାଶ ପରେ ଡିସେମ୍ବର ୧୯୩୨ରେ 'ତୃତୀୟ ଗୋଲ ଟେବୁଲ' ବୈଠକରେ ବିଧିବଦ୍ଧ ଭାବେ ଓଡ଼ିଶା ପ୍ରଦେଶ ଗଠନର ଚୂଡାନ୍ତ ନିଷ୍ପତ୍ତି ନିଆଗଲା । ୧୯୩୨ ଡିସେମ୍ବର ୨୪ ତାରିଖଟି ଓଡ଼ିଆ ଜାତି ପାଇଁ ଏକ ସ୍ମରଣୀୟ ଦିବସ ଅଟେ ।

୧୯୩୬ ଏପ୍ରିଲ୍ ୧ ତାରିଖରେ ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଗଠିତ ହେଲା । ଦୀର୍ଘ ଅର୍ଦ୍ଧଶତାବ୍ଦୀର ଆନ୍ଦୋଳନ ପରେ ୧୯୩୫ ଭାରତ ଶାସନ ଆଇନ ଭିତ୍ତିରେ ଏହି ଏପ୍ରିଲ୍ ୧ ତାରିଖରେ କାର୍ଯ୍ୟକାରୀ ହେଲା । ନୂତନ ପ୍ରଦେଶର ରାଜ୍ୟପାଳ ଭାବେ ସାର୍ ଅଷ୍ଟିନ୍ ହବାକ୍ ନିଯୁକ୍ତି ପାଇଲେ । ସେଦିନ ଓଡ଼ିଶାବାସୀ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ଖୁସିରେ ଆତ୍ମବିଭୋର ହୋଇ ପଡିଥିଲେ । ସବୁ ମହାରାଜାଙ୍କ ଯୋଗୁଁ ହିଁ ସମ୍ଭବ ହୋଇପାରିଥିଲା ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ହେବାର ଗୌରବ ହାସଲ କରିଥିଲେ । ସେ ୧୯୩୭ ଏପ୍ରିଲ୍ ୧ ତାରିଖରେ ଶପଥ ଗ୍ରହଣ କଲେ । କିଛିଦିନ ପରେ ତାଙ୍କୁ ଏହି ପଦବୀରୁ ଇସ୍ତଫା ଦେବାକୁ ପଡିଥିଲା । କିନ୍ତୁ ପୁଣିଥରେ ୧୯୪୧ ଅକ୍ଟୋବର ୨୬ ତାରିଖରେ ତାଙ୍କୁ ନିର୍ବାଚିତ କରାଗଲା ଓ ଦ୍ୱିତୀୟଥର ପାଇଁ ସେ ନଭେମ୍ବର ୩ ତାରିଖ ୧୯୪୮ରେ ଓଡ଼ିଶାର ପ୍ରଧାନମନ୍ତ୍ରୀଭାବେ ଶପଥ ଗ୍ରହଣ କଲେ । ଏହି ସମୟରେ ସେ ଅନେକ ଉନ୍ନତିମୂଳକ ଓ ଗଠନମୂଳକ କାର୍ଯ୍ୟ ଓଡ଼ିଶାବାସୀଙ୍କ ପାଇଁ କରିଥିଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ କଟକ ମେଡିକାଲ କଲେଜ ଓ କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ ଇତ୍ୟାଦିର ପ୍ରତିଷ୍ଠାତା ଅଟନ୍ତି । ୧୯୭୪ ମସିହା ମେ' ମାସ ୨୫ ତାରିଖ ପୂର୍ବାହ୍ନ ଘ. ୧୧.୩୦ ମିନିଟ୍ ସମୟରେ ଗଜପତି କୃଷ୍ଣଚନ୍ଦ୍ର ଦେବ ରାଜନଅର ମଧ୍ୟରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଚାରିଆଡେ ଶୋକର ଛାୟା ଖେଳିଯାଇଥିଲା ।

ଓଡ଼ିଶାର ଭାଷା, ସାହିତ୍ୟ, କଳା, ସଂସ୍କୃତିର ସୁରକ୍ଷାରେ ପାରଳାଖେମୁଣ୍ଡି ରାଜବଂଶର ଏହି ମହାନ୍ ଶ୍ରେଷ୍ଠ ପୁରୁଷ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅବଦାନ ଭାଷାରେ ବର୍ଣ୍ଣନା କରାଯାଇପାରିବ ନାହିଁ । ସେ ଓଡ଼ିଆଙ୍କ ପାଇଁ ଈଶ୍ୱର ସଦୃଶ୍ୟ ଥିଲେ । ତାଙ୍କରି ଦ୍ୱାରା ଦୀର୍ଘ ବର୍ଷର ଦୁଃଖ ଦୁର୍ଦ୍ଦଶା ଓଡ଼ିଆବାସୀଙ୍କର ଦୂର ହେଲା । ଓଡ଼ିଆ ପୁଅ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶଟି ପାଇଲା, ମହାରାଜା କୃଷ୍ଣଚନ୍ଦ୍ରଙ୍କ ସଂଗ୍ରାମ, ଅର୍ଥବ୍ୟୟ ଓ କାର୍ଯ୍ୟଦକ୍ଷତା ଯୋଗୁଁ । ଓଡ଼ିଆମାନଙ୍କର ଯୁଗଯୁଗର ନ୍ୟାଯ୍ୟ ଦାବିକୁ ସେ ଇଂରେଜମାନଙ୍କଠୁ ହାସଲ କରି ଉତ୍କଳ ନାମକ ସୁନ୍ଦର ପ୍ରଦେଶକୁ ଓଡ଼ିଶାବାସୀଙ୍କୁ ଉପହାର ଦେଇଥିଲେ । ତେଣୁ ଓଡ଼ିଆଙ୍କ ପାଇଁ ସେ ବାସ୍ତବରେ 'ଶତାବ୍ଦୀ ପୁରୁଷ' ପାଲଟି ଯାଇଛନ୍ତି ।

ରାଜନୀତି ବିଜ୍ଞାନ ବିଭାଗ
ସୋମନାଥ ବାଲୁଙ୍କେଶ୍ୱର ଦେବ ମହିଳା ମହାବିଦ୍ୟାଳୟ
କନ୍ତିଆ, ଜଟଣୀ, ଖୋର୍ଦ୍ଧା

# ସଂସ୍କାରକ ଆମ୍ବେଦକର

**ଜୟନ୍ତୀ ରଥ**



''ଆଇନ୍ ମଣିଷକୁ ତିଆରି କରିନାହିଁ । ଆପଣାର ହିତ ସାଧନ ପାଇଁ ମଣିଷ ହିଁ ଆଇନକୁ ସୃଷ୍ଟି କରିଛି । ଆବଶ୍ୟକ ସ୍ଥଳେ ସର୍ବସମ୍ମତିକ୍ରମେ ଏହି ଆଇନ୍‌ର ସଂଶୋଧନ କରାଯାଇପାରେ ।'' ଏହି ଉକ୍ତିର ପ୍ରବକ୍ତା ହେଉଛନ୍ତି ମହାମନୀଷୀ ଭୀମରାଓ ଆମ୍ବେଦକର ଭାରତୀୟ ସମ୍ବିଧାନର ପ୍ରଣେତା । ଉତ୍ସର୍ଗୀକୃତ ସମାଜ ସଂସ୍କାରକ ଆମ୍ବେଦକର ଆଧୁନିକ ଭାରତର ଇତିହାସରେ ଏକ ବରଣୀୟ ବ୍ୟକ୍ତିତ୍ୱ । ୧୮୯୧ ମସିହା ଏପ୍ରିଲ ୧୪ ତାରିଖରେ ମହାରାଷ୍ଟ୍ରର ରତ୍ନଗିରି ଅଧିବାସୀ ରାମଜୀ ଆମ୍ବେଦକରଙ୍କର ସନ୍ତାନ ଭାବେ ତାଙ୍କର ଜନ୍ମଲାଭ କରିବା ଘଟଣା ଆଦୌ ଉଲ୍ଲେଖଯୋଗ୍ୟ ନଥିଲା । ଅପରନ୍ତୁ ବର୍ଣ୍ଣବିଦ୍ୱେଷ ପୁଷ୍ଟ ସମାଜରେ ନିମ୍ନ ବର୍ଣ୍ଣର ସନ୍ତାନଭାବେ ତାଙ୍କର ଶୈଶବ ଓ ଯୌବନ ଥିଲା ଅବହେଳିତ, କ୍ଲେଶପୂର୍ଣ୍ଣ । ଆରମ୍ଭରୁ ହିଁ ତାଙ୍କୁ ସଂଘର୍ଷ କରିବାକୁ ପଡିଥିଲା ସତ୍ତା ସାବ୍ୟସ୍ତ କରିବା ପାଇଁ । ପରବର୍ତ୍ତୀ କାଳରେ ସେହି ସଂଘର୍ଷ ସମଗ୍ର ଦଳିତ ଜାତିର ଉତ୍‌ଥାନ ପାଇଁ ଉଦ୍ଦିଷ୍ଟ ହୋଇଥିଲା । ଏହି ଲକ୍ଷ୍ୟ ପୂରଣ ନିମନ୍ତେ ସେ ଜୀବନର ସମସ୍ତ ଶ୍ରମ ବିନିଯୋଗ କରିଥିଲେ ।

ଛାତ୍ରାବସ୍ଥାରେ ନିଜର ପ୍ରବଳ ଜ୍ଞାନ ପିପାସା ଓ ଅଧ୍ୟବସାୟ ଯୋଗୁଁ ସେ ଅସାଧାରଣ ସାଫଲ୍ୟ ଅର୍ଜନ କରିଥିଲେ । ୧୯୦୭ ମସିହାରେ ବମ୍ବେର ଏଲଫିନ୍‌ଷ୍ଟୋନ୍ ହାଇସ୍କୁଲରୁ ମାଟ୍ରିକ୍ ପାସ୍ ଓ ୧୯୧୨ ମସିହାରେ ସେଇ କଲେଜରୁ ବି.ଏ ପାସ୍ କରିଥିଲେ । ବରୋଦାର ମହାରାଜା ସୟାଜି ରାଓଙ୍କ ପ୍ରେରଣା ଓ ଆର୍ଥିକ ସହାୟତା ଲାଭ କରି ଗାୟେକୱାଡ୍ ବୃତ୍ତି ପାଇ ସେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏ.ପାସ୍ କରିଥିଲେ ଓ ପରେ ପରେ ଉଚ୍ଚତର ଗବେଷଣା କାର୍ଯ୍ୟ ସମ୍ପନ୍ନ କରିଥିଲେ । ୧୯୧୬ ମସିହାରେ ବିଦେଶରୁ ପ୍ରତ୍ୟାବର୍ତ୍ତନ କରି ଆମ୍ବେଦକର ଦଳିତ ଜାତିର କଲ୍ୟାଣ ନିମନ୍ତେ ବିଭିନ୍ନ ସଂଗଠନରେ ଅଂଶ ଗ୍ରହଣ କରିଥିଲେ ।

୧୯୨୦ ମସିହାରେ ସେ ପୁନର୍ବାର ବିଦେଶ ଯାଇ ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକସ୍‌ରେ ଯୋଗଦାନ କଲେ ଓ ଗ୍ରେଜ ବିଶ୍ୱବିଦ୍ୟାଳୟରେ ବାରିଷ୍ଟରୀ ଡିଗ୍ରୀ ପାଇଁ ନାମ ଲେଖାଇଥିଲେ । ୧୯୨୩ ମସିହା ବେଳକୁ ସେ ଭାରତର ଅନ୍ୟତମ ସର୍ବୋଚ୍ଚ ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତି ଭାବରେ ଗଣ୍ୟ ହେବାର ଗୌରବ ଲାଭ କରିଥିଲେ ।

ଗ୍ରନ୍ଥ ଅଧ୍ୟୟନ ହିଁ ଥିଲା ପ୍ରଚଣ୍ଡ ପ୍ରତିଭାଧର ଯୁବକ ଆମ୍ବେଦକରଙ୍କର ପ୍ରିୟତମ ଅଭିରୁଚି । ମାତ୍ର ରାଜନୀତିର ଘୂର୍ଣ୍ଣିଠାରୁ ନିଜକୁ ବିଚ୍ଛିନ୍ନ ରଖିବା ସମ୍ଭବ ନଥିଲା ତାଙ୍କ ପକ୍ଷେ । ଭାରତର ରାଜନୀତିକୁ ସାମ୍ପ୍ରଦାୟିକ ଗୋଷ୍ଠୀକନ୍ଦଳରୁ ଉର୍ଦ୍ଧ୍ୱକୁ ନେବାର ଅଭିପ୍ରାୟ ତାଙ୍କର ସଚେତନ ସତ୍ତାକୁ ସତତ ଆନ୍ଦୋଳିତ କରୁଥିଲା । ସମାଜରେ ବ୍ରାହ୍ମଣମାନଙ୍କର ଅନୁଚିତ ଆଧିପତ୍ୟର ବିଲୋପ ନହେବା ପର୍ଯ୍ୟନ୍ତ ସାମାଜିକ, ଅର୍ଥନୈତିକ, ଆଧ୍ୟାତ୍ମିକ ସ୍ୱାଧୀନତା ଏକ ଦୂରନ୍ତ ସ୍ୱପ୍ନ ହୋଇ ରହିବ ବୋଲି ସେ ବିଶ୍ୱାସ କରୁଥିଲେ । ପରମ୍ପରା ପରିପୁଷ୍ଟ ହିନ୍ଦୁଧର୍ମ ପ୍ରତି ତାଙ୍କର କଠୋର ଆକ୍ଷେପ ଯୋଗୁଁ ମହାତ୍ମା ଗାନ୍ଧୀଙ୍କ ସହିତ ତାଙ୍କର ମତଭେଦ ସୃଷ୍ଟି

ହୋଇଥିଲା । ୧୮୫୦ ମସିହାରେ ନାଗପୁରଠାରେ ହିନ୍ଦୁଧର୍ମ ପରିତ୍ୟାଗ କରି ଲକ୍ଷାଧିକ ଅନୁଗାମୀଙ୍କ ସହ ସେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ପରମ୍ପରା ଓ ସଂସ୍କୃତି ନାମରେ ଅମାନୁଷିକ କାର୍ଯ୍ୟାବଳୀର ବିରୋଧ କରି ସେ ସମତା ସୈନିକ ଦଳ ନାମରେ ଏକ ଅନୁଷ୍ଠାନ ଗଢିଥିଲେ । ସମାଜରେ ନାରୀମାନଙ୍କ ପ୍ରତି ହେଉଥିବା ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ମଧ୍ୟ ସେ ସ୍ୱର ଉତ୍ତୋଳନ କରିଥିଲେ । ନାରୀମାନଙ୍କର ସୁରକ୍ଷା ନିମନ୍ତେ ସେ ସର୍ବପ୍ରଥମେ ହିନ୍ଦୁକୋଡ୍ ବିଲ୍ ଆଗତ କରିଥିଲେ ଏବଂ ଏହି ମାଧ୍ୟମରେ ବିବାହିତା ହିନ୍ଦୁନାରୀମାନଙ୍କର ବିବିଧ ସମସ୍ୟାର ସମାଧାନର ମାର୍ଗ ସୂଚାଇ ଥିଲେ । ରକ୍ଷଣଶୀଳ ହିନ୍ଦୁ ସମାଜ ଏହି ବିଲ୍‌ର ଘୋର ବିରୋଧ କରିଥିଲେ ।

ସେ ଥିଲେ ଏକାଧାରରେ ଅଭିଜ୍ଞ ଆଇନଜ୍ଞ, ଅର୍ଥନୀତିଜ୍ଞ, ସମାଜବିତ୍ ଓ ସୁଦକ୍ଷ ସାଂସଦ । ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେ ହେଉଛନ୍ତି ଆଧୁନିକ ଭାରତର ସମ୍ବିଧାନର ଜନକ । ପିପୁଲସ୍ ଏଡୁକେଶନ୍ ସୋସାଇଟି (୧୯୪୫)ର ଗଠନ, ନବ ବୌଦ୍ଧ ଧର୍ମର ଉତ୍‌ଥାନ, ଅନୁସୂଚିତ ଜାତି, ଉପଜାତିମାନଙ୍କ ସକାଶେ ସଂରକ୍ଷଣ ବ୍ୟବସ୍ଥା ଏ ସମସ୍ତ ଦିଗରେ ତାଙ୍କର ଅବଦାନ ଥିଲା ଅତୁଳନୀୟ ।

୧୯୫୬ ମସିହା ଡିସେମ୍ବର ୬ତାରିଖରେ ଆଜୀବନ ସଂଗ୍ରାମୀ ଏହି ତ୍ୟାଗପୂତ ସାଧକଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ମହାନ୍ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ ପୂର୍ବକ ଭାରତ ସରକାର ତାଙ୍କୁ ମରଣୋତ୍ତର 'ଭାରତରତ୍ନ' ସମ୍ମାନ ପ୍ରଦାନ କରିଛନ୍ତି । ତାଙ୍କର କୃତି ଓ କୀର୍ତ୍ତି ଆଧୁନିକ ଭାରତ ଇତିହାସରେ ଏକ ଭାବୋଦ୍ଦୀପକ ଅଧ୍ୟାୟ ।

ସଂଗ୍ରହାଧ୍ୟକ୍ଷା,
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

# ଅଭୁଲା ଜନ୍ମଦିନ

**ସୁପ୍ରଭା ମିଶ୍ର**

ଅପ୍ରେଲ ଅଗଣାରେ
ଏ ସଜଫୁଲର ମହକ
ଠା ଠା ଝୋଟିଚିତା
ଗହଳ ଚହଳ ସାଙ୍ଗକୁ
ଘରେ କ୍ଷୀରି ସରୁ ଚକୁଳିର ବାସ୍ନା
କାନେ କାନେ କହିଯାଉଚି
ତୁମ ଜନ୍ମଦିନ ବାର୍ତ୍ତା
କୁଳବୃଦ୍ଧ ଉତ୍କଳଗୌରବ !

ଏତେବର୍ଷ ବିତିଗଲା ପରେ ବି
କାହିଁକି ଯେ ତୁମ ପିଲାଦିନ
ଏମିତି ଝାଲର ପରି ଓହଳେ ଆସି
ଦିଶିଯାଏ–

ସାଙ୍ଗସାଥି ଘେନି ତୁମେ
ଗାଁ ବାଟ ସମତୁଲ କରିବା ଦୃଶ୍ୟ
ଚାଟସଭାରେ ଗୁରୁଜୀଙ୍କ ଭାଷଣ
ତୁମ ଓକିଲାତି ପାଠ ପଢ଼ା
ଛିନ୍ନମସ୍ତା ଜନନୀର ସେବା
ପଦେ ପଦେ ଲଢେଇ
ଓ ତିଳ ତିଳ ଜଳି
ଓଡ଼ିଆ ଭାଷାର ଶୃଙ୍ଖଳା ଚେରରେ
ପତ୍ର ମେଲେଇବା ବିଭୋର ପଣ ।
ହେ ଯୁଗପୁରୁଷ !
ଆଜି ତୁମ ଶୁଭ ଜନ୍ମଦିନେ
ଆଶୀଷ ଦିଅ ଆମକୁ

ଢାଳିଦିଅ କରୁଣାର
ମହନୀୟ ଧାର
ପ୍ରତ୍ୟୟ ବିଶ୍ୱାସ ରଖି
ଝଡଝଞ୍ଜା ସହି ବୋହି
ଆଗେଇ ଚାଲିବା ପାଇଁ
ପ୍ରତି ପଦପାତେ ମିଳୁ
ଦୃଢ ମନୋବଳ ।

ପ୍ରାଧ୍ୟାପିକା,
ବି.ଜେ.ବି.(ସ୍ୱୟଂଶାସିତ)
ମହାବିଦ୍ୟାଳୟ, ଭୁବନେଶ୍ୱର

# ସ୍ୱଭାବ କବିଙ୍କ ଦେଶପ୍ରେମ

**ପାର୍ଥସାରଥି ଅଜୟ ବାରିକ୍**



ଆଧୁନିକ ଓଡ଼ିଆ ସାହିତ୍ୟର ଉତ୍କଳବନ୍ଦିତ କବି ଗଙ୍ଗାଧର ସର୍ବତ୍ର ସ୍ୱଭାବ କବି ଭାବରେ ହିଁ ଅଭିନନ୍ଦିତ ହୋଇଥାଆନ୍ତି । ତାଙ୍କର ଜୀବନ ଚରିତ, ପ୍ରାକୃତିକ ପରିବେଶ, ଶିକ୍ଷାଗତ ପରିପାର୍ଶ୍ୱ ଏବଂ ବିଦଗ୍ଧତା ଅର୍ଜନର ସମ୍ଭାବିତ ବଳୟ ଉପରେ ଦୃଷ୍ଟିପାତ କଲେ ଏକଥା କଳ୍ପନା କରିହୁଏ ନାହିଁ ଯେ, ପୂର୍ବଜନ୍ମର କିଭଳି ସତ୍‌କର୍ମ ବଳରେ ସେ ଏଭଳି ଅମୃତ ନିଷ୍ୟନ୍ଦିନୀ କବିତାର ପ୍ରଭାବ ଛୁଟାଇ ଦେଇଥିଲେ । ସାଧାରଣ ଜ୍ଞାନର ଲୋକେ ଏକଥା କଳ୍ପନା ବି କରିପାରିବେ ନାହିଁ । ମହାକବି କାଳିଦାସ ତାଙ୍କର ସୁବିଖ୍ୟାତ ଅଭିଜ୍ଞାନ ଶାକୁନ୍ତଳମ୍ ନାଟକରେ ଯେଉଁ ଭାଗ୍ୟ କଥା କହିଅଛନ୍ତି, ପୂର୍ବଜନ୍ମର ସତ୍‌କର୍ମ ହେତୁ ସେଭଳି ପ୍ରବଳ ଓ ପ୍ରଖର ତପସ୍ୟାର ବଳ ନଥିଲେ ତାଙ୍କ ସମୟରେ ପଶ୍ଚିମ ଓଡ଼ିଶାରେ ସାରସ୍ୱତ ଓ ଶିକ୍ଷାତ୍ମକ ପରିସ୍ଥିତିରେ ଏଭଳି ପ୍ରଚଣ୍ଡ ପ୍ରତିଭାର ବିସ୍ମୟକର ବିଳାସ କେବେ ସମ୍ଭବପର ହୋଇନଥାନ୍ତା । ତେବେ ଅଧ୍ୟବସାୟ ବଳରେ ସେ ନିଜର ବିଦ୍ୟାଳୟ ଯୋଗ୍ୟତା ଅପେକ୍ଷା, ସମଧିକ ପରିମାଣରେ ଜ୍ଞାନରାଜ୍ୟର ଅନେକ ଶୃଙ୍ଗ ଆରୋହଣ କରିଥିଲେ ।

ଗୋଟିଏ ସ୍ତରରେ କଥା ଉଠିଥିଲା ଏବଂ ସେ ସମୟରେ ଗଙ୍ଗାଧରଙ୍କର ପରମ ବନ୍ଧୁ ଏବଂ ସୁପ୍ରସିଦ୍ଧ କବି ପଲ୍ଲୀକବି ନନ୍ଦ କିଶୋର କହିଥିଲେ– ଆମ ସମୟର ସୁପ୍ରସିଦ୍ଧ ସାଧକ ରାଧାନାଥ ରାୟ ସିନା ଓଡ଼ିଶାର ବାହ୍ୟରୂପ ଚମତ୍କାର ଭାବେ ଚିତ୍ରିତ କରି ପ୍ରବଳ ଗୌରବ ଅର୍ଜନ କରିଅଛନ୍ତି, କିନ୍ତୁ ମନୁଷ୍ୟର ଗୁଣ ଓ ଚରିତ୍ର, ସାହିତ୍ୟିକର କୃତିତ୍ୱ ପ୍ରଦର୍ଶନ ପାଇଁ କିଏ ଦୃଷ୍ଟି ଦେବ ? ଆଲୋଚକମାନଙ୍କର ମହନୀୟ ଇଙ୍ଗିତ ଅଳ୍ପ କାର୍ଯ୍ୟକାରୀ ହୋଇନଥିଲା । ନନ୍ଦକିଶୋର ଯାହା ଲେଖିଗଲେ, ହୁଏତ ସେ ମତ ଅନ୍ୟ କାହାରି ମନରେ ମଧ୍ୟ ସମୁଦିତ ହୋଇଥିବ, କିନ୍ତୁ ରାଧାନାଥଙ୍କର ଗୌରବୋଜ୍ଜ୍ୱଳ କୃତିତ୍ୱ ସହିତ କାବ୍ୟରେ ପ୍ରକୃତ ମାନବିକ ଚରିତ୍ରଗତ ଉଚ୍ଚଚିନ୍ତାରେ ଚେତନା ଫୁଟାଇଥିବା ବ୍ୟକ୍ତିମାନଙ୍କର ମହତ୍ୱ ମଧ୍ୟରେ ନନ୍ଦକିଶୋରଙ୍କର ନାମର ଉଲ୍ଲେଖ, ଅବଶ୍ୟ ସ୍ମରଣୀୟ ଓ ସମ୍ବର୍ଦ୍ଧନୀୟ । ତେଣୁ ଗଙ୍ଗାଧର ତାଙ୍କର ବିଭିନ୍ନ କାବ୍ୟରେ ପାଠକମାନଙ୍କ ମନରେ ପ୍ରକୃତ ମାନବିକ ଆଦର୍ଶବୋଧ ପାଇଁ ଯେଉଁ ଚିନ୍ତାର ବିଳାସ କେତେ ସ୍ଥାନରେ ପ୍ରଦର୍ଶନ କରିଅଛନ୍ତି । ସେଥିପାଇଁ ନନ୍ଦକିଶୋରଙ୍କ ସହିତ ଗଙ୍ଗାଧରଙ୍କର ମଧ୍ୟ ମହତ୍ୱଗାନ କରିବାର ଯଥେଷ୍ଟ ଆବଶ୍ୟକତା ରହିଛି ।

କବି ଗଙ୍ଗାଧର ଭାରତୀୟ ଆଦର୍ଶରେ ସର୍ବଦା ଉଦ୍‌ବୁଦ୍ଧ ଥିଲେ । ତାଙ୍କର ଇନ୍ଦୁମତୀ (ଯଦିଓ କାଳିଦାସଙ୍କ ଉପରେ ଆଧାରିତ) ଏବଂ ତପସ୍ୱିନୀ (ଯଦିଓ ସଂସ୍କୃତ କବି ବିଶେଷଙ୍କ ଉପରେ ଅଂଶତଃ ଆଧାରିତ) ତଥାପି, ସ୍ଥାନେ ସ୍ଥାନେ ଏଭଳି ମୌଳିକତାର ମନୋରମ ବର୍ଣ୍ଣ–ମଣ୍ଡିତ ଯେ ଓଡ଼ିଶାର ଅଗଣତି ପାଠକ ଏହି କାବ୍ୟମାନଙ୍କୁ ପାଠ କରିବା ଭିତରେ ଗଙ୍ଗାଧରଙ୍କ ମୌଳିକତାର ତାଙ୍କ କବିତ୍ୱର ପରମ ଉପାସକ ହୋଇଯାଇଛନ୍ତି । ପ୍ରଣୟବଲ୍ଲରୀରେ କେବଳ କାଳିଦାସ ନାହାଁନ୍ତି । କାଳିଦାସଙ୍କ ପ୍ରଭାବପୃଷ୍ଟ ଅନେକ ଚିନ୍ତା, ଅନେକ କଳ୍ପନା, ଅନେକ ଚାତୁର୍ଯ୍ୟ ଏବଂ ଅନେକ ପ୍ରକାର ରସିକତା ଏପରି ଫୁଟିଉଠିଛି ଯେ, ଉଭୟ କବିଙ୍କର ପଦମାନଙ୍କୁ ତୁଳନା କଲେ ଠାଏ ଠାଏ ଗଙ୍ଗାଧର କିପରି ଅନୁକରଣ ମଧ୍ୟରେ ନିଜକୁ ହଜାଇ ଦେଇନାହାଁନ୍ତି ଏବଂ ତାହାରି ଭିତରେ ନିଜର କମ୍ରତା, ମୌଳିକତା ବା ସ୍ୱକୀୟତା ବିକଶିତ ରଖିବାକୁ ଚେଷ୍ଟା କରିଛନ୍ତି, ତାହା ସ୍ପଷ୍ଟଭାବରେ ବାରି ହୋଇପଡେ ।

ମେହେର ସାହିତ୍ୟର କେତେଜଣ ପ୍ରଖ୍ୟାତ ସମୀକ୍ଷକ ଏକଥା ଦେଖାଇ ଦେଇଛନ୍ତି ଯେ, ଗଙ୍ଗାଧର ମେହେର ବିଖ୍ୟାତ ସଂସ୍କୃତ କବିମାନଙ୍କର ପ୍ରସିଦ୍ଧ ରଚନାମାନଙ୍କୁ ଭଲଭାବରେ ଅଧ୍ୟୟନ କରିଛନ୍ତି । କିନ୍ତୁ ଯେଉଁଠାରେ ଅନ୍ୟମାନଙ୍କର ଯାହା ଗ୍ରହଣ କରିଛନ୍ତି କେବଳ ତାହାକୁ ନିଜର ବୋଲି ପ୍ରକାଶ ନକରି, ତହିଁରେ ନିଜର ମୌଳିକ ଶକ୍ତି ବଳରେ ନୂତନ ଶୈଳୀ ଓ କଳ୍ପନା ସଂଯୋଗ କରିଛନ୍ତି ଓ ତାହାଦ୍ୱାରା ପରିଗୃହୀତ ମୂଳଚିନ୍ତାକୁ ମଧ୍ୟ ମହନୀୟ କରିଦେଇଛନ୍ତି । ଗୋଟିଏ ଉଦାହରଣ ଦେଇ ଏକଥା କହିଲା ବେଳେ ବିଶିଷ୍ଟ ସମୀକ୍ଷକ କହିଛନ୍ତି ଯେ, ଗଙ୍ଗାଧର ଯେଉଁ ମୂଳ ଲେଖକଙ୍କ ଗ୍ରନ୍ଥ ପଢି ବଢିଆ ଚିନ୍ତା ବା ଚାତୁର୍ଯ୍ୟ ଗ୍ରହଣ କରିଥିଲେ ସେହି ମୂଳଗ୍ରନ୍ଥର ଲେଖକଙ୍କୁ ତାଙ୍କର ପିତାରୂପେ ଗ୍ରହଣ କରାଯାଉ । କେତେକ ପାଠକ ମୂଳରଚନା ପଢିଲା ପରେ ସେହି ଲେଖାରୁ ଯେଉଁ ସୁନ୍ଦର ସୁନ୍ଦର ଚିନ୍ତା ପାଇଛନ୍ତି, ତାକୁ ଚମତ୍କାର ଭାବରେ ଗ୍ରହଣ କରି ନିଜର ଅନ୍ୟ ରଚନାରେ ପ୍ରୟୋଗ କରିଛନ୍ତି । କିନ୍ତୁ ଗଙ୍ଗାଧର ପିତୃକଳ୍ପ ଅନ୍ୟର ଯାହାଙ୍କଠାରୁ ନୂତନ ଚିନ୍ତା ରୂପକ ସାହାଯ୍ୟ ଗ୍ରହଣ କରିଛନ୍ତି କେବଳ ସେହି ସୁନ୍ଦର ସୁନ୍ଦର ଚିନ୍ତାକୁ ଅନୁବାଦନ କଲାଭଳି ନିଜ କାବ୍ୟରେ ଥୋଇଦେଇ ନାହାଁନ୍ତି । ବରଂ ସେ ଗ୍ରହଣ କରିଥିବା ଅନ୍ୟ କବିଙ୍କ ଚିନ୍ତାରେ ନିଜର ପରମ ରମଣୀୟ ଚିନ୍ତା ଚାତୁରୀ ଯୋଗକରି ପାଠକଙ୍କ ଦୃଷ୍ଟିରେ ନିଜକୁ ତ ମହନୀୟ କରିଦେଇଛନ୍ତି, ତତ୍ ସଙ୍ଗେ ସଙ୍ଗେ ଯେଉଁ ମୂଳରଚନାରୁ ସେ ନୂତନତା ଗ୍ରହଣ କରିଛନ୍ତି, ତହିଁରେ ଅଧିକ ନୂତନତା ସଂଯୋଗ କରି ସେ ପ୍ରକାର ଚିନ୍ତାତ୍ମକ ପରିବେଶ ମଧ୍ୟରେ ନିଜ ଲେଖା ସହିତ ମୂଳ ଲେଖକଙ୍କ ରଚନାର ଉତ୍କର୍ଷ ବା ଉପାଦେୟତା ମଧ୍ୟ ବଢାଇ ଦେଇଛନ୍ତି ।

କେବଳ ସେତିକି ନୁହେଁ, ଗଙ୍ଗାଧର ନିଜେ ଜନ୍ମରୁ ହିଁ ମାତୃଭାଷା ଏବଂ ମାତୃଭୂମିର ଏକନିଷ୍ଠ ସେବକ ଥିଲେ । ସେଥିପାଇଁ ମାତୃଭାଷାର ସାହିତ୍ୟକୁ ସମୁନ୍ନତ କରିବା ପାଇଁ ସେ ଓଡ଼ିଆ କାବ୍ୟ କବିତା ମାଧ୍ୟମରେ ସାହିତ୍ୟ ସୃଷ୍ଟି କରିବାକୁ ଆଜୀବନ ଦିବାଲୋକରୁ ଦୀପାଲୋକ ପର୍ଯ୍ୟନ୍ତ ଏକାଧାରରେ ଗ୍ରନ୍ଥଚର୍ଚ୍ଚା ସହିତ ପରିବାର ପୋଷଣ ପାଇଁ ତନ୍ତଚର୍ଚ୍ଚା କରିବା ଦିଗରେ ମଧ୍ୟ ମନୋନିବେଶ କରିଥିଲେ । ରାମାୟଣ, ମହାଭାରତ, ବୈଷ୍ଣବ ସାହିତ୍ୟ, କାଳିଦାସ ଏବଂ ଅନ୍ୟାନ୍ୟ କବିତା ସାହିତ୍ୟକୁ ମଧ୍ୟ ଆୟତ୍ତ କରି ସେ ନିଜର ଶକ୍ତି ଅନୁସାରେ ଭାରତୀୟଙ୍କର ସେବା କରୁଥିଲେ । ତାଙ୍କର ଉତ୍କଳଗୌରବ ନାମକ ମାର୍ଚିଙ୍ଗ୍ ସଙ୍ଗ ସମଗ୍ର ରାଧାନାଥ ଯୁଗ ସାହିତ୍ୟର ଗୋଟିଏ ଅନବଦ୍ୟ କବିତା । କବିଙ୍କର ପ୍ରଣୟବଲ୍ଲରୀ କାବ୍ୟର ପ୍ରଥମ ଅଂଶରେ ଯେଉଁ ଆତ୍ମବିବରଣୀ ଦିଆଯାଇଛି, ତାହା ମଧ୍ୟ ଦେଶାତ୍ମବାଦୀ କବି ମାନସର ଏକ ନିର୍ମଳ ଆଲେଖ୍ୟ । କବିଙ୍କର ଭାରତୀ ଭାବନା ଓଡ଼ିଶାର ସର୍ବମାନ୍ୟ ମହାକବି ଉପେନ୍ଦ୍ର ଭଞ୍ଜଙ୍କର ଚିରନନ୍ଦିତ ଶୈଳୀରେ ରଚିତ ହୋଇଅଛି, କେବଳ ବିରୋଧୀ ଗୋରା ସରକାରଙ୍କୁ ତାହାର ପାଣ୍ଡିତ୍ୟପୂର୍ଣ୍ଣ ଦ୍ୱିତୀୟ ଅର୍ଥରେ ବୋକା ବନାଇ ଦେବା ପାଇଁ ଓ ତଦ୍ୱାରା ଆତ୍ମରକ୍ଷା କରିବା ପାଇଁ ତାଙ୍କର ଉତ୍କଳ ଭାରତୀଙ୍କ ଭକ୍ତି କବିତା ଆଧୁନିକ ଶିକ୍ଷିତ ଓଡ଼ିଆ ସମାଜରେ ମଧ୍ୟ ସ୍ୱଦେଶ ପ୍ରୀତିର ଜାଗରଣ ପାଇଁ ଏକ ଉଦ୍ଦୀପକ ଔଷଧ । କବିଙ୍କର ଦେଶାତ୍ମବୋଧର ସୂତ୍ରଥିଲା ସମାଜ ସଂସ୍କାର ଏବଂ ଚରିତ୍ର ଗଠନ । ସେଥିପାଇଁ ସେ ଲେଖିଥିଲେ ମହାନ୍ଧକାର, ଗର୍ବ ଏବଂ ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର ପ୍ରଭୃତି ସ୍ୱାଭିମାନର ସୂତ୍ରରୂପୀ କବିତା । ତାଙ୍କର ରାଧାନାଥ ରାୟ, କୃଷ୍ଣ କୁମାରୀ, ଫକୀର ମୋହନ ସେନାପତି ଏବଂ ଏ ଜାତୀୟ ଅନ୍ୟ ଅନେକ କବିତା ଲୋକଙ୍କ ମନରେ ପ୍ରତିଭା ପୂଜାର ଆଦର୍ଶ ଫୁଟାଇବା ପାଇଁ ପରିକଳ୍ପିତ ହୋଇଥିଲା । ପୁରାଣ ସାହିତ୍ୟରୁ ଦେଶର ଉନ୍ନତିମୂଳକ ଏବଂ ଚରିତ୍ର ଗଠନମୂଳକ ଚିନ୍ତାର ଉଦ୍ରେକ ନିମନ୍ତେ ବିଦୂର ପ୍ରଜାଗର ଲେଖାଯାଇଥିଲା । ସେହିପରି ଉତ୍କଳ ସେବକର ନବବର୍ଷ ଉପଲକ୍ଷେ କବିଙ୍କ ଭାବାବଳୀ କେବଳ ଦେଶବାସୀଙ୍କୁ ସଜାଗ କରିବା ନିମନ୍ତେ ଅଭିପ୍ରେତ ଥିଲା । ଏପରି ଭାବରେ ଗଙ୍ଗାଧର ନିଜର ନାନାବିଧ ଅସୁବିଧା ସତ୍ତ୍ୱେ ଭାଷା ଓ ସାହିତ୍ୟ ମାଧ୍ୟମରେ ଓଡ଼ିଆମାନଙ୍କୁ ଉଦ୍ଦୀପିତ କରିବା ପାଇଁ ସହଜ, ସରଳ ଓ ସୁଖପାଠ୍ୟ କବିତାମାନ ରଚନା କରିଥିଲେ । ତାଙ୍କର କେତେକ କବିତାରେ

ଉତ୍କଳର ଭୌଗୋଳିକ ଚିତ୍ର, ଋତୁଚିତ୍ର ପ୍ରଭୃତି ଉପଭୋଗ୍ୟ କବିତା ଭାବରେ ଫୁଟି ଉଠିଥିଲା ।

ତାଙ୍କର ସର୍ବଶ୍ରେଷ୍ଠ କାବ୍ୟ ହେଉଛି 'ତପସ୍ୱିନୀ' । ତହିଁରେ ସେ ନିଜର ପରମ ଦୈନ୍ୟ ପ୍ରକାଶ କରି ଲେଖିଥିଲେ–

'ଦରିଦ୍ରତା ପଙ୍କପୂର୍ଣ୍ଣ ମୋ ଜୀବନ ସର
ଜଞ୍ଜାଳ ଜଳଦଳେ ଆବିଳ ଉଦର ।
ଶରଦ ସଦୃଶ ତତେ କରି ଦରଶନ
ହୋଇଯାଉଅଛି ସେତ ସ୍ୱତଃ ପରଶନ ।'

ଇଂରାଜୀ କବି ଗ୍ରେ ତାଙ୍କର ବିଖ୍ୟାତ କବିତାରେ ଦୁଃଖ ପ୍ରକାଶ କରିଅଛନ୍ତି ଯେ, ଅନେକ ସୁନ୍ଦର ସୁନ୍ଦର ପଦାର୍ଥ ଦରିଦ୍ରତା ହେତୁ ବିନଷ୍ଟ ହୋଇଯାଏ । କିନ୍ତୁ ଏହି ପଦ୍ୟରେ ଗଙ୍ଗାଧର କହିଛନ୍ତି ଯେ, ମନୁଷ୍ୟ ତାର ସତ୍‌କର୍ମ ବଳରେ ଭାଗ୍ୟଦେବୀଙ୍କଠାରୁ ଯେଉଁ ଶକ୍ତି ପାଇଥାଏ, ସେହି ଶକ୍ତି ସହଜରେ ବିନଷ୍ଟ ହୁଏନାହିଁ । ଗଙ୍ଗାଧରଙ୍କ ଏହି ଆତ୍ମବିଶ୍ୱାସ ବିଶ୍ୱସ୍ତରୀୟ ପ୍ରଖ୍ୟାତ କବିମାନଙ୍କ ମଧ୍ୟରେ ତୁଳନା ନିମନ୍ତେ ସ୍ଥାନ ପାଇବା ଉଚିତ୍ । ଗଙ୍ଗାଧରଙ୍କ ଏହି ସତ୍‌କର୍ମ ବିଶ୍ୱାସ ବିଶ୍ୱର ମହାକବିମାନଙ୍କ ମଧ୍ୟରେ ଉଲ୍ଲେଖନୀୟ ଓ ଏକ ଆସନରେ ସଂସ୍ଥାପନୀୟ । ଓଡ଼ିଆ ଜାତି କବିଙ୍କର ଏଇ ମେଘ–ମନ୍ଦ୍ର ଉଦ୍‌ଘୋଷଣାକୁ କେବେ ଭୁଲି ପାରିବ ନାହିଁ–

ଉଚ୍ଚହେବା ପାଇଁ କର ଯେବେ ଆଶା ।
ଉଚ୍ଚକର ଆଗେ ନିଜ ମାତୃଭାଷା ।

ସାରଳା ଦାସଙ୍କଠାରୁ ନିରବ ସାଧକ ଗଙ୍ଗାଧରଙ୍କ ପର୍ଯ୍ୟନ୍ତ ଯେଉଁସବୁ ଭାରତୀ ଭକ୍ତମାନେ ଓଡ଼ିଆରେ ଲେଖିଯାଇଥିଲେ, ସେ ସମସ୍ତଙ୍କ ଏକନିଷ୍ଠ ସାଧନାର ମହାମନ୍ତ୍ର ଏହି ପଦକରେ ଗଙ୍ଗାଧର ମହାମନ୍ତ୍ର ପରି ଲେଖିଛନ୍ତି । ଏହା ଓଡ଼ିଆ ଜାତିର ବରେଣ୍ୟ ମହାମନ୍ତ୍ର ।

ସମ୍ପାଦକ, 'ଚିର ସଂଧାନ', ଏମ୍‌ଆଇଜି–୭୮
ଅନନ୍ତ ବିହାର, ପୋଖରୀପୁଟ, ଭୁବନେଶ୍ୱର–୨୦

❖ ❖ ❖

# କଟକ ଭୁବନେଶ୍ୱର ମଧ୍ୟରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ବସ୍ ସେବା

ଆନ୍ତର୍ଜାତିକ ମହିଳା ଦିବସ ପାଳନ ଅବସରରେ କଟକ–ଭୁବନେଶ୍ୱର ମଧ୍ୟରେ ମହିଳା ଯାତ୍ରୀମାନଙ୍କ ନିମନ୍ତେ ରାଜ୍ୟ ପରିବହନ ବିଭାଗ ତରଫରୁ ସ୍ୱତନ୍ତ୍ର ବସ ସେବା ଯୋଗାଇ ଦେବା ନିମନ୍ତେ ନିଷ୍ପତ୍ତି ଗ୍ରହଣ କରାଯାଇଛି । ଏହି ବସ୍‌ରେ ଯାତ୍ରୀ ଭଡା ଅସୁଲ କରିବାକୁ ମହିଳା କଣ୍ଡକ୍ଟର ନିଯୁକ୍ତି କରାଯିବ । ଗୋଟିଏ ସ୍ୱତନ୍ତ୍ର ବସ୍ ଭୁବନେଶ୍ୱରରୁ ବାହାରି କଟକ ପର୍ଯ୍ୟନ୍ତ ଯାତାୟାତ କରିବ ଏବଂ ଠିକ୍ ସେହି ସମୟରେ ଅନ୍ୟ ଏକ ସ୍ୱତନ୍ତ୍ର ବସ କଟକରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଆସିବ । ମହିଳା ଯାତ୍ରୀମାନଙ୍କର ସୁଖଦ ଓ ସୁରକ୍ଷିତ ଯାତ୍ରା ନିମନ୍ତେ ରାଜ୍ୟ ପରିବହନ ବିଭାଗର ମହିଳା ଯାତ୍ରୀମାନଙ୍କ ପାଇଁ ଏହା ଏକ ଅଭିନବ ପ୍ରୟାସ । ଓଡ଼ିଶାରେ ଏହି ସ୍ୱତନ୍ତ୍ର ବସ୍ ସେବା ପ୍ରଥମ ଥର ପାଇଁ ଆରମ୍ଭ କରାଯାଉଛି ବୋଲି ରାଜ୍ୟ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ସୁବ୍ରତ ତରାଇ ପ୍ରକାଶ କରିଛନ୍ତି ।

# ବୀର ପ୍ରସବିନୀ ସ୍ୱର୍ଣ୍ଣପ୍ରସୂ ଉତ୍କଳ ଜନନୀ

**ବିକ୍ରମ କେଶରୀ ବର୍ମା**

ଅତୀତରେ କଳିଙ୍ଗ ଓ ଉତ୍କଳ ନାମରେ ନାମିତ ଓଡ଼ିଶା କେବେ ଗରିବ ରାଜ୍ୟ ନଥିଲା । କଳିଙ୍ଗ ସମ୍ରାଟ ଖାରବେଳଙ୍କ ବୀରତ୍ୱ କାହାଣୀ ଇତିହାସରେ ଚମକ ସୃଷ୍ଟି କରିଥିଲା । ମଗଧ ସମ୍ରାଟ ପରାଜିତ ହୋଇ ତାଙ୍କ ପଦବନ୍ଦନା କରିଥିଲେ ଓ ସମଗ୍ର ଦକ୍ଷିଣ ଭାରତ ତାଙ୍କର ପଦାନତ ହୋଇଥିଲା । ଗ୍ରୀକ୍ ସମ୍ରାଟ ଡେମିଟ୍ରିୟସ ମଥୁରା ପର୍ଯ୍ୟନ୍ତ ମାଡି ଆସିଥିଲେ । ଏ ସମ୍ବାଦ ପାଇ କଳିଙ୍ଗ ସମ୍ରାଟ ଖାରବେଳ ମଗଧ ଜୟ ପରେ କଳିଙ୍ଗର ଦୁର୍ଦ୍ଧର୍ଷ ସେନା ସହ ମଥୁରା ଅଭିମୁଖେ ଅଗ୍ରସର ହୋଇଥିଲେ ଓ ଡେମିଟ୍ରିୟସ ଏ ବାର୍ତ୍ତା ପାଇବା ମାତ୍ରେ ପଛଘୁଞ୍ଚା ଦେଇ ଭାରତ ଛାଡି ପଳାୟନ କରିଥିଲେ ।

ଗଜପତି କପିଳେନ୍ଦ୍ରଙ୍କ ସମୟରେ ଯୁଦ୍ଧଯାତ୍ରା ଓ ରାଜ୍ୟ ଜୟ ନିତିଦିନିଆ ଖବର ଥିଲା । ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ବିଜୟ, ଗଜପତି ଅନଙ୍ଗଭୀମ ଦେବଙ୍କ ଶ୍ରୀମନ୍ଦିର ନିର୍ମାଣ, ଗଜପତି ଲାଙ୍ଗୁଳା ନରସିଂହ ଦେବଙ୍କ କୋଣାର୍କ ମନ୍ଦିର ନିର୍ମାଣ କେଶରୀ ବଂଶ କୀର୍ତ୍ତିରାଜି ଆଜି ଇତିହାସର ବିଷୟ ବସ୍ତୁ ।

ଉତ୍କଳର ବଣିକମାନେ ସାଗରର ଉତ୍ତାଳ ଜଳତରଙ୍ଗକୁ ଖାତିର ନକରି ବୋଇତରେ ଦୂର ବିଦେଶ ଜାଭା, ସୁମାତ୍ରା, ବାଲି, ଶ୍ରୀଲଙ୍କା ଆଦି ରାଜ୍ୟକୁ ଯାଇ ବାଣିଜ୍ୟ କରି ହୀରାନୀଳା ମୋତି ମାଣିକ ରାଜ୍ୟକୁ ବୋହି ଆଣିଥିଲେ ।

ଉତ୍କଳ ଜନନୀ କେବଳ ବୀର ପ୍ରସବିନୀ ନୁହଁନ୍ତି, ସେ ମଧ୍ୟ ସ୍ୱର୍ଣ୍ଣଗର୍ଭା । ତା'ର ଗିରି କନ୍ଦର, ଜଙ୍ଗଲ ମଧ୍ୟରେ ଓ ମାଟି ତଳେ ଅମୂଲ୍ୟ ଖଣିଜ ସମ୍ପଦ ଭରପୂର ହୋଇରହିଛି ଅଭ୍ର, ମାଙ୍ଗାନିଜ, ଲୁହା, କୋଇଲା, କ୍ରୋମାଇଟ୍, ଗ୍ରାଫାଇଟ୍, ଗ୍ରାନାଇଟ, ଏପରିକି ସୁନା ମଧ୍ୟ ଗଚ୍ଛିତ ରହିଛି । ଏସବୁ ମୂଲ୍ୟବାନ ଖଣିଜ ଦ୍ରବ୍ୟର ସଠିକ୍ ବିନିଯୋଗ ହୋଇପାରିଲେ ଓଡ଼ିଶା ଏକ ଧନୀ ରାଜ୍ୟରେ ପରିଣତ ହୋଇପାରିବ ।

ଚିର ପ୍ରବାହିନୀ ଗଙ୍ଗା ନଦୀ କୂଳରେ ବାସକରି ତୃଷାର୍ତ୍ତ ରହିବା ପରି ସ୍ୱର୍ଣ୍ଣପ୍ରସୂ ଉତ୍କଳ ଜନନୀର ସନ୍ତାନ ହୋଇ ଆମ୍ଭେମାନେ ଏସିଆ ମହାଦେଶରେ ସବୁଠାରୁ ଗରିବ, ଏହାଠାରୁ ଦୁର୍ଭାଗ୍ୟର ବିଷୟ ଆଉ କ'ଣ ଥାଇପାରେ ।

ଏହାର ମୁଖ୍ୟ କାରଣ ଆମର ଆଳସ୍ୟତା, ଈର୍ଷାପରାୟଣ ମନୋଭାବ ଓ ସାହସିକ ମନୋବୃତ୍ତି ଅଭାବ ।

ଓଡ଼ିଆ ଜାତିର ସେହି ସାହସିକ ମନୋଭାବ ଫେରାଇ ଆଣିବା ପାଇଁ ଉତ୍କଳଗୌରବ ମଧୁବାବୁ ଉଚ୍ଚକଣ୍ଠରେ ଗାଇଥିଲେ ।

ତୁ ପରା ବୋଲାଉ ଉତ୍କଳ ସନ୍ତାନ,
ତେଣୁ କିମ୍ପା ତୁହି ଭୀରୁ ।

ବିଜୁବାବୁ ସବୁବେଳେ ଓଡ଼ିଆମାନଙ୍କୁ ସାହସୀ ହେବାପାଇଁ ଉଦ୍‌ବୋଧନ ଦେଉଥିଲେ । କଳିଙ୍ଗର ସାହସିକ ଜାତି ଆଜି ଦୁର୍ବଳ ହେବା ଭାଗ୍ୟର ବିପର୍ଯ୍ୟୟ ବ୍ୟତୀତ ଆଉ କ'ଣ ହୋଇପାରେ ? ନିଆଁଖୁଣ୍ଟା ସମ୍ପାଦକ ଗୋଦାବରୀଶ ମହାପାତ୍ର 'ଉଠକଂକାଳ' କବିତାରେ ଏ ଜାତିକୁ ଯେଉଁ ଆହ୍ୱାନ ଦେଇଥିଲେ, ତାହା କିଏ ଶୁଣିଲା ।

ସେହିପରି ଆଳସ୍ୟ ପରାୟଣତା ଯେପରି ଆମ୍ଭମାନଙ୍କର ମଜାଗତ ହୋଇଯାଇଛି । ଅଳ୍ପକେ ସନ୍ତୁଷ୍ଟ ହେବାର ଅଭ୍ୟାସ ଆମକୁ ଆଳସ୍ୟ ପରାୟଣ କରିଦେଇଛି । କାର୍ଯ୍ୟର ସଫଳତା ପାଇଁ ନିଷ୍ଠା, ସାହସ, ଦୂରଦୃଷ୍ଟି, କର୍ତ୍ତବ୍ୟ ପରାୟଣତା ଓ ଆଳସ୍ୟ ପରିହାର ଆବଶ୍ୟକ ।

ଏହା ବଦଳରେ ପରସ୍ପର ଝଗଡା, ଈର୍ଷାପରାୟଣତା, ପରସ୍ପର ଗୋଡ ଟଣାଟଣି ଓ ଡରୁଆ ମନୋଭାବ ଆଜି ଏହି ପ୍ରାଚୀନ ରଣରଙ୍ଗା ଦୁର୍ଦ୍ଧର୍ଷ ଜାତିର ଦୁର୍ଗୁଣରେ ପରିଣତ ହୋଇ କାପୁରୁଷ ଜାତିରେ ପରିଣତ କରିଛି ।

ଶିକ୍ଷିତ ଲୋକଙ୍କ ପିଲାମାନେ ଆଉ ଓଡ଼ିଆ ସ୍କୁଲରେ ପଢୁନାହାନ୍ତି । ଓଡ଼ିଆ ଭାଷା ଲେଖିପଢି ଶିଖୁନାହାଁନ୍ତି । ଇଂରାଜୀ ମାଧ୍ୟମ ସ୍କୁଲରେ ପଢିବା ମାନିଆ ସଂକ୍ରମଣ ରୋଗପରି ରାଜ୍ୟସାରା ଶିକ୍ଷିତ ମହଲରେ ବ୍ୟାପି ଗଲାଣି । ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶା ଭାଷା ସାହିତ୍ୟକୁ ମାରିଦେବା ପାଇଁ ଚକ୍ରାନ୍ତ ଚାଲିଥିଲା । କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ଓଡ଼ିଆଭାଷା ଏକ ସ୍ୱତନ୍ତ୍ର ଭାଷା ନାୟେବେ ନାମକ ଏକ ପୁସ୍ତିକା ଛପାଇ ବାଣ୍ଟିଥିଲେ । କଟକ ଲ' କଲେଜ ଅଧ୍ୟାପକ ରାଜକୃଷ୍ଣ ହାଲଦାର ବିଦ୍ୟାଳୟଗୁଡିକରୁ ଓଡ଼ିଆ ଲିପି ଉଠାଇ ଦେବାକୁ ପ୍ରସ୍ତାବ ଦେଇଥିଲେ । କବିବର ଗୌରୀଶଙ୍କରଙ୍କ ଉତ୍କଳଦୀପିକା ଓ ଫକୀରମୋହନଙ୍କ ସମ୍ବାଦବାହିକା ଗର୍ଜିଉଠିଥିଲା ଓ ଚକ୍ରାନ୍ତକାରୀଙ୍କ ଚକ୍ରାନ୍ତ ପଣ୍ଡ ହୋଇଥିଲା । କିନ୍ତୁ ଏକବିଂଶ ଶତାବ୍ଦୀର ପ୍ରଥମ ପାଦରେ ଆଜି ଓଡ଼ିଆ ଭାଷା ଗୁରୁତର ସଂକଟର ସମ୍ମୁଖୀନ ହୋଇଛି । ଏକଥା କହିଲେ କୂଳ କୁଟୁମ୍ବଙ୍କୁ ଲାଜ ।

ଆଜି ଉତ୍କଳ ଦିବସ ଉପଲକ୍ଷେ ଉତ୍କଳଜନନୀର ସମ୍ମାନ ରକ୍ଷା ପାଇଁ ଓ ହୃତ ଗୌରବ ଫେରାଇ ଆଣିବା ପାଇଁ ଚାଲ ଆମ୍ଭେମାନେ ଏକମନ ହୋଇ କାର୍ଯ୍ୟ କରିବା ।

ଅଧ୍ୟକ୍ଷ, କାଜୁ ଉନ୍ନୟନ ନିଗମ
ଦ୍ୱିତୀୟ ମହଲା, ଏଫ୍–୪ବ୍ଲକ୍
ଇନ୍ଦ୍ରଧନୁ ମାର୍କେଟ୍, ଆଇଆଇସି ଭିଲେଜ
ଭୁବନେଶ୍ୱର–୭୫୧୦୧୫

❖ ❖ ❖

# ଦୁର୍ଗମ ଅଞ୍ଚଳରେ ନିରକ୍ଷରମାନଙ୍କୁ ସରକାରୀ ଯୋଜନା ସମ୍ପର୍କରେ ଲୋକକଳାକାରଙ୍କ ଦ୍ୱାରା ସଚେତନତା

ରାଜ୍ୟସ୍ତରୀୟ ଜିଲ୍ଲା କଳା ସଂସ୍କୃତି ସଂଘ ଓ ବ୍ଲକ୍ କଳା ସଂସ୍କୃତି ସଂଘମାନଙ୍କର ଏକ ରାଜ୍ୟସ୍ତରୀୟ କର୍ମଶାଳା ଭଞ୍ଜକଳା ମଣ୍ଡପଠାରେ ରାଜ୍ୟ ସଂସ୍କୃତି ବିଭାଗ ଓ ୟୁନିସେଫ୍‌ର ମିଳିତ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଯାଇଅଛି । ୟୁନିସେଫ୍‌ର ପ୍ରୋଗ୍ରାମ ଅଫିସର ପଦ୍ମାବତୀ ଓ୍ୱେଦିଆ ପ୍ରଦୀପ ପ୍ରଜ୍ୱଳନ କରି କର୍ମଶାଳାକୁ ଉଦ୍‌ଘାଟନ କରିଥିଲେ । ଦୁର୍ଗମ ଅଞ୍ଚଳ ଯେଉଁଠାରେ ରେଡିଓ, ଟିଭି ଓ ଖବରକାଗଜ ପହଞ୍ଚି ପାରିନାହିଁ, ସେଠାରେ ନିରକ୍ଷର ଜନସାଧାରଣଙ୍କୁ ବିଭିନ୍ନ ସରକାରୀ କାର୍ଯ୍ୟକ୍ରମ ସମ୍ପର୍କରେ ସାଂସ୍କୃତିକ କାର୍ଯ୍ୟକ୍ରମ ଦ୍ୱାରା ସଚେତନ କରିବା ପାଇଁ କିପରି ମନଛୁଆଁ କରାଯାଇ ପାରିବ ଓ କଳା ଚାତୁରୀ ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମଟି ସଫଳ ଭାବେ ପରିବେଷିତ ହୋଇପାରିବ ସେ ସମ୍ପର୍କରେ ଏହି କର୍ମଶାଳାରେ ତାଲିମ ପ୍ରଦାନ କରାଯିବ ବୋଲି ସେ କହିଥିଲେ ।

ସଂସ୍କୃତି ନିର୍ଦ୍ଦେଶକ ଶ୍ରୀ ସୁଶୀଲ ଦାସ କଳାକାରମାନଙ୍କୁ ରୋଜଗାରକ୍ଷମ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଅଞ୍ଚଳରେ ଲୋକକଳା କାର୍ଯ୍ୟକ୍ରମ ଜରିଆରେ ବିଭିନ୍ନ ଯୋଜନାର ପ୍ରଚାର ଓ ପ୍ରସାର ପାଇଁ ୧୭କୋଟି ଟଙ୍କା ବଣ୍ଟନ କରାଯାଇଛି ବୋଲି କହିଥିଲେ ।

ସଂସ୍କୃତି ବିଭାଗ ଉପନିର୍ଦ୍ଦେଶକ ବି.ପି. ରାୟ, ୟୁନିସେଫ୍‌ର ସଂଯୋଜିକା ଲୋପାମୁଦ୍ରା ତ୍ରିପାଠୀ ବକ୍ତବ୍ୟ ପ୍ରଦାନ କରିଥିଲେ ।

# ବିଜୁବାବୁ ଓ କଳିଙ୍ଗ

ନିର୍ମଳା କୁମାରୀ ମହାପାତ୍ର

''ଏକବିଂଶ ଶତାବ୍ଦୀରେ ଓଡ଼ିଶା ପ୍ରଦେଶ, ଓଡ଼ିଶା ରାଜ୍ୟ କିଭଳି ହେବା ଉଚିତ୍,ତା'ର ମୁଁ ଯେଉଁ ସ୍ୱପ୍ନ ଦେଖୁଛି ତାହା ହେଲା: ମୋ' ରାଜ୍ୟର ପ୍ରତ୍ୟେକଟି ନାରୀ ଓ ପୁରୁଷ ପାଇଁ ରାଜ୍ୟର ସ୍ୱାର୍ଥ ହିଁ ହେବ ସବୁବେଳେ ପ୍ରାଥମିକ । ନିଜ ସ୍ୱାର୍ଥକୁ ପଛରେ ରଖି ସେମାନେ ଓଡ଼ିଶାର ସ୍ୱାର୍ଥ ସାଧନ ନିମନ୍ତେ ବାହାରି ପଡିବେ । ସେମାନଙ୍କ ଭିତରେ ଭରି ରହିଥିବ ଆତ୍ମାଭିମାନ, ଆତ୍ମଗୌରବ । ନିଜ ଉପରେ ସେମାନଙ୍କର ଥିବ ଅଖଣ୍ଡ ଭରସା । ସେମାନେ ଅନ୍ୟ କାହାର ଦୟାର ପାତ୍ର ହୋଇ ଚଳୁ ନଥିବେ, କେବଳ ନିଜର ଅନୁକମ୍ପାର ପାତ୍ର ହୋଇଥିବେ । ସେମାନଙ୍କ ଦକ୍ଷତା, ବୁଦ୍ଧିମତ୍ତା ତଥା ମନ କଳିଙ୍ଗ ଇତିହାସର ମୋଡ ବଦଳାଇ ଦେବ, ସେମାନେ ସେହି ହୃତ-ଗୌରବକୁ ପୁଣି ଫେରାଇ ଆଣିପାରିବେ । ଏକବିଂଶ ଶତାବ୍ଦୀର ମୋ'ର ଓଡ଼ିଶାରେ ଥିବେ ଶ୍ରେଷ୍ଠଶିଳ୍ପୀ, ଭବ୍ୟ କାରିଗର ଓ ସ୍ଥପତି ତଥା ଶ୍ରେଷ୍ଠ ସଙ୍ଗୀତଜ୍ଞ ଓ କବି । ଏକଥା ଭୁଲିଗଲେ ଚଳିବ ନାହିଁ ଯେ ଆମେ ହିଁ ଗଢିଛୁ କୋଣାର୍କ । ଏହି ଓଡ଼ିଶା ବା କଳିଙ୍ଗ ମାଟିରେ ରଚିତ ହୋଇଛି ଗୀତଗୋବିନ୍ଦ । ଏଇ ହେଲା ସେଇ ଦେଶ, ଯେଉଁଠି ପଠାଣି ସାମନ୍ତଙ୍କ ପରି ମହାନ୍ ଗଣିତଜ୍ଞ ଜନ୍ମ ହୋଇଥିଲେ ଓ କୌଣସି ପ୍ରକାରର ଯନ୍ତ୍ରପାତିର ବିନା ସାହାଯ୍ୟରେ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ଚମକ ସୃଷ୍ଟି କରିଦେଇ ପାରିଥିଲେ । ମୁଁ ଏଭଳି ଏକ ଓଡ଼ିଶାର ସ୍ୱପ୍ନ ଦେଖୁଛି, ଯେଉଁଠି ଥିବେ ଅସାମାନ୍ୟ ପ୍ରତିଭାଶାଳୀ ଗଣିତଜ୍ଞ, ବିଜ୍ଞାନୀ, ମହାନ୍ କଳାକାର, ନୃତ୍ୟ ପ୍ରତିଭା ଓ ସଙ୍ଗୀତଜ୍ଞ, ଶ୍ରେଷ୍ଠ ସ୍ଥପତି ତଥା ମହାନ୍ ସଂସ୍କୃତିର ବାହକ ହୋଇଥିବା ନାରୀ ଓ ପୁରୁଷ । ଏଇଟି ହେଲା ମୋ' ଜୀବନର ସ୍ୱପ୍ନ ।



ମୋ' ସ୍ୱପ୍ନର ଓଡ଼ିଶାରେ ଜଣେ ହେଲେ ଚାଷୀର କ୍ଷେତ ଶୁଖିଲା ପଡିବ ନାହିଁ । ଆମ ମାଟିରେ ଥିବା ପ୍ରତ୍ୟେକଟି ବୁନ୍ଦାଜଳ ତା'ର ସେହି କ୍ଷେତକୁ ଯେପରି ଶସ୍ୟଶ୍ୟାମଳା କରି ଗଢି ତୋଳିବାରେ ସାହାଯ୍ୟ କରିବ ସେ ଦିଗରେ ଉଦ୍ୟମ କରିବାକୁ ହେବ । ଆଗାମୀ କାଲିର ଓଡ଼ିଶାରେ ଚାପାଗଳାରେ ବି କେହି କହୁ ନଥିବେ ଯେ ଜଣେ ମହିଳାଙ୍କ ପ୍ରତି ଅତ୍ୟାଚାର ହୋଇଛି । ନାରୀ ଓ ପୁରୁଷ ସମାନ ଅଧିକାର ପାଇଥିବା ଦିନ ମୁଁ ସ୍ୱପ୍ନ ଦେଖୁଛି । ସେମାନେ ସେତେବେଳେ ସମାନ କ୍ଷମତା ଓ ସୁଯୋଗର ଅଧିକାରୀ ହୋଇ ଉଠିଥିବେ । ଏକବିଂଶ ଶତାବ୍ଦୀର ମୋ' ସ୍ୱପ୍ନର ଓଡ଼ିଶାରେ ମୋ' ରାଜ୍ୟର ଜଣେ ହେଲେ ଶିଶୁ ଭୋକିଲା ନଥିବ କିମ୍ବା ଅପୁଷ୍ଟି ଦୋଷରୁ କଷ୍ଟ ଭୋଗ କରୁନଥିବ । ମୋ' ମାତୃଭୂମିରେ ସେତେବେଳକୁ ନଥିବ ନିରକ୍ଷରତା, ନା ଥିବ ଅଜ୍ଞତା ।''

ଉପରେ ଉଦ୍ଧୃତ କେତେଗୋଟି ବାକ୍ୟ ଥିଲା ଆମର ପ୍ରିୟ ବିଜୁବାବୁଙ୍କ ଅଭିଭାଷଣର କିୟଦଂଶ । ତାଙ୍କର ସ୍ୱପ୍ନର ଓଡ଼ିଶା ଶିକ୍ଷା-ସଂସ୍କୃତି-ସ୍ୱାସ୍ଥ୍ୟ-ଶିଳ୍ପ-ବାଣିଜ୍ୟ-ପ୍ରଯୁକ୍ତିବିଦ୍ୟା, ଅନୁସୂଚିତ ଜାତି-ଉପଜାତିର ବିକାଶ, ମହିଳା ସଶକ୍ତିକରଣ ଆଦି କ୍ଷେତ୍ରରେ ଉତ୍କର୍ଷ ହାସଲ କରିଥିବା କଥା ନେଇ ସେ ଯୋଜନାର ମାନଚିତ୍ର କରିଥିଲେ ।

କଟକ ମହାନଗରର ତୁଳସୀପୁରସ୍ଥିତ ଆନନ୍ଦଭବନରେ ମାତା ଆଶାଲତା ଓ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ପରିବାରରେ ଜନ୍ମିତ (୧୯୧୬, ମାର୍ଚ୍ଚ ୫ ତାରିଖ) ବିଜୟାନନ୍ଦ ପରବର୍ତ୍ତୀ କାଳରେ ବିଜୁ ପଟ୍ଟନାୟକ ନାମରେ ଦେଶ–ବିଦେଶରେ ସୁଖ୍ୟାତିର ଉତ୍ତୁଙ୍ଗ ପିରାମିଡ୍ ଶୀର୍ଷରେ ଉପନୀତ ହୋଇଥିଲେ । ଆମ ସମସ୍ତଙ୍କ ଅଲକ୍ଷ୍ୟରେ ତୁଳସୀପୁରର ସେଇ ଛକ ଏବେ ବିଜୁ ପଟ୍ଟନାୟକ ଛକ ନାମଧାରଣ କରି ପ୍ରବାଦ ପୁରୁଷ ବିଜୁବାବୁଙ୍କ ପ୍ରତି ଅଭୂମ ପ୍ରଣାମ ଜଣାଉଅଛି ଅବା । କଟକର ମିଶନସ୍କୁଲ, ରେଭେନ୍ସା କଲିଜିଏଟ୍ ହାଇସ୍କୁଲରେ ଶିକ୍ଷା ସମାପ୍ତ କରି ୧୯୩୨ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ବିଜୟାନନ୍ଦ ରେଭେନ୍ସା କଲେଜରେ ବି.ଏସ୍‌ସି ପଢୁଥିବା ବେଳେ ବିମାନଚାଳନା ଟ୍ରେନିଂରେ ଯୋଗ ଦେଇଥିଲେ । ସୁଯୋଗ୍ୟ ବୈମାନିକଭାବେ ୧୯୩୬ରେ ପାଇଲଟ୍ ଥିବା ବିଜୟାନନ୍ଦ ୧୯୩୮ରେ କାଶ୍ମୀରର ଏକ ଆଭିଜାତ୍ୟ ପରିବାରର କନ୍ୟା ଜ୍ଞାନଦେବୀଙ୍କୁ ବିବାହ କରିଥିଲେ । ସେ ୧୯୪୧ରେ ପିତୃବିୟୋଗ ଓ ତା' ପରବର୍ଷ ମାତୃବିୟୋଗର ଝଡ–ଝଞ୍ଜା ସହି ୧୯୪୩ରେ ନିଜର ଦକ୍ଷତା ବଳରେ ତତ୍କାଳୀନ ବଡଲାଟ ଲର୍ଡ ଆଲେଙ୍କର ପାଇଲଟ୍ ହେବାର ସୁଯୋଗ ହାସଲ କରିଥିଲେ ।

ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣକାରୀ ତୁଙ୍ଗନେତୃବୃନ୍ଦଙ୍କୁ ସାହାଯ୍ୟ କରିବା ଓ ତଥ୍ୟ ଯୋଗାଇବା ଯୋଗୁଁ ଦେଶପ୍ରେମୀ ବିଜୟାନନ୍ଦଙ୍କୁ ୧୯୪୩, ଜାନୁଆରୀ ୧୨ ତାରିଖରେ ଗିରଫ କରାଗଲା । ଚାକିରି ଗଲା । ଅତଏବ ସେ ବିଜୁ ପଟ୍ଟନାୟକ ଓ କମ୍ପାନୀ ଗଢ଼ି (୧୯୪୪) ଶିଳ୍ପ–ବାଣିଜ୍ୟ ବିନୋଦରେ ରତ ଥିବାବେଳେ ରାଜନୀତିକୁ ଛାଡି ନଥିଲେ । ଓଡ଼ିଶା ବ୍ୟବସ୍ଥାପକ ସଭାର ମେମ୍ବର ଭାବେ ନିର୍ବାଚିତ ହେଲେ ୧୯୪୬ରେ । ଘଟଣାକ୍ରମେ ପଣ୍ଡିତ ଜବାହରଲାଲ ନେହରୁଙ୍କ ସହଯୋଗୀ ଭାବେ ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଇ ନିଜର ଡାକୋଟା ବିମାନରେ ଏକମାତ୍ର ସହଯାତ୍ରୀ ପତ୍ନୀ ଜ୍ଞାନଦେବୀଙ୍କୁ ନେଇ ସୁଲତାନ ସାହାରିୟର ଓ ଡକ୍ଟର ମହମ୍ମଦ ହଟ୍ଟାଙ୍କୁ ଉଦ୍ଧାର କରିଥିଲେ । ବସ୍ତୁତଃ ଏହାଥିଲା ନିଜ ଜୀବନକୁ ବାଜି ଲଗାଇ ଏକ ଆହ୍ୱାନକୁ ସମ୍ମୁଖୀନ ହେବାର କାର୍ଯ୍ୟ । ପରବର୍ତ୍ତୀ କାଳରେ ଇଣ୍ଡୋନେସିଆର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଉପାଧିରେ ବିଜୁବାବୁଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା ୧୯୭୩ରେ । ପ୍ରଦତ୍ତ ହୋଇଥିଲା ଆନୁମାନିକ ଦଶହଜାର କୋଟି ଟଙ୍କାର ସଂପତ୍ତି, ଯାହାକୁ ସ୍ୱାଭିମାନୀ କଳିଙ୍ଗବୀର ନମ୍ରତାର ସହିତ ପ୍ରତ୍ୟର୍ପଣ କରିଦେଇଥିଲେ ।

ମହତ୍ ଲୋକମାନଙ୍କର ସାଧନ ଅକାରଣ ଯାଇ ନଥାଏ । ବିଜୁବାବୁଙ୍କର ସାହାଯ୍ୟ–ସହାନୁଭୂତିର ପ୍ରତିଦାନ ଇଣ୍ଡୋନେସିଆର ରାଷ୍ଟ୍ରପତିଙ୍କଠାରୁ ମିଳିଥିଲା ଭାରତ–ପାକିସ୍ଥାନ ଯୁଦ୍ଧବେଳେ । ବିଜୁବାବୁଙ୍କ ପରାମର୍ଶକ୍ରମେ ରାଷ୍ଟ୍ରପତି ସୁକର୍ଣ୍ଣ ପାକିସ୍ଥାନକୁ ଯୁଦ୍ଧଜାହାଜ ସାହାଯ୍ୟ କରିବାର ପ୍ରତିଶ୍ରୁତିରୁ ଓହରି ଯାଇଥିଲେ । ଫଳତଃ ଆମ ଦେଶ ପ୍ରତି ଥିବା ବିପଦ ଟଳିଯାଇଥିଲା । ପୁନଶ୍ଚ ସେଇ ବିଜୁବାବୁ ନିଜର ବ୍ୟକ୍ତିତ୍ୱ ବଳରେ ୧୯୬୧–୬୨ରେ ଚୀନ୍ ଆକ୍ରମଣ ବେଳେ ପ୍ରଧାନମନ୍ତ୍ରୀଙ୍କ ସ୍ୱତନ୍ତ୍ର ପ୍ରତିନିଧିଭାବେ ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି କେନେଡିଙ୍କୁ ପ୍ରଭାବିତ କରି ଭାରତ ପାଇଁ (ଚୀନ୍ ବିରୋଧରେ) ସାହାଯ୍ୟ ଘୋଷଣା କରାଇ ପାରିଥିଲେ । ଫଳତଃ ଚୀନ୍ ଭାରତରୁ ଏକତରଫା ତା'ର ସୈନ୍ୟ ପ୍ରତ୍ୟାହାର କରିନେଇଥିଲା । ଭାରତ–ଚୀନ୍ ଯୁଦ୍ଧବେଳେ ସେ ପ୍ରଧାନମନ୍ତ୍ରୀଙ୍କର ସ୍ୱତନ୍ତ୍ର ଯୁଦ୍ଧ ପରାମର୍ଶଦାତାଭାବେ ନିଯୁକ୍ତି ପାଇଥିଲେ । ଏହିପରି ଦେଖିଲେ ଜଣାଯିବ ତାଙ୍କର ଜୀବନ ଘଟଣାବହୁଳ ଜୁଆର ପରେ ଜୁଆରରେ ଭରା । କେନ୍ଦ୍ର ଇସ୍ପାତ ଓ ଖଣି ବିଭାଗର ମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ (ଦୁଇଥର) ବିରୋଧୀଦଳର ନେତା ଭାବେ ରାଜନୀତିର ଜଣେ ଦକ୍ଷ କର୍ଣ୍ଣଧାର ରୂପେ ସେ ଦେଶ–ବିଦେଶରେ ବେଶ୍ ପରିଚିତ । ଭାରତରତ୍ନ ହେବା ପାଇଁ ତାଙ୍କଠାରେ ଆଉ କି ଅଭାବ ଥିଲା ଯେ ??

ବିଜୁବାବୁ ୧୯୬୧–୬୩ ପ୍ରଥମଥର ମୁଖ୍ୟମନ୍ତ୍ରୀଭାବେ କାର୍ଯ୍ୟ କରିଥିଲେ । କାମରାଜ ନାଦାର ଆହ୍ୱାନ କ୍ରମେ କଂଗ୍ରେସ ଦଳକୁ ବଞ୍ଚାଇବାକୁ ଯାଇ ମୁଖ୍ୟମନ୍ତ୍ରୀ ପଦ ପରିତ୍ୟାଗ କରିଥିଲେ । ଏଇ ଦୁଇବର୍ଷ ଭିତରେ ପାରାଦ୍ୱୀପ ବନ୍ଦର, ଜାତୀୟ ରାଜପଥ ନଂ ୫(କ) (ସୁକିନ୍ଦାରୁ ପାରାଦ୍ୱୀପଯାଏ), ସୁନାବେଡା ମିଗ୍‌ବିମାନ କାରଖାନା, ହୀରାକୁଦର ଇଣ୍ଡାଲ ଆଲୁମିନା କାରଖାନା, ଯାଜପୁରର ଚାର୍ଜକ୍ରୋମ ଶିଳ୍ପ, ରାଉରକେଲାର ଯାନ୍ତ୍ରିକ ମହାବିଦ୍ୟାଳୟ, ସୈନିକ ସ୍କୁଲ, ଭୁବନେଶ୍ୱର, ଆଞ୍ଚଳିକ ଗବେଷଣାଗାର (ରିଜିଓନାଲ୍ ରିସର୍ଚ ଲାବ୍ରୋଟୋରୀ) ବର୍ତ୍ତମାନ ଏହାର ନାମ । ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ (ବର୍ତ୍ତମାନ ଏହାର ନାମ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ) ଓଡ଼ିଶା କୃଷି ଓ ବୈଷୟିକଶିକ୍ଷା ବିଶ୍ୱବିଦ୍ୟାଳୟ ଓୟୁଏଟି ଆଦି ସ୍ଥାପିତ ହୋଇପାରିଥିଲା ।

ବିଜୁବାବୁ ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ (୧୯୯୦–୯୫) ହେଲେ । ଏଇ ଅବଧିରେ ତାଙ୍କର କାର୍ଯ୍ୟଦକ୍ଷତା, କୁଶଳତା, ସମ୍ପାଦନାର ମୂଲ୍ୟାୟନ ପାଇଁ ଯଥେଷ୍ଟ ଶବ୍ଦର ଅକୁଳାଣ ଅନୁଭବ କରାଯାଏ । ରାଜ୍ୟରେ ତ୍ରି–ସ୍ତରୀୟ ପଞ୍ଚାୟତିରାଜ ପ୍ରବର୍ତ୍ତନର

ଉଦ୍ୟମ କରି ବୈପ୍ଳବିକ ପରିବର୍ତ୍ତନ ସେ ଆଣିପାରିଥିଲେ । ସେହିଁ ଦେଶର ପ୍ରଥମ ନେତା ଯେ କି ଆଦିବାସୀ ଓ ଦଳିତମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ସହ ମହିଳାମାନଙ୍କ ପାଇଁ ୩୩% ସ୍ଥାନ ସଂରକ୍ଷଣ କରିଥିଲେ । ଏତଦ୍ଦ୍ୱାରା ଗ୍ରାମପଞ୍ଚାୟତିସ୍ତର, ବ୍ଲକ ସ୍ତର (ପଞ୍ଚାୟତ ସମିତି ସ୍ତର) ଓ ଜିଲ୍ଲା ପରିଷଦ ସ୍ତର– ଏହିପରି ତିନି ସ୍ତରରେ ମହିଳାମାନେ ୩୩%ସ୍ଥାନ ପାଇପାରିଥିଲେ । ପରବର୍ତ୍ତୀ କାଳରେ ସେ ୩୩% ଜାଗାରେ ୫୦% କାହିଁକି ନକଲି ବୋଲି ଚିନ୍ତା କରିଥିଲେ । ଅବଶ୍ୟ ବର୍ତ୍ତମାନ ୫୦% ସ୍ଥାନ ମହିଳାମାନଙ୍କ ପାଇଁ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାରେ ରହିଗଲାଣି । ପ୍ରକାଶଥାଉ ରାଜନୀତିକ ମାରପେଞ୍ଚ ଯୋଗୁଁ ୧୯୬୭ ମସିହାରୁ ପ୍ରୋକ୍ତ ତ୍ରି–ସ୍ତରୀୟ ବ୍ୟବସ୍ଥାରୁ ଉପରସ୍ଥ ଜିଲ୍ଲା ପରିଷଦ ବ୍ୟବସ୍ଥାକୁ ଉଠାଇ ଦିଆଯାଇଥିଲା । ବିଜୁବାବୁଙ୍କ ପରି ଜଣେ ଅଭିଜ୍ଞ ଦକ୍ଷ ମୁଖ୍ୟମନ୍ତ୍ରୀଙ୍କ ଯୋଗୁଁ ଏଇ ବ୍ୟବସ୍ଥାରେ ଯଥେଷ୍ଟ ବିକାଶ ଘଟିଥିଲା । ବିଶେଷଜ୍ଞମାନଙ୍କ ମତରେ ଗୁଜୁରାଟ ପୂର୍ବତନ ମୁଖ୍ୟମନ୍ତ୍ରୀ ବଳବନ୍ତ ରାୟ ମେହେଟ୍ଟା ଥିଲେ ତ୍ରି–ସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ଜନକ । ମାତ୍ର ପଞ୍ଚାୟତ ଶିଳ୍ପ ଚିନ୍ତାଧାରା ଥିଲା ବିଜୟାନନ୍ଦ ପଟ୍ଟନାୟକଙ୍କର ମାନସ ସନ୍ତାନ ।

ଲଢିବାରେ ଦୁର୍ବାର, ଗଢିବାରେ ଅବଦମିତ ବରପୁତ୍ର ବିଜୁ ପଟ୍ଟନାୟକଙ୍କର 'କଳିଙ୍ଗ' ଶବ୍ଦ ପ୍ରତି ଥିଲା ଅଧିକତର ମମତ୍ୱବୋଧ । ଦୃଷ୍ଟାନ୍ତ ସ୍ୱରୂପ ରଖାଯାଇପାରେ କେତେଗୋଟି ଅନୁଷ୍ଠାନ, ପ୍ରତିଷ୍ଠାନର ନାମ ଯଥା– କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ, କଳିଙ୍ଗ ଏୟାରଲାଇନ୍ସ, କଳିଙ୍ଗ ଆଇରନ୍ ୱାର୍କସ୍, କଳିଙ୍ଗ ଟ୍ୟୁବ୍ସ କମ୍ପାନୀ, କଳିଙ୍ଗ ଦୈନିକ ସମ୍ବାଦପତ୍ର, କଳିଙ୍ଗ ଫୁଟବଲ୍ ଟୁର୍ଣ୍ଣାମେଣ୍ଟ, କଳିଙ୍ଗ ଷ୍ଟାଡିୟମ୍, ବିଜ୍ଞାନ କ୍ଷେତ୍ରରେ ସ୍ୱୀକୃତି ପାଇଁ କଳିଙ୍ଗ ପୁରସ୍କାର ଆଦି । ଏସବୁ ମୂଳରେ ରହିଛି ବହୁମୁଖୀ ପ୍ରତିଭାଧର କଳିଙ୍ଗବୀର ବିଜୁବାବୁଙ୍କର ସ୍ୱାକ୍ଷର, ନିର୍ଦ୍ଦେଶନା, ବଳବତୀ ଇଚ୍ଛାଶକ୍ତି । ଇଉନେସ୍କୋ (UNESCO) ଜରିଆରେ କଳିଙ୍ଗ ପୁରସ୍କାର ପ୍ରଚଳନ କରି ବିଶ୍ୱଦରବାରରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପରିଚୟ ସେ ପ୍ରଦାନ କରିଛନ୍ତି । ଏସବୁ ଦେଖି ଶୁଣି ଅବଲୀଳାକ୍ରମେ ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରସିଦ୍ଧ କବି ଡକ୍ଟର ମାୟାଧର ମାନସିଂହ ଥରେ କହିଥିଲେ– 'କଳିଙ୍ଗ ଶବ୍ଦଟିକୁ ବିଜୁ ପଟ୍ଟନାୟକ ଯେପରି ଲୋକପ୍ରିୟ କରାଇଛନ୍ତି, ସେପରି ଆଉ କେହି କରିନାହାଁନ୍ତି । ତାଙ୍କ ଜୀବନରେ ସେ ଯେଉଁସବୁ ଅନୁଷ୍ଠାନ, ପ୍ରତିଷ୍ଠା କରିଛନ୍ତି ସବୁଥିରେ କଳିଙ୍ଗ ଶବ୍ଦଟିକୁ ସଂଯୋଗ କରିବାରେ ଗର୍ବ ଅନୁଭବ କରନ୍ତି...' ।

ବିଜୁବାବୁ ଚାହୁଁଥିଲେ କଳିଙ୍ଗ ବିହାର ଜରିଆରେ ଅନୁସୂଚିତ ଜାତି, ଉପଜାତିର ପିଲାମାନଙ୍କୁ ଆବାସିକ ଶିକ୍ଷାଦାନର ବ୍ୟବସ୍ଥା କରିବା ପାଇଁ । ଆଜି କିଟ୍ ବିଶ୍ୱବିଦ୍ୟାଳୟ ଜରିଆରେ ପନ୍ଦର ହଜାର ସେହି ବର୍ଗର ପିଲାଏ ଆବାସିକ ଶିକ୍ଷାଲାଭ କରିବାର ସୁଯୋଗ ପାଉଛନ୍ତି । ମନେହୁଏ ବିଜୁବାବୁଙ୍କ ସ୍ୱପ୍ନ ସାକାର ହେଉଛି ।

ବିଜୁବାବୁ ଆଧୁନିକ ଓଡ଼ିଶାର ନିର୍ମାତା । ତାଙ୍କର ଚିନ୍ତା–ଚେତନାରେ ସ୍ୱଷ୍ଟ ହୁଏ ହେତୁବାଦ ଓ ବୈଜ୍ଞାନିକ ଦୃଷ୍ଟିକୋଣ । ଦେଶରେ ପରିଦୃଷ୍ଟ ନୈତିକ ଅବକ୍ଷୟ ପ୍ରତି ତାଙ୍କର ମନ୍ତବ୍ୟ ଥିଲା ନିମ୍ନମତେ । ଯଥା–

୧) ଦୁର୍ନୀତିଗ୍ରସ୍ତ ସରକାର ହିଁ ଦୁର୍ନୀତିର ସୁରକ୍ଷା କରିଥାନ୍ତି ।

୨) ଭାରତରେ ଅମଲାତନ୍ତ୍ର ସ୍ଥାଣୁ, କୌଣସି କାର୍ଯ୍ୟ ପାଇଁ ଏହାର ପ୍ରୟାସ ନାହିଁ । ଏଣୁ ବିଲୋପ ହେବା ଦରକାର ।

୩) ଆମେସବୁ ଯେଉଁଦିନ ଆତ୍ମପ୍ରଚାର ଭୁଲି ଆତ୍ମସମୀକ୍ଷା କରିବାକୁ ଶିଖିବା, ସେହିଦିନ ଭାରତର ରାଜନୀତି ନୂଆମୋଡ ନେବ ।

ବିଜୁବାବୁଙ୍କର ସଫଳତାରେ ଉଚ୍ଚ ପ୍ରଶଂସା କରାଯାଇଥିଲା । ସାଧାରଣ ଆଦିବାସୀ ମହିଳା ସୁମନ ଝୋଡିଆଙ୍କୁ ସେ ଜାତୀୟସ୍ତରରେ ପରିଚିତ କରାଇଥିଲେ । ନିରକ୍ଷର ହେଲେ ହେଁ ମୂଳକର ସମସ୍ୟା ବୁଝିଥିବା ମହିଳାମାନଙ୍କର ମତାମତ ନେଇ ସେ ସର୍ବନିମ୍ନ ମଜୁରି ନିର୍ଦ୍ଧାରଣ, ନିଶାମୁକ୍ତି, ବନଜାତ ଦ୍ରବ୍ୟର କିଣାବିକାରେ ସ୍ଥାନୀୟ ଲୋକଙ୍କୁ କରମୁକ୍ତି ସହ ଅଧିକାର ଦେଇଥିଲେ । ପଞ୍ଚାୟତିରାଜ ଦିବସରେ ମହିଳାମାନଙ୍କର ନିବେଦନ ଥିଲା– 'ପିଲାର ସବୁ ଜଞ୍ଜାଳ ମାଆ ମୁଣ୍ଡରେ । ଅଥଚ ନାମଲେଖା ରେଜିଷ୍ଟରରେ ବା ସାର୍ଟିଫିକେଟ୍‌ରେ ମାଆର ନାମ ରହୁନାହିଁ । ମାଆର ନାମ ରଖାଯିବାର ଆଜ୍ଞା ହେଉ ଆଜ୍ଞା ।'

ସ୍ମିତହସି ବିଜୁବାବୁ ଯେଉଁ ମଞ୍ଜୁରି ଦେଇଥିଲେ, ତାହା ଫଳରେ ତା ୨୨.୯.୧୯୯୨ରୁ ମାଆର ନାମ ସବୁ ରେଜିଷ୍ଟର ଓ ସାର୍ଟିଫିକେଟ୍‌ରେ ସ୍ଥାନ ପାଇ ଆସୁଅଛି । ଏହିପରି ନାନା ସଂସ୍କାର, ଉପକାର, କଲ୍ୟାଣକର କାର୍ଯ୍ୟରେ ବିମୋହିତ ଜନତା ତାଙ୍କୁ ପ୍ରଶଂସା କରୁଥିଲେ । ତା'ର ଉତ୍ତରରେ ସେ କହିଥିଲେ–

''ମୁଁ ଖାରବେଳ ଜାତିର ଦାୟାଦ । ପୁରୁଷୋତ୍ତମ ଜାତିର ବଂଶଧର । ମୋର ସଂସ୍କୃତି ଜଗନ୍ନାଥ ସଂସ୍କୃତି । ପରମ୍ପରା ହେଲା

ଜଗନ୍ନାଥ ପରମ୍ପରା । କଳାର ଉତ୍କର୍ଷ ପାଇଁ ମୋ ରାଜ୍ୟର ନାଆଁ କଳିଙ୍ଗ । ଏଇ କଳିଙ୍ଗ ମୋ' ମାଆ ପାଇଁ ନିଜ ଜୀବନ ବିନିମୟରେ ଯଦି କିଛି କରିପାରିଲି, ତାହାହିଁ ମୋ' ଜୀବନର ବଡ କର୍ତ୍ତବ୍ୟ । ବଡ ବ୍ରତ ।''

ଅପ୍ରେଲ ୧୭,୧୯୯୭ରେ ବିଜୁବାବୁଙ୍କର ଦେହାନ୍ତ ହୁଏ । ସମଗ୍ର ଦେଶ ସ୍ତବ୍ଧ ହୁଏ । ଉତ୍କଳ ପ୍ରସଙ୍ଗ ୧୯୯୭ ମଇ-ଜୁନ୍ ସଂଖ୍ୟାରେ ପ୍ରକାଶିତ କବିତା 'ସେ ଚିର ଅମର ମରଣ ଜୟୀ' (ପୃଷ୍ଠା–୦୬) ପ୍ରଶାସକ ଶ୍ରୀ ରବୀନ୍ଦ୍ରନାଥ ଦାସ ଲେଖନ୍ତି ନିମ୍ନମତେ ଯଥା–

ମୁକୁଟବିହୀନ କଳିଙ୍ଗ ସମ୍ରାଟ ପାରେନାହିଁ କେବେ ଶୋଇ
ଯାତ୍ରା କରିନି ରାତ୍ରି ସରିନି
କଳିଙ୍ଗରଥ ଅଟକିଲା କାହା ପାଇଁ ?
ତମେ ଥିଲ ପରା ଝଡର ଇଗଲ, ମାଟିର ମୂର୍ତ୍ତିକାର
ଚିର ସ୍ୱାଭିମାନୀ, ଶାଳପ୍ରାଂଶୁ ଯୋଦ୍ଧା
ସ୍ୱପ୍ନ ତୁମ ଦୁର୍ନିବାର ।
କିମ୍ବଦନ୍ତୀର ନାୟକ ତୁମେ ହେ ଲେଖିଗଲ ନୂଆ ଇତିହାସ
ଇଣ୍ଡୋନେସିଆର ଭୂମିପୁତ୍ର ତୁମେ ଚକିତ ହୋଇଛି ବିଶ୍ୱ
ନବକଳିଙ୍ଗର ନିର୍ମାତା ସେ ନିରବେ ଯାଇଛି ଶୋଇ
ପାରାଦୀପ କାନ୍ଦେ, ସୁନାବେଡା କାନ୍ଦେ, କାନ୍ଦୁଛି ବାଲିମେଳା
କେଉଁ ଅଭିମାନେ ସ୍ୱପ୍ନ ଅଧା କରି ଗଲାପୁତ୍ର ନ ବାହୁଡିଲା ।
ଅସମ୍ଭବ ସିଏ ସମ୍ଭବ କରିଲା ପରାଜୟ ଯିଏ ଜାଣେ ନାହିଁ
ମୃତ୍ୟୁ ଯାହାକୁ ଛୁଇଁ ପାରିବନି ସେ ଥିଲା ମରଣଜୟୀ ।'

ବିଜୁବାବୁଙ୍କ ତିରୋଧାନରେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଲେଖନ୍ତି ନିମ୍ନୋକ୍ତ ଭାବେ:

'ଦେଶ କେବଳ ଜଣେ ରାଜନୀତିଜ୍ଞଙ୍କୁ ନୁହେଁ, ଜଣେ ମହାରଥୀଙ୍କୁ ହରାଇଛି । ସେ ଜଣେ ଅଗ୍ରଣୀ ସ୍ୱାଧୀନତା ସଂଗ୍ରାମୀ, ଦକ୍ଷ ପ୍ରଶାସକ ଏବଂ ନୂତନ ଓଡ଼ିଶାର ନିର୍ମାତା । ଦେଶର ଆବଶ୍ୟକ ବେଳେ ସେ ଦଳୀୟ ରାଜନୀତିରୁ ଉର୍ଦ୍ଧ୍ୱକୁ ଯାଇ ଉପଦେଶ ପ୍ରଦାନ କରୁଥିଲେ, ଯାହା ଆଜିକାଲିର ରାଜନୀତିଜ୍ଞମାନଙ୍କ ମଧ୍ୟରେ କ୍ୱଚିତ୍ ଦେଖାଯାଏ । ଭାରତୀୟ ରାଜନୀତିର ଭୀଷ୍ମ ପିତାମହ ଆଉ ନାହାଁନ୍ତି ଭାବିଲାବେଳକୁ ମୁଁ ଶବ୍ଦ ପାଉନି କହିବାକୁ ।'

ଇଂରାଜୀ ସମ୍ବାଦପତ୍ର 'ଦି ହିନ୍ଦୁ' ଲେଖନ୍ତି ଏହିପରି ।

'ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହନୀୟ ପରମ୍ପରାର ସେ ପ୍ରତିନିଧିତ୍ୱ କରୁଥିଲେ । ଭାରତଛାଡ ଆନ୍ଦୋଳନର ସେ ଥିଲେ ଶେଷ ସାରଥୀ । ଦେଶର ସଙ୍କଟ ସମୟରେ ଜବାହରଲାଲ ନେହରୁ ଯେଉଁ କେତେକଙ୍କ ସହ ପରାମର୍ଶ କରୁଥିଲେ, ସେମାନଙ୍କ ମଧ୍ୟରେ ବିଜୁବାବୁ ଜଣେ ।'

ପ୍ରବାଦପୁରୁଷ ଜନନାୟକ ବିଜୁ ପଟ୍ଟନାୟକ ଥିଲେ ଦେଶ–ଦଶ ତଥା ବିଶ୍ୱର ଶୁଭଚିନ୍ତକ । ସାହସିକତାର ପ୍ରତୀକ । ତାଙ୍କର ଆତ୍ମବିଶ୍ୱାସ, ଆତ୍ମପ୍ରତ୍ୟୟ ଓ ସ୍ୱାଭିମାନର ଗାଥା ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ ହେଉ ।

ପଦଟୀକା: ଏକ ବିଂଶ ଶତାବ୍ଦୀରେ ମୋ' ସ୍ୱପ୍ନର ଓଡ଼ିଶା ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକଙ୍କର ୧୯୯୨ରେ ପ୍ରଥମ ବିନୋଦ କାନୁନ୍‌ଗୋ ସ୍ମାରକୀ ବକ୍ତୃତାଭାବେ ପ୍ରଦତ୍ତ ଲିଖିତ ଅଭିଭାଷଣ (ସୌଜନ୍ୟ ଜ୍ଞାନ ମଣ୍ଡଳ ଫାଉଣ୍ଡେସନ)

'ଉତ୍କଳ ପ୍ରସଙ୍ଗ/୧୯୯୭ ମେ–ଜୁନ୍ ସଂଖ୍ୟା– ପୃଷ୍ଠା–୬,'

ସହାୟକ ପୁସ୍ତକ:

୧) ଉତ୍କଳ ପ୍ରସଙ୍ଗ ୧୯୯୭, ୨୦୧୧(ଫେବ୍ରୁଆରୀ–ମାର୍ଚ୍ଚ)

୨) ବିଜୁବାବୁ/ ବିଶ୍ୱମୁକ୍ତି ପ୍ରକାଶନ, ଭୁବନେଶ୍ୱର

ସେକ୍ଟର–୨/୪୨୬
ନୀଳାଦ୍ରିବିହାର, ଭୁବନେଶ୍ୱର–୨୧

❖ ❖ ❖

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ କନିକାର ଅବଦାନ

ପ୍ରାଧ୍ୟାପକ ଶାନ୍ତନୁ କୁମାର ମହାନ୍ତି

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ କନିକାର ଐତିହାସିକ ଅବଦାନ କେଉଁ ଅଜ୍ଞାତ କାରଣରୁ ସବିଶେଷ ଆଲୋଚିତ ହୋଇପାରି ନାହିଁ । ଯେଉଁ ପ୍ରସଙ୍ଗ ସହିତ କନିକାବାସୀଙ୍କ ସ୍ୱାଭିମାନ ଏବଂ ଆତ୍ମସମ୍ମାନର ପ୍ରଶ୍ନ ଜଡିତ, ସେଥିପ୍ରତି ଗବେଷକ ଏବଂ ନେତୃବର୍ଗ ପ୍ରାୟତଃ ଆଖିବୁଜି ଦେଇଛନ୍ତି । ଓଡ଼ିଶାର ରାଜା ମହାରାଜାମାନଙ୍କୁ ସମ୍ମାନିତ କଲାବେଳେ ଆମେ ବୋଧହୁଏ ଜଣକୁ ଭୁଲିଯାଉଛୁ, ସେ ହେଉଛନ୍ତି କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ଭୂମିକା ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ।

୧୮୦୩ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ଅଧୀନକୁ ଓଡ଼ିଶା ଆସିବା ପରେ ଓଡ଼ିଆଭାଷୀ ଗଞ୍ଜାମ ଜିଲ୍ଲାକୁ ମାନ୍ଦ୍ରାଜ ପ୍ରେସିଡେନ୍ସିରେ, ସମ୍ବଲପୁର ଜିଲ୍ଲାକୁ ମଧ୍ୟପ୍ରଦେଶରେ ଏବଂ ଉପକୂଳବର୍ତ୍ତୀ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାକୁ ବଙ୍ଗଳା ପ୍ରେସିଡେନ୍ସିରେ ଯୋଡାଗଲା । ଓଡ଼ିଶାର ଏହି ଖଣ୍ଡବିଖଣ୍ଡିତ ଅବସ୍ଥା ବହୁ ଦଶନ୍ଧି ଧରି ଲାଗି ରହିଲା । କାରଣ ଏଥିସକାଶେ ଆନ୍ଦୋଳନ କରିବାକୁ ସେତେବେଳେ ଓଡ଼ିଶାରେ କୌଣସି ରାଜନୈତିକ ମଞ୍ଚ ନଥିଲା । ୧୮୮୨ ଖ୍ରୀ.ରେ ମଧୁସୂଦନ କଲିକତାରୁ କଟକ ଚାଲିଆସି 'ଉତ୍କଳ ଦୀପିକା'ର ସ୍ୱନାମଧନ୍ୟ ସମ୍ପାଦକ ଗୌରୀଶଙ୍କର ରାୟଙ୍କ ସହଯୋଗିତାରେ ସ୍ଥାପନ କଲେ ଓଡ଼ିଶାର ପ୍ରଥମ ରାଜନୈତିକ ମଞ୍ଚ 'ଉତ୍କଳ ସଭା' ବା 'ଓଡ଼ିଶା ଆସୋସିଏସନ୍' । ୧୮୮୬ରେ ନିଖିଳ ଭାରତ ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନରେ ମଧୁବାବୁ ଉତ୍କଳ ସଭା ତରଫରୁ ପ୍ରତିନିଧି ହୋଇ ଯୋଗ ଦେଇଥିଲେ । ୧୮୮୭ରେ ମାନ୍ଦ୍ରାଜଠାରେ ତୃତୀୟ ଅଧିବେଶନରେ ଓ ୧୮୮୮ରେ ଆହ୍ଲାବାଦ କଂଗ୍ରେସ ଅଧିବେଶନରେ ମଧୁବାବୁ ଉତ୍କଳ ସଭାର ପ୍ରତିନିଧି ରୂପେ ଯୋଗଦାନ କରିଥିଲେ । ଫଳରେ ତାଙ୍କ ପ୍ରତିଷ୍ଠିତ ଉତ୍କଳ ସଭା କ୍ରମେ ଜାତୀୟ କଂଗ୍ରେସରେ ମିଶି ଯାଇଥିଲା ।

ମଧୁବାବୁ ସେକାଳର ଜାତୀୟ କଂଗ୍ରେସ ନେତାମାନଙ୍କ ସହିତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆଲୋଚନା କରି ବିଫଳ ହେବାରୁ ୧୯୦୨ରେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ସହାୟତାରେ 'ଗଞ୍ଜାମ ଜାତୀୟ ସମ୍ମିଳନୀ' ଗଠନ କଲେ । ଏହାର ପ୍ରଥମ ଅଧିବେଶନ ୧୯୦୩ ମସିହା ଏପ୍ରିଲ ମାସରେ ବ୍ରହ୍ମପୁରଠାରେ ବସିଥିଲା । ଏଥିରେ ମଧୁସୂଦନ ଦାସ ମଧ୍ୟ ଯୋଗ ଦେଇଥିଲେ ।

ଜାତୀୟ ସମ୍ମିଳନୀର ଏହି ଅଧିବେଶନରେ ମଧୁସୂଦନଙ୍କ ନେତୃତ୍ୱରେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ବୈଧାନିକ ପନ୍ଥାରେ ବିଧିବଦ୍ଧ ଆନ୍ଦୋଳନ ପାଇଁ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଦେବ ପ୍ରସ୍ତାବ ଦେଇଥିଲେ । ମଧୁସୂଦନ କିନ୍ତୁ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କରୁ ପ୍ରତିନିଧିମାନଙ୍କୁ ଘେନି ଆଉ ଗୋଟିଏ ବୃହତ୍ତର ସମ୍ମିଳନୀ ଆୟୋଜନ କରିବା ପାଇଁ ଏଥିରେ ପ୍ରସ୍ତାବ ଦେଇଥିଲେ ଓ ତାହା ଉକ୍ତ ଅଧିବେଶନରେ ଅନୁମୋଦିତ ହୋଇଥିଲା । ଏହା ପୂର୍ବରୁ ରମ୍ଭା ରାଜପ୍ରାସାଦଠାରେ ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ବିଚାର ଆଲୋଚନା ପାଇଁ ଏକ ଛୋଟ ବୈଠକ ଆହୂତ ହୋଇଥିଲା । ପ୍ରକୃତ ପକ୍ଷେ ରମ୍ଭା ସମ୍ମିଳନୀ ଓ ବ୍ରହ୍ମପୁର ସମ୍ମିଳନୀ ମାନ୍ଦ୍ରାସ ପ୍ରେସିଡେନ୍ସି ଅନ୍ତର୍ଗତ ଗଞ୍ଜାମ ଜିଲ୍ଲାର ଓଡ଼ିଶା ସହିତ ମିଶ୍ରଣ ପାଇଁ ଉଦ୍ଦିଷ୍ଟ ଥିଲା । ମାତ୍ର ଏହି ପ୍ରସ୍ତାବଟି ତତ୍କାଳୀନ ଜାତୀୟ କଂଗ୍ରେସ ଅଧିବେଶନରେ ନାକଚ ହୋଇଯାଇ ପ୍ରେସିଡେନ୍ସି ବ୍ୟବସ୍ଥା କାଏମ ରହିବାକୁ ସ୍ଥିର ହେଲା । ଏହାପରେ ମଧୁବାବୁ କଂଗ୍ରେସ ସହିତ ଆନୁଷ୍ଠାନିକ ସମ୍ପର୍କ ଛିନ୍ନ କରି ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ଓ ସ୍ୱତନ୍ତ୍ର

ଓଡ଼ିଶା ପ୍ରଦେଶ ଗଠନ ଉଦ୍ଦେଶ୍ୟରେ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ପ୍ରାଦେଶିକ ସ୍ତରରେ ଗଠନ ପାଇଁ ଚିନ୍ତା କରିବାକୁ ଲାଗିଲେ । ସେଇଠୁ ଜନ୍ମଲାଭ କଲା 'ଉତ୍କଳ ସମ୍ମିଳନୀ' କଟକର କନିକା ରାଜବାଟୀରୁ । ଏ କ୍ଷେତ୍ରରେ ତାଙ୍କୁ ସହାୟତା କରିଥିଲେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ।

୧୯୦୩ ମସିହା ଅକ୍ଟୋବର ୧୫ତାରିଖରେ ଉତ୍କଳ ସମ୍ମିଳନୀର ଉଦୟରାଗ ଅନୁରଣିତ ହୋଇଥିଲା କଟକସ୍ଥ କନିକା ରାଜବାଟୀରୁ । ସେଦିନ ସେଠାରେ ଆହୂତ ଏକ ସାଧାରଣ ସଭାରେ ପ୍ରସ୍ତାବ ଗ୍ରହଣ କରାଗଲା ଯେ ଡିସେମ୍ବର ୩୦ ଓ ୩୧ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକରେ ଅନୁଷ୍ଠିତ ହେବ । ସେଥିପାଇଁ ଯେଉଁ କାର୍ଯ୍ୟନିର୍ବାହୀକା କମିଟି ଗଠନ କରାଯାଇଥିଲା ମଧୁବାବୁ ତାହାର ସମ୍ପାଦକ ଓ କନିକା ରାଜା ତାହାର ସଭାପତି ଥିଲେ । ବାମଣ୍ଡା ରାଜା ସାର୍ ବାସୁଦେବ ସୁଢଳଦେବ ପ୍ରଥମ ଅଧିବେଶନରେ ସଭାପତି ହେବାର ଥିଲା, କିନ୍ତୁ ସେହିବର୍ଷ ନଭେମ୍ବର ୧୯ତାରିଖରେ ତାଙ୍କର ପରଲୋକ ହୋଇଯାଇଥିବାରୁ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ସଭାପତି ପଦ ମଣ୍ଡନ କରିଥିଲେ । ଉକ୍ତ ସଭାରେ ଯୋଗଦାନ କରିବା ସକାଶେ ଓଡ଼ିଶା, ଗଞ୍ଜାମ, ସମ୍ବଲପୁର, ମେଦିନୀପୁର ଓ ଗଡଜାତରୁ ବହୁ ବିଶିଷ୍ଟ ବ୍ୟକ୍ତି ସମାଗତ ହୋଇଥିଲେ । ଓଡ଼ିଆମାନଙ୍କର ଅସନ୍ତୋଷର ପରିପ୍ରକାଶ ଘଟିଥିଲା ୧୯୦୩ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ । ଏହିଦିନ ରାଧାନାଥ ରାୟଙ୍କ ରଚିତ ସଂସ୍କୃତ ଭାରତଗୀତିକା 'ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଲ୍ପ ଲତେୟମ୍'... ପ୍ରଥମ ଥର ପାଇଁ ସମ୍ମିଳନୀ ମଣ୍ଡପରେ ଗାନ କରାଗଲା ।

ଏହିଭଳି ୧୯୦୩ ମସିହା ଡିସେମ୍ବର ୩୦ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକ ଇଦ୍‌ଗା ପଡିଆରେ ଅନୁଷ୍ଠିତ ହେଲା । ପ୍ରାରମ୍ଭରେ କାର୍ଯ୍ୟନିର୍ବାହୀକା କମିଟିର ସଭାପତି କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସଭାସ୍ଥଳରେ ସମୁପସ୍ଥିତ ସଭ୍ୟମାନଙ୍କୁ ସମ୍ବୋଧନ କରି କହିଲେ– 'ଆପଣମାନେ ଏତେ କଷ୍ଟ ସ୍ୱୀକାର କରି ନାନା ସ୍ଥାନରୁ ଶୁଭାଗମନ କରିଅଛନ୍ତି ଓ ଉତ୍କଳ ଭାଇମାନଙ୍କୁ ଏକାଠି ଦେଖି ମୁଁ ଯେପର୍ଯ୍ୟନ୍ତ ଆନନ୍ଦିତ ହୋଇଅଛି, ତାହା ବାକ୍ୟରେ ପ୍ରକାଶ କରିପାରୁନାହିଁ । ଆପଣମାନଙ୍କର ସୁଯୋଗ୍ୟ ଅଭ୍ୟର୍ଥନା କରିବା ପୁଣି ସମୁଚିତ ଚର୍ଚ୍ଚା କରିବା ମୋର ସାଧ ନୁହେଁ । ସେଥିରେ ସମସ୍ତ ତ୍ରୁଟି ଆପଣମାନେ ଉଦାରତା ସହିତ କ୍ଷମା କରିବେ ଏବଂ ମୋର ହୃଦୟର ଉପହାର ଗ୍ରହଣରେ ସନ୍ତୁଷ୍ଟ ହେବେ ।'

ସେଦିନ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଦେଶ ମିଶ୍ରଣ ଓ ଓଡ଼ିଆ ଭାଷା ଆନ୍ଦୋଳନ ଚାଲୁ ରଖିବାକୁ ସ୍ଥିର କରାଗଲା । ଏଥିରେ କେନ୍ଦୁଝରର ରାଜା ଧନଞ୍ଜୟ ନାରାୟଣ ଭଞ୍ଜଦେଓ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଜଣେ ଚିଫ୍ କମିଶନରଙ୍କ ଶାସନାଧୀନରେ ରଖିବା ପାଇଁ ପ୍ରସ୍ତାବ ଆଣିଥିଲେ । ତାହା ସର୍ବସମ୍ମତିକ୍ରମେ ଏହି ଅଧିବେଶନରେ ଗୃହୀତ ହୋଇଥିଲା । ଅନୁଷ୍ଠାନ ପାଇଁ ପ୍ରୋତ୍ସାହନ ଏବଂ ପୃଷ୍ଠପୋଷକତା ଯୋଗାଇ ଦେବାକୁ ୬୨ ଜଣ ସଭ୍ୟଙ୍କୁ ନେଇ ଏକ ସ୍ଥାୟୀ କମିଟି ଗଠିତ ହେଲା । ପୂର୍ବରୁ ପ୍ରସ୍ତାବିତ ସଂଗଠନ ପାଇଁ ପୃଷ୍ଠପୋଷକତା କରିବାକୁ ମୟୂରଭଞ୍ଜ ମହାରାଜା, ଖଲିକୋଟ ଏବଂ କନିକା ରାଜା ସମ୍ମତି ପ୍ରଦାନ କରିସାରିଥିଲେ । ମଧୁବାବୁ ତାଙ୍କ ଚିନ୍ତାଧାରାକୁ ବାସ୍ତବ ରୂପାୟନ ଦେବା ନିମିତ୍ତ କନିକା ରାଜାଙ୍କ ଭଳି ଯୁବବନ୍ଧୁଙ୍କୁ ବାଛିଥିଲେ । ତା'ଛଡା ରାଜେନ୍ଦ୍ର ନାରାୟଣଙ୍କ ଉପରେ ତାଙ୍କର ଯଥେଷ୍ଟ ପ୍ରଭାବ ଥିଲା । କନିକା ରାଜା ମଧ୍ୟ ଉତ୍କଳ ସମ୍ମିଳନୀ ପାଇଁ ଧନ ମନ ଦେଇ ଲାଗିଥିଲେ । କଟକର କନିକା ରାଜବାଟୀ ସମ୍ମିଳନୀର ପ୍ରଧାନ କାର୍ଯ୍ୟାଳୟ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉତ୍କଳ ସମ୍ମିଳନୀର ଦ୍ୱିତୀୟ ସଭାପତି ଧରାକୋଟ ରାଜା ମଦନମୋହନ ସିଂହଦେଓ ଏବଂ ତୃତୀୟ ସଭାପତି ତାଳଚେର ରାଜା କିଶୋର ଚନ୍ଦ୍ର ହରିଚନ୍ଦନ ଥିଲେ । ୧୯୦୬ ମସିହାରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ସମ୍ମିଳନୀର ଚତୁର୍ଥ ଅଧିବେଶନରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସଭାପତିତ୍ୱ କରିଥିଲେ । ବଡଖେମୁଣ୍ଡି ରାଜା କୃପାମୟ ଦେବ ଅଭ୍ୟର୍ଥନା ସମିତିର ସଭାପତି ଏବଂ ନରସିଂହ ଦାସ ସମ୍ପାଦକ ଭାବେ କାର୍ଯ୍ୟ ନିର୍ବାହ କରିଥିଲେ । ଉକ୍ତ ଅଧିବେଶନର ସଫଳତା ପାଇଁ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ସବୁମନ୍ତେ ଉଦ୍ୟମ କରିଥିଲେ । ସେହି ଅଧିବେଶନରେ ମାନ୍ଦ୍ରାଜ ସରକାରଙ୍କ ଦେଶ ମିଶ୍ରଣ ବିରୋଧୀ ମନୋଭାବର ତୀବ୍ର ନିନ୍ଦା କରାଯିବା ସଙ୍ଗେ ସଙ୍ଗେ ଦେଶ ମିଶ୍ରଣ ବାର୍ତ୍ତା ସର୍ବତ୍ର ପ୍ରଚାର କରିବା ନିମନ୍ତେ ସ୍ଥାୟୀ ପାଣ୍ଠି ଗଠନ କରାଯିବାକୁ ସ୍ଥିର କରାଗଲା । ସଭାପତି ଅଭିଭାଷଣରେ କନିକା ରାଜା ଦେଶରେ କୃଷି, ବାଣିଜ୍ୟ ତଥା ଶିଳ୍ପର ଅଭ୍ୟୁଦୟ ଲାଗି ବିଶେଷ ଚେଷ୍ଟା କରାଯିବା ଉଚିତ୍ ଏବଂ ଓଡ଼ିଆମାନେ ସବୁ କ୍ଷେତ୍ରରେ ଆଗଭର ହୋଇ ଚାଲିବାକୁ ହେବ ବୋଲି ଉତ୍ସାହବ୍ୟଞ୍ଜକ ବାଣୀ ଶୁଣାଇଥିଲେ । ଏହି ସମ୍ମିଳନୀ ଗଞ୍ଜାମ ଓଡିଆଙ୍କ ମନରେ ଆଶା ସଞ୍ଚାର କରିଥିଲା ଏବଂ ଅଣଓଡ଼ିଆଙ୍କ ମନରେ ବିଶେଷ ପ୍ରଭାବ ପକାଇଥିଲା । କନିକା ରାଜା ପ୍ରାୟ ୨ ଘଣ୍ଟା କାଳ ଦୀର୍ଘ ବକ୍ତୃତା ପ୍ରଦାନ କରିଥିଲେ ।

୧୯୦୭ ମସିହାରେ ମଧୁବାବୁ ଓ କନିକା ରାଜା ଏକତ୍ର ବିଲାତ ଯାତ୍ରା କରିଥିଲେ ଏବଂ ହାଉସ୍ ଅଫ୍ କମନସ୍ ସଭାର ସଭ୍ୟମାନଙ୍କୁ ଓଡ଼ିଆ ଜାତିର ଶୋଚନୀୟ ଅବସ୍ଥା ବୁଝାଇବାରେ ସକ୍ଷମ ହୋଇଥିଲେ । ସେତେବେଳେ କନିକା ରାଜା ଉତ୍କଳ ସମ୍ମିଳନୀରେ ସଭାପତି ଓ ମଧୁବାବୁ ସମ୍ପାଦକ ଥିଲେ । ବିଲାତରେ ପ୍ରାୟ ତିନିମାସ ରହଣୀ କାଳରେ ମଧୁବାବୁ ଉଏଲ୍‌ବୀ କମିଶନ ଆଗରେ ଭାଷା ଭିତ୍ତିରେ ପ୍ରଦେଶ ଗଠନ ସପକ୍ଷରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ତାଙ୍କର ଏହିସବୁ କାର୍ଯ୍ୟ ଲଣ୍ଡନ ସମ୍ବାଦପତ୍ରମାନଙ୍କରେ କିଛିଟା ପ୍ରକାଶିତ ହୋଇଥିଲା । ମାତ୍ର ଉଏଲ୍‌ବୀ କମିଶନ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଓଡ଼ିଶାର ବହୁଘୋଷିତ ଦାବି ସମ୍ପର୍କରେ ବିଶେଷ କିଛି କରିପାରି ନଥିଲେ ।

୧୯୧୦ରେ ରାଜେନ୍ଦ୍ର ନାରାୟଣ ବଙ୍ଗୀୟ କାଉନ୍‌ସିଲ୍ ସଦସ୍ୟଭାବେ ଅବସ୍ଥାପିତ ହେଲେ ଏବଂ ଉତ୍କଳ ସମ୍ମିଳନୀ ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଦୃଷ୍ଟି ଦେଲେ । ୧୯୧୧ ଖ୍ରୀ.ରେ ଦିଲ୍ଲୀରେ ଦରବାର ଉପଲକ୍ଷେ ଭାରତକୁ ଆସିଥିଲେ ସମ୍ରାଟ ପଞ୍ଚମ ଜର୍ଜ । ସେତେବେଳେ ବଙ୍ଗଳା ପ୍ରେସିଡେନ୍ସିର ବିଶାଳ ଆୟତନ ଦୃଷ୍ଟିରୁ ବିହାରକୁ ସେଥିରୁ କାଢ଼ିନେଇ ଅଲଗା କରିଦିଆଗଲା ଏବଂ ଓଡ଼ିଶାକୁ ବିହାର ସହିତ ବିହାର– ଓଡ଼ିଶା ପ୍ରଦେଶରେ ମାଡ଼ିମକଚି ରଖାଗଲା । ୧୯୧୨ରେ କନିକା ରାଜା ବିହାର– ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ସଭ୍ୟପଦ ପାଇଲେ । ୧୯୧୩ ମସିହାରେ ପୁରୀଠାରେ ସମ୍ମିଳନୀର ଯେଉଁ ଅଧିବେଶନ ଅନୁଷ୍ଠିତ ହୋଇଥିଲା ତାହାର ସଭାପତିତ୍ୱ କରିଥିଲେ ଉତ୍କଳଗୌରବ ମଧୁସୂଦନ ଦାସ । ସେହି ସଭାରେ ମଧୁବାବୁ ଯେଉଁ ପ୍ରାଣସ୍ପର୍ଶୀ ଉଦ୍‌ବୋଧନ ଦେଇଥିଲେ, ତାହା ରୋମାଞ୍ଚ ସୃଷ୍ଟି କରିଥିଲା । 'ଉତ୍କଳ ଜାତିର ଅର୍ଥ ଯେଉଁମାନେ ଆପଣାକୁ ଉତ୍କଳ ସନ୍ତାନ ବୋଲି ମନେ କରନ୍ତି ଏବଂ ଉତ୍କଳର ଅତୀତ ଗୌରବରେ ଯେଉଁମାନେ ଆପଣାକୁ ଗୌରବାନ୍ୱିତ କରନ୍ତି ଓ ଭାବୀ ଗୌରବକୁ ଆକାଂକ୍ଷା କରନ୍ତି, ସେହିମାନଙ୍କୁ ମୁଁ ଉତ୍କଳ ଜାତି ବୋଲି ମନେକରେ ।' ୧୯୧୪ ମସିହାରେ ଉତ୍କଳ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ଜୟପୁରର ମହାରାଜା ସୁସାହିତ୍ୟିକ, କବି ବିକ୍ରମଦେବ ବର୍ମା । ସେ ଥିଲେ କୃଷ୍ଣଚନ୍ଦ୍ର ଗଜପତିଙ୍କର ମାମୁଁ । ଏହି ଅଧିବେଶନ ପାରଳାଖେମୁଣ୍ଡିରେ ବସିଥିଲା ଏବଂ ଏହାର ସମ୍ପୂର୍ଣ୍ଣ ଆୟୋଜନ ନୂତନ ଅଭିଷିକ୍ତ ଗଜପତି ମହାରାଜାଙ୍କ ସାହାଯ୍ୟରେ ହୋଇଥିଲା ।

୧୯୧୬ ମସିହା ଡିସେମ୍ବର ମାସରେ ବାଲେଶ୍ୱରଠାରେ ଅନୁଷ୍ଠିତ ସମ୍ମିଳନୀର ଦ୍ୱାଦଶ ଅଧିବେଶନରେ ମଧୁସୂଦନ ଦାସ, ଗୋପବନ୍ଧୁ ଦାଶ, କନିକା ରାଜା, ହରିହର ପଣ୍ଡା, ବ୍ରଜସୁନ୍ଦର ଦାସ, ସୁଦାମ ଚରଣ ନାୟକ, ଗଞ୍ଜାମର ଶେରଗଡ ରାଜାଙ୍କୁ ନେଇ ସମ୍ବଳ ସଂଗ୍ରହ ନିମିତ୍ତ ଗୋଟିଏ କମିଟି ଗଠିତ ହେଲା । ୧୯୧୭ ମସିହା ମାର୍ଚ୍ଚ ୩୦ ଓ ୩୧ ତାରିଖରେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ସଭାପତିତ୍ୱରେ ସମ୍ମିଳନୀର କଟକ ଅଧିବେଶନ ବସିଲା । ସେତେବେଳେ କନିକା ରାଜା ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ସେହିବର୍ଷ ଡିସେମ୍ବର ମାସରେ ମଧୁବାବୁ ଓ କନିକା ରାଜା କଲିକତା ଯାତ୍ରା କରି ଷ୍ଟେଟ୍ ସେକ୍ରେଟେରୀ ମଣ୍ଟେଗୁ ଓ ଚେମସ ଫୋର୍ଡଙ୍କୁ ଭେଟିଥିଲେ ଓ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳର ଏକତ୍ରୀକରଣ ପାଇଁ ଏକ ସ୍ମାରକପତ୍ର ଦେଇଥିଲେ । କିନ୍ତୁ ଫଳ ନୈରାଶ୍ୟଜନକ ହେବା ହେତୁ ୧୯୧୮ ମସିହାରେ ସମ୍ମିଳନୀର ସ୍ୱତନ୍ତ୍ର କଟକ ଅଧିବେଶନରେ ମଧୁବାବୁ ଏହାର ତୀବ୍ର ନିନ୍ଦାବାଦ ଓ ପ୍ରତିବାଦ କରିଥିଲେ । ମଣ୍ଟେଗୁ– ଚେମ୍‌ସ୍‌ଫୋର୍ଡ ରିପୋର୍ଟରେ ଓଡ଼ିଆ ବିଚ୍ଛିନାଞ୍ଚଳ ପାଇଁ ଏକ ଉପ ପ୍ରଦେଶ ଗଢ଼ିବାକୁ ସୁପାରିଶ ହୋଇଥିଲା । ୧୯୧୮ରେ ମଧୁବାବୁ ଉତ୍କଳ ସମ୍ମିଳନୀ ସମ୍ପାଦକ ପଦରୁ ଇସ୍ତଫା ଦେଲେ ଓ ତାଙ୍କ ସ୍ଥାନରେ ବ୍ରଜସୁନ୍ଦର ଦାସ ସମ୍ପାଦକ ମନୋନୀତ ହେଲେ ।

୧୯୧୮ ମସିହାରେ ଉତ୍କଳ ସମ୍ମିଳନୀର ୧୪ଶ ଅଧିବେଶନ କଟକରେ ପଣ୍ଡିତ ଗୋପବନ୍ଧୁଙ୍କ ସଭାପତିତ୍ୱରେ ବସିଥିଲା । ଏହି ସମ୍ମିଳନୀରେ ଗୋପବନ୍ଧୁଙ୍କର ଐତିହାସିକ ଅଭିଭାଷଣ ଏକ ମହାନ ଉତ୍କଳୀୟ ଜାତୀୟତାର ଅଗ୍ନୀଗର୍ଭ ବାଣୀ 'ମନେ ରଖିବାକୁ ହେବ, 'ଆମେମାନେ ପ୍ରଥମେ ମନୁଷ୍ୟ, ପରେ ଭାରତୀୟ ଏବଂ ସର୍ବ ଶେଷରେ ଓଡ଼ିଆ । ଏହି ଭାବ ମନରେ ନରଖିଲେ ଜାତୀୟ କ୍ରମବିକାଶ ଅସମ୍ଭବ ।' ୧୯୨୦ ମସିହାରେ ଇମ୍ପେରିଆଲ୍ କାଉନସିଲରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ସଚ୍ଚିଦାନନ୍ଦ ସିହ୍ନାଙ୍କ ଦ୍ୱାରା ଆଗତ ପ୍ରସ୍ତାବକୁ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସମର୍ଥନ କରନ୍ତେ ତାହା ଗୃହୀତ ହୋଇ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ସୁପାରିଶ କରାଗଲା ଯେ ମାନ୍ଦ୍ରାଜ, ବଙ୍ଗଳା ଓ ମଧ୍ୟପ୍ରଦେଶ ପ୍ରଭୃତିରେ ଥିବା ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ନେଇ ଏକ ଶାସନରେ ରଖାଯାଉ ।

୧୯୨୦ ମସିହା ଫେବୃୟାରୀ ୨୦ ତାରିଖ ଦିନ ୧୧ଟା ୩୫ ମିନିଟ୍ ସମୟରେ ଇଣ୍ଡିଆନ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ନିମିତ୍ତ ସଚ୍ଚିଦାନନ୍ଦ ସିହ୍ନାଙ୍କ ଦ୍ୱାରା ଆଗତ ପ୍ରସ୍ତାବକୁ ସମର୍ଥନ କରି କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଯେଉଁ ସୁଦୀର୍ଘ ବକ୍ତୃତା ପ୍ରଦାନ କରିଥିଲେ, ତାହା ପ୍ରଣିଧାନଯୋଗ୍ୟ ।

ସେ ତାଙ୍କ ବକ୍ତୃତା ମାଧ୍ୟମରେ ଓଡ଼ିଶା ପ୍ରଦେଶ ଗଠନର ଆବଶ୍ୟକତା ଓ ବିଗତ ବର୍ଷମାନଙ୍କର ଘଟଣାବଳୀ ଉଲ୍ଲେଖ କରିବା ସହ ଓଡ଼ିଶାର ୧୧ ଅୟୁତ ଲୋକଙ୍କ ମନ ଭିତରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରଶ୍ନ କିପରି ଉଙ୍କି ମାରୁଛି, ଓଡ଼ିଆ ଭାଷା ସାହିତ୍ୟ କିପରି ବିପଦାପନ୍ନ, ଓଡ଼ିଶାର ଜାତୀୟ ସ୍ୱାର୍ଥକୁ କିପରି ଜଳାଞ୍ଜଳି ଦିଆଯାଉଛି ଏବଂ ଆହୁରି ଅନେକ ପ୍ରସଙ୍ଗ ଦୃଢଭାବେ ଉପସ୍ଥାପିତ କରିଥିଲେ । ସେ ମଧ୍ୟ କହିଥିଲେ ଯେ ପ୍ରକୃତ ଓଡ଼ିଶା ଏହାର ଆଜିର ଭୂଗୋଳଠାରୁ ବଡ । ବିଖଣ୍ଡିତ ଓଡ଼ିଶାର ଏକତ୍ରୀକରଣ ସଂଘୀୟ ଭାରତ ଗଠନ ଦିଗରେ ଗୋଟିଏ ବଳିଷ୍ଠ ପଦକ୍ଷେପ ଅଟେ ଓ ହେବା ଉଚିତ । ସୁତରାଂ ଓଡ଼ିଆ ଲୋକଙ୍କୁ ଗୋଟିଏ ସ୍ୱତନ୍ତ୍ର ଗୋଷ୍ଠୀଭାବେ ମାନ୍ୟତା ଦିଆଯାଉ ବୋଲି ସେ ଶେଷ ବକ୍ତବ୍ୟରେ ଦର୍ଶାଇଥିଲେ ।

ଇତିମଧ୍ୟରେ ୧୯୨୦ ମସିହାରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଅଧିବେଶନରେ ଓଡ଼ିଆ ନେତାମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଇଥିଲା । ଗୋପବନ୍ଧୁ ଦାସ ଓ ତାଙ୍କ ସମର୍ଥକ ଉତ୍କଳ ସମ୍ମିଳନୀକୁ ଜାତୀୟ ସ୍ତରରେ ଭାରତୀୟ ଜାତୀୟ କଂଗ୍ରେସରେ ସମ୍ପୂର୍ଣ୍ଣ ରୂପେ ମିଶାଇ ଦେବାକୁ ଚାହିଁଥିଲେ । କିନ୍ତୁ 'ମୁକୁର' ପତ୍ରିକାର ସମ୍ପାଦକ ବାବୁ ବ୍ରଜସୁନ୍ଦର ଦାସଙ୍କ ନେତୃତ୍ୱରେ ଅନ୍ୟ ଏକ ଦଳ ସେହି ପ୍ରସ୍ତାବ ଗ୍ରହଣ କରିନଥିଲେ । ଏହି କାରଣରୁ ମଧୁସୂଦନ ଦାସ ଚକ୍ରଧରପୁର ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ଯାଇନଥିଲେ । ପୁରୀର ଓକିଲ ଜଗବନ୍ଧୁ ସିଂହ ଏଥିରେ ସଭାପତିତ୍ୱ କରିଥିଲେ । ଯାହାହେଉ, ଉତ୍କଳ ସମ୍ମିଳନୀରେ ଦେଶ ମିଶ୍ରଣ ଆନ୍ଦୋଳନ ଅଗ୍ରାଧିକାର ପାଇବ ବୋଲି ଅନେକ ଅଟଳ ରହିବାରୁ ଗୋପବନ୍ଧୁ ପ୍ରଭୃତି ଆଉ ଏହି ଅନୁଷ୍ଠାନରେ ରହି ନଥିଲେ । ସେ ଅସହଯୋଗ ଆନ୍ଦୋଳନରେ ବ୍ୟସ୍ତ ରହିଲେ । ଉତ୍କଳ ସମ୍ମିଳନୀ ରାଜନୀତିରୁ ଅଲଗା ରହି କାମ କଲା ।

୧୯୨୨ରେ ରାଜେନ୍ଦ୍ର ନାରାୟଣ ବିହାର-ଓଡ଼ିଶା ଏକ୍‌ଜିକ୍ୟୁଟିଭ୍ କାଉନସିଲ୍ ସଦସ୍ୟ ଭାବେ ଅବସ୍ଥାପିତ ହେଲେ । ସେହି ପଦ ପାଇବାରେ ସେ ପ୍ରଥମ ଓଡ଼ିଆ । ୧୯୨୪ରେ ଫିଲିପ୍-ଡଫ୍ କମିଶନ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ଥିବା ଓଡ଼ିଆ ଭାଷୀ ଅଞ୍ଚଳ ଓଡ଼ିଶାରେ ମିଶାଇବା ପାଇଁ ସୁପାରିଶ କଲେ । ଉକ୍ତ କାର୍ଯ୍ୟରେ ନିରଞ୍ଜନ ପଟ୍ଟନାୟକ, ଶଶିଭୂଷଣ ରଥ, ହରିହର ପଣ୍ଡା, ମଧୁସୂଦନ ପାଣିଗ୍ରାହୀ, ଖଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ, ସୁରଙ୍ଗୀ ରାଜା ଚକ୍ରପାଣି ବିଦ୍ୟାଧର ସାମନ୍ତ ପ୍ରଭୃତି ସହାୟତା କରିଥିଲେ। ୧୯୨୮ରେ ଭାରତର ଶାସନ ସଂସ୍କାର ପାଇଁ ସାର୍ ଜନ୍ ସାଇମନ୍‌ଙ୍କ ଅଧ୍ୟକ୍ଷତାରେ 'ସାଇମନ୍ କମିଶନ୍' ଗଠିତ ହେଲା, କିନ୍ତୁ ଯେତେବେଳେ କମିଶନ୍ ଓଡ଼ିଶା ଆସନ୍ତି ସେତେବେଳେ କଂଗ୍ରେସ୍ ନେତାମାନେ ଏହାକୁ ବୟକଟ୍ କରିଥିଲେ । କାରଣ ଏହାର ସମସ୍ତ ସଦସ୍ୟ ଇଂରେଜ ଥିଲେ କିନ୍ତୁ ମଧୁସୂଦନ ତାଙ୍କ ଦୂରଦୃଷ୍ଟିରେ ସ୍ପଷ୍ଟ କଳ୍ପନା କରିପାରିଥିଲେ, ସାଇମନ୍ କମିଶନକୁ ବର୍ଜନ କରିବାରେ କଂଗ୍ରେସର ରାଜନୈତିକ ଲାଭ ହୋଇପାରେ, ମାତ୍ର ଏଥିରେ ଓଡ଼ିଶାର ସମୂହ କ୍ଷତି ସୁନିଶ୍ଚିତ । ସେଥିପାଇଁ ସେ ବହୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ କଂଗ୍ରେସ ସମାଲୋଚନାକୁ ଖାତିର ନକରି କଟକ ସହରରେ ସାଇମନ୍ କମିଶନ୍‌ଙ୍କୁ ଅଭ୍ୟର୍ଥନା ଜଣାଇ କମିଶନ୍‌ଙ୍କ ନିକଟରେ ଓଡ଼ିଶା ପାଇଁ ସ୍ୱତନ୍ତ୍ର ପ୍ରଦେଶ ଗଠନର ଦାବି ଉପସ୍ଥାପିତ କରିଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି କମିଶନ୍‌କୁ ମାନ୍ଦ୍ରାଜଠାରେ ସ୍ୱାଗତ କଲେ ।

ଉତ୍କଳ ସମ୍ମିଳନୀ ପକ୍ଷରୁ ପାଟନାଠାରେ ବ୍ରଜସୁନ୍ଦର ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଲକ୍ଷ୍ମୀଧର ମହାନ୍ତି, ଭିକାରୀ ଚରଣ ପଟ୍ଟନାୟକ ପ୍ରଭୃତି କମିଶନ୍ ଆଗରେ ସାକ୍ଷ୍ୟ ଦେଲେ । ଯାହାଫଳରେ ସାଇମନ କମିଶନ୍‌ର ଅନ୍ୟତମ ସଭ୍ୟ ମେଜର ସି.ଆର.ଅଟ୍‌ଲିଙ୍କ ଅଧ୍ୟକ୍ଷତାରେ ଡକ୍ଟର ସରୱାଡି, ରାଜେନ୍ଦ୍ର ନାରାୟଣ, ଲକ୍ଷ୍ମୀଧର ମହାନ୍ତିଙ୍କୁ ନେଇ ସବ୍ କମିଟି ଗଠିତ ହେଲା । ଅଟ୍‌ଲି ସବ୍ କମିଟିର ପ୍ରସ୍ତାବ କ୍ରମେ ସାଇମନ୍ କମିଶନ୍ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସୁପାରିଶ କଲା । ତାକୁ ଆଧାର କରି ୧୯୩୧ ମସିହାରେ ଗଠିତ ଓଡ୍‌ନେଲ କମିଟି ମଧ୍ୟ ଅନୁରୂପ ମନ୍ତବ୍ୟ ପ୍ରକାଶ କରିଥିଲା । ଓଡ୍‌ନେଲ କମିଟି ଆଗରେ ଉତ୍କଳ ପ୍ରଦେଶ କଂଗ୍ରେସ ପକ୍ଷରୁ ପଣ୍ଡିତ ନୀଳକଣ୍ଠ ଦାସ ସାକ୍ଷ୍ୟ ଦେଇଥିଲେ । କିନ୍ତୁ ସୀମା ନିର୍ଦ୍ଧାରଣ ଓ ଆର୍ଥିକ ଦେୟକୁ କେନ୍ଦ୍ରକରି ଦୁଇଟି ସମସ୍ୟା ଉପୁଜିଲା । ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଯେକି ସେତେବେଳେ ବିହାର-ଓଡ଼ିଶାର ଅର୍ଥ ସଦସ୍ୟ ଥିଲେ, ଆର୍ଥିକ ସମସ୍ୟା ଦୂରୀଭୂତ କରିବା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ବ୍ରଜସୁନ୍ଦର ଦାସ ମଧ୍ୟ ସାଇମନ୍ କମିଶନ୍ ଆଗରେ ଦୃଢ ଯୁକ୍ତି କରିଥିଲେ ଯେ ନୂତନ ପ୍ରଦେଶ ଗଠିତ ହେଲେ ଓଡ଼ିଆମାନେ ନିଅଣ୍ଟ ଅର୍ଥ ବ୍ୟବସ୍ଥାକୁ ସମ୍ଭାଳି ନେବାରେ ସକ୍ଷମ ହେବେ ।

ଅଟ୍‌ଲି ସବ୍‌କମିଟି ରିପୋର୍ଟରେ ରାଜେନ୍ଦ୍ର କିନ୍ତୁ ସ୍ୱାକ୍ଷର କରିପାରିଲେ ନାହିଁ, କାରଣ ସେତେବେଳେ ସେ ବିହାର- ଓଡ଼ିଶାର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ ସଦସ୍ୟ ଥିଲେ । ଯାହାହେଉ ସେ ପାରଳା

ମହାରାଜାଙ୍କୁ ଉଭୟ ମାଡ୍ରାସ ଏବଂ ଓଡ଼ିଶାର ପ୍ରତିନିଧି ଭାବରେ ଲଣ୍ଡନ ଗୋଲ୍‌ଟେବୁଲ ବୈଠକରେ ଯୋଗଦେବା ପାଇଁ ପଠାଇବାକୁ ସକ୍ଷମ ହୋଇଥିଲେ ଯଦ୍ୱାରା କି ପରେ ଓଡ଼ିଶା ସହିତ ପାରଳାଖେମୁଣ୍ଡିର ମିଶ୍ରଣ ପ୍ରକ୍ରିୟା ସହଜ ହୋଇପାରିଥିଲା ।

୧୯୩୧–୩୨ରେ ଲଣ୍ଡନଠାରେ ଗୋଲଟେବୁଲ ବୈଠକ ବସିଲା । ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ବିଷୟରେ ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଓ ଖଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ଏବଂ ତାଙ୍କର ସହାୟକ ରୂପେ ଯାଇଥିବା ଭୁବନାନନ୍ଦ ଦାସ ଓ ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ ଦୃଢତାର ସହିତ ଓଡ଼ିଶାର ଦାବି ଉପସ୍ଥାପିତ କରିବା ଫଳରେ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ଗଞ୍ଜାମ, କୋରାପୁଟ, ଖଡିଆଳ ସମେତ କେତେକ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ସୁପାରିଶ କଲା । ପରିଶେଷରେ ୧୯୩୩ ମସିହା ମାର୍ଚ୍ଚ ୧୭ ତାରିଖରେ ହବାକ୍ କମିଟିର ସୁପାରିଶକ୍ରମେ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହୋଇଥିଲା । କିନ୍ତୁ ଓଡ଼ିଶାର ସୀମା ସଠିକ୍ ଭାବେ ନିର୍ଣ୍ଣୟ ହୋଇନଥିଲା । ସେଥିନିମିତ୍ତ ଭାରତ ସରକାରଙ୍କ ଦ୍ୱାରା ଓଡ଼ିଶା ଶାସନ କମିଟି ନିଯୁକ୍ତ ହେଲା । ସେହି କମିଟିକୁ ମଧୁବାବୁ ସ୍ୱତନ୍ତ୍ର ସଭ୍ୟ ରୂପେ ମନୋନୀତ ହୋଇଥିଲେ । କିନ୍ତୁ ସେତେବେଳକୁ କୁଳବୃଦ୍ଧ ରୁଗ୍‌ଣ ଓ ଶଯ୍ୟାଶାୟୀ । ଜୀବନ ବୀଣାର ତାର କଳଙ୍କି ଲାଗି ଆସିଲାଣି । ୧୯୨୮ରୁ ଗୋପବନ୍ଧୁ ଚାଲିଯାଇଥିଲେ । ୧୯୩୪ରେ ମଧୁବାବୁ ଚାଲିଗଲେ । ୧୯୩୬ ମସିହା ଏପ୍ରିଲ ମାସରେ ଗଠିତ ହେଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ । ସାର୍ ଜନ୍ ଅଷ୍ଟିନ୍ ହବାକ୍ ହେଲେ ଏହାର ପ୍ରଥମ ଗଭର୍ଣ୍ଣର ଯେ କି ଏକଦା କନିକା ରାଜାଙ୍କ ଘନିଷ୍ଠ ସହଯୋଗୀ ଥିଲେ ।

ଆଜିର ପରିସ୍ଥିତିରେ, ସେଦିନର ଜନନେତାମାନଙ୍କର ନିରବ ସାଧନା ଓ ସଂକଳ୍ପର କଳନା କରିହେବ ନାହିଁ । କିନ୍ତୁ ଭାରତର ସାମ୍ବିଧାନିକ ଇତିହାସରେ କୁଳବୃଦ୍ଧ ମଧୁସୂଦନ ଭାଷାଭିତ୍ତିକ ପ୍ରଦେଶ ଗଠନର ଯେ ଆଦ୍ୟ ପ୍ରବକ୍ତା ଥିଲେ, ତଥ୍ୟ ଦୃଷ୍ଟିରୁ ଏହା ଅସ୍ୱୀକାର କରିବାର ଉପାୟ ନାହିଁ । 'ଉତ୍କଳ ଦୀପିକା'ର ସମ୍ପାଦକ ଗୌରୀଶଙ୍କର ରାୟ, ଫକୀର ମୋହନ ସେନାପତି, କବି ରାଧାନାଥ ରାୟ, କବି ଗଙ୍ଗାଧର ମେହେର, କବି ମଧୁସୂଦନ ରାଓ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ବ୍ରଜସୁନ୍ଦର ଦାସ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଦେବାନ ବାହାଦୂର ଲକ୍ଷ୍ମୀଧର ମହାନ୍ତି, ସୁଦାମ ଚରଣ ନାୟକ ଓ ଆହୁରି ଅନେକଙ୍କର ଉଦ୍ୟମ ଓ ସଂଗ୍ରାମ ଓଡ଼ିଶା ପ୍ରଦେଶ ଗଠନର ଭିତ୍ତିଭୂମି ରୂପେ କାର୍ଯ୍ୟ କରୁଅଛି ।

କନିକା ରାଜା ମଧୁବାବୁଙ୍କର ଡାହାଣ ହାତ ଥିଲେ ଏବଂ ତାଙ୍କ ସହ କାନ୍ଧରେ କାନ୍ଧ ମିଳାଇ ଚାଲିଥିଲେ । ମଧୁବାବୁଙ୍କ ଦୂରଦୃଷ୍ଟି ଓ ଦିବ୍ୟଦୃଷ୍ଟିକୁ ସଫଳ ରୂପାୟନ ଦେବାଲାଗି ସେ ଧନ ମନ ଦେଇ ସବୁମନ୍ତେ ଲାଗିଥିଲେ । ତାଙ୍କ ବ୍ୟତିରେକ ସ୍ୱତନ୍ତ୍ର ପ୍ରଦେଶ ଗଠନ ସମ୍ଭବ ହୋଇନଥାନ୍ତା, କି ମଧୁବାବୁ ଓଡ଼ିଆମାନଙ୍କ ପାଇଁ ନିଜସ୍ୱ ଭୂଖଣ୍ଡଟିଏ ପାଇବାକୁ ସକ୍ଷମ ହୋଇନଥାନ୍ତେ । ମାୟାଧର ମାନସିଂହ ଯଥାର୍ଥରେ ଲେଖିଛନ୍ତି– ଓଡ଼ିଆ ଲୋକେ ଯଦି ପ୍ରକୃତରେ ଚାରି ଶତାବ୍ଦୀ ପରେ ନିଜସ୍ୱ ଭୂଖଣ୍ଡଟିଏ ପାଇଥାନ୍ତି, ତାହା ବହୁଳାଂଶରେ ଓଡ଼ିଆ ରାଜାମାନଙ୍କ ପରିଶ୍ରମର ଫଳ । ଏଇଠି ଗୋଟିଏ କଥା ଉଦ୍ଧୃତି କଲେ ବୋଧହୁଏ ଅପ୍ରାସଙ୍ଗିକ ହେବନାହିଁ । କେନ୍ଦ୍ରମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ୧୯୫୧ ମସିହା ଅକ୍ଟୋବର ମାସରେ ଲଣ୍ଡନ ଗସ୍ତ କାଳରେ ପ୍ରଧାନମନ୍ତ୍ରୀ ଅଟ୍‌ଲି ସାହେବଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । ସେତେବେଳେ ସେ ଯାହା କହିଲେ ତାହା ମହତାବଙ୍କ ଭାଷାରେ ଜାଣିଲେ ଦୁଃଖ ଲାଗେ ।

ଡଃ ମହତାବଙ୍କ କଥା ଶୁଣିଲା ପରେ ଅନୁଭବ ହୁଏ ଯେ ଆମେ ଓଡ଼ିଆମାନେ ସେମାନଙ୍କୁ ତ ଭୁଲିଗଲେ କିନ୍ତୁ ଅଟ୍‌ଲି ସାହେବ ଭୁଲି ନଥିଲେ । ତତ୍କାଳୀନ ଓଡ଼ିଶାର ଆଶା ଭରସାର ପ୍ରତୀକ କନିକା ରାଜା ରଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଉତ୍କଳୀୟ ଜାତୀୟତାର ବିଜୟ ବୈଜୟନ୍ତୀ ଉଡାଇଥିଲେ । ଉତ୍କଳ ମାତାର ସୁଯୋଗ୍ୟ ସନ୍ତାନ ମଧ୍ୟରେ ସେ ଥିଲେ ଅନ୍ୟତମ । ତାଙ୍କ ବ୍ୟତିରେକ ମଧୁବାବୁଙ୍କ ଚିନ୍ତା ଚେତନାର ସଫଳ ରୂପାୟନ ହୁଏତ ସମ୍ଭବ ହୋଇପାରିନଥାନ୍ତା । ଖଣ୍ଡ ବିଖଣ୍ଡିତ ଓଡ଼ିଶାର ଏକତ୍ରୀକରଣ, ଉତ୍କଳ ଜନନୀର ଦୁଃଖ ଦୁର୍ଦ୍ଦଶା ମୋଚନ ତାଙ୍କ ଶିରା ପ୍ରଶିରାରେ ଜଳଗଙ୍ଗାସମ ପ୍ରବାହିତ ହେଉଥିଲା । ହେଲେ ତାଙ୍କର ସମସ୍ତ କୃତି ଓ କୀର୍ତ୍ତି ଇତିହାସର ଧୂମ୍ରକୁଣ୍ଡଳୀ ମଧ୍ୟରେ ଆଚ୍ଛାଦିତ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ସ୍ୱତନ୍ତ୍ର ଭୂମିକା ଯୋଗୁଁ ସେ ସ୍ୱତନ୍ତ୍ର ସମ୍ମାନ ପାଇବାକୁ ଯୋଗ୍ୟ ।

ଚାନ୍ଦବାଲି ମହାବିଦ୍ୟାଳୟ
ଚାନ୍ଦବାଲି, ଭଦ୍ରକ–୭୫୬୧୩୩

# ଉତ୍କଳ ପ୍ରଦେଶ ଗଠନର ଅନ୍ୟତମ ବିନ୍ଧାଣି: ଜଗବନ୍ଧୁ ସିଂହ

ଶ୍ରୀନିବାସ ଆଚାର୍ଯ୍ୟ

ବଣରେ ମଲ୍ଲୀଫୁଲ ଫୁଟି ଝଡିପଡେ, କିନ୍ତୁ ତାର ପ୍ରାକୃତିକ ସୌନ୍ଦର୍ଯ୍ୟ ମାଧୁରୀ ଓ ସୁଗନ୍ଧ କେହି ଉପଲବ୍ଧି କରିପାରନ୍ତି ନାହିଁ । ଠିକ୍ ସେପରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ଓଡ଼ିଆ ଭାଷା, ସାହିତ୍ୟର ସୁରକ୍ଷା ତଥା ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ପବିତ୍ର ଯଜ୍ଞକୁଣ୍ଡରେ ଯେଉଁ କେତେଜଣ ଦେଶପ୍ରେମୀ ତଥା ଜାତୀୟତାବାଦୀ ମହାପୁରୁଷମାନେ ବହୁମୂଲ୍ୟ ସମୟ, ଶକ୍ତି, ସାମର୍ଥ୍ୟ ଉତ୍ସର୍ଗ କରି ପୂର୍ଣ୍ଣାଙ୍ଗ ଓଡ଼ିଶା ଗଠନ କରିବାରେ ସମର୍ଥ ହୋଇଥିଲେ, ସେମାନଙ୍କ ମଧ୍ୟରୁ କେତେଜଣ ଲୋକଲୋଚନକୁ ଆସିପାରି ନାହାନ୍ତି । ସେହିମାନଙ୍କ ମଧ୍ୟରେ ଆମ ଓଡ଼ିଶା ମାଟିର ଯୋଗ୍ୟତମ ସନ୍ତାନ ଜଗବନ୍ଧୁ ସିଂହ ଅନ୍ୟତମ । ସେ ଥିଲେ ଅଶେଷ ପ୍ରତିଭାର ଅଧିକାରୀ । ସେ ଥିଲେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଆଗଧାଡିର ଏକ ଦକ୍ଷ ସଂଗଠକ, ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଲଢୁଆ ବୀର, ନିସ୍ୱାର୍ଥପର ସମାଜସେବକ, ସୁଲେଖକ, ପ୍ରବୀଣ ସାହିତ୍ୟିକ, ଖ୍ୟାତନାମା ଆଇନଜ୍ଞ ଓ ଆଧ୍ୟାତ୍ମିକବାଦୀ ମହାପୁରୁଷ ।

ଜଗବନ୍ଧୁ ସିଂହଙ୍କ ଜନ୍ମ ପୂର୍ବରୁ ଓଡ଼ିଶା ତା'ର ପୂର୍ବ ଗର୍ବ ଓ ଗୌରବର ସତ୍ତା ହଜାଇ ଥିଲା । ଓଡ଼ିଶା ଭୂଖଣ୍ଡ ଖଣ୍ଡ ବିଖଣ୍ଡିତ ଅବସ୍ଥାରେ ବିଭିନ୍ନ ପ୍ରଦେଶ ଦ୍ୱାରା ଶାସିତ ହେଉଥିଲା । ଓଡ଼ିଶାର କେନ୍ଦ୍ରବିନ୍ଦୁ କଟକ, ପୁରୀ ଓ ବାଲେଶ୍ୱର ବିହାର ସହିତ ଗଞ୍ଜାମ, କୋରାପୁଟ ମାଡ୍ରାସ ପ୍ରେସିଡେନ୍ସି, ସମ୍ବଲପୁର, ବଲାଙ୍ଗୀର, ବରଗଡ ଓ ଝାରସୁଗୁଡା ଇତ୍ୟାଦି ଅଞ୍ଚଳ ମଧ୍ୟପ୍ରଦେଶରେ ମିଶି ଶାସିତ ହେଉଥିଲା । ଓଡ଼ିଆ ଭାଷା, ସାହିତ୍ୟର ମଧ୍ୟ କିଛି ଅସ୍ତିତ୍ୱ ନଥିଲା । ଫଳରେ ଓଡ଼ିଆ ଜାତିର ସ୍ୱାଭିମାନ ଧ୍ୱଂସାଭିମୁଖୀ ହୋଇଥିଲା । ୧୮୬୬ ମସିହାର କରାଳ ଦୁର୍ଭିକ୍ଷ ଓଡ଼ିଶାର ଆର୍ଥିକ ମାନଦଣ୍ଡକୁ ଦୁର୍ବଳରୁ ଦୁର୍ବଳତର କରିପକାଇଥିଲା । ସର୍ବୋପରି ଅତ୍ୟାଚାରୀ ଓ ବର୍ବରୋଚିତ ଇଂରେଜ ସରକାର ୧୮୦୩ ମସିହାରେ ଓଡ଼ିଶାର ଶାସନଗାଦୀ ଦଖଲ କରି ଏହାର ଆର୍ଥିକ, ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଭୌଗୋଳିକ ମାନଦଣ୍ଡକୁ ଭସ୍ମୀଭୂତ କରିପକାଇଥିଲା । ଓଡ଼ିଶାର ଏହି ଅଭିଶପ୍ତ, ଦୟନୀୟ ଓ ଘଡିସନ୍ଧି ମୁହୂର୍ତ୍ତରେ ୧୮୭୬ ମସିହା ଫେବୃଆରୀ ମାସ ୧୫ ତାରିଖରେ ପୁରୀ ଜିଲ୍ଲା ନିମାପଡା ଅନ୍ତର୍ଗତ ଭୁବନପୁର ଗ୍ରାମରେ ଏକ କ୍ଷତ୍ରୀୟ ପରିବାରରେ ପିତା ଜମିଦାର ଗୌରହରି ବିଧାର ଓ ମାତା ଚନ୍ଦ୍ରମଣି ଦେବୀଙ୍କର କୋଳମଣ୍ଡନ କରିଥିଲେ ପୁତ୍ର ଜଗବନ୍ଧୁ ସିଂହ ।

ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟଜୀବନରୁ ଜଗବନ୍ଧୁ ବାବୁ ଜଣେ ପ୍ରତିଭାବାନ ପୁରୁଷ ହେବାର ସୂଚନା ମିଳିଥିଲା । ତତ୍କାଳୀନ ଶିକ୍ଷା ରୀତିନୀତି ଅନୁସାରେ ଜଗବନ୍ଧୁ ଗ୍ରାମ ଚାଟଶାଳୀରେ ମାଟିବଂଶ ଅବଧାନଙ୍କ ପାଖରେ ଅକ୍ଷର ଶିକ୍ଷା, ସଂଖ୍ୟାଲିଖନ, ମିଶାଣ, ଫେଡାଣ, ଗୁଣନ, ହରଣ ଓ ପଣିକିଆ ଇତ୍ୟାଦି ଅଳ୍ପ ସମୟରେ ନିର୍ଭୁଲ ଭାବରେ ଶିକ୍ଷା ଶେଷକରି ନିମାପଡାସ୍ଥିତ ପ୍ରାଇମେରୀ ସ୍କୁଲରେ ଜଣେ ମେଧାବୀ ଛାତ୍ର ଭାବରେ ପଞ୍ଚମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ନିକଟରେ ଉଚ୍ଚଶିକ୍ଷାର ବ୍ୟବସ୍ଥା ନଥିବାରୁ ପିତା ଗୌରହରି ପୁତ୍ରର ପାଠପଢାରେ ଡୋରି ବାନ୍ଧିବା ପାଇଁ ଚିନ୍ତା କଲେ । କିନ୍ତୁ ଜଗବନ୍ଧୁବାବୁ ଜିଦ୍‌ଧରି ଗୋପଠାରେ ଥିବା ମାଇନର ସ୍କୁଲରେ ଅଧ୍ୟୟନ କରିଥିଲେ । ସେତେବେଳେ ମାଇନର ପରୀକ୍ଷାରେ ଉତ୍ତୀର୍ଣ୍ଣ ପାଇଁ ଏକ ସେଣ୍ଟର ପରୀକ୍ଷା ଦେବାକୁ ପଡୁଥିଲା । ଜଗବନ୍ଧୁ ବାବୁଙ୍କର ସେଣ୍ଟର ପଡିଥିଲା ଖୋର୍ଦ୍ଧାଠାରେ। ସେହିପରି ଉତ୍କଳମଣି ଗୋପବନ୍ଧୁ ଦାସ ପଢୁଥିବା ବଳଙ୍ଗାସ୍ଥିତ ରୂପଦେଈପୁର ମାଇନର ସ୍କୁଲର ମଧ୍ୟ ସେଣ୍ଟର ପଡିଥିଲା ଖୋର୍ଦ୍ଧାରେ । ଏହି ଦୁଇବନ୍ଧୁଙ୍କର ପ୍ରଥମ ମିଳନ ଆଣିଦେଇଥିଲା ସମଗ୍ର ଓଡ଼ିଶାବାସୀଙ୍କର ଆର୍ଥିକ, ସାମାଜିକ, ସାଂସ୍କୃତିକ ଭୌଗୋଳିକ ତଥା ରାଜନୈତିକ ମାନଦଣ୍ଡର ବିପୁଳ ପରିବର୍ତ୍ତନ । କାରଣ

ଉଭୟଙ୍କର ନୀତି, ଆଦର୍ଶ, କାର୍ଯ୍ୟକଳାପ, ଆଚାର ବ୍ୟବହାର ମଧ୍ୟରେ କିଛି ଭିନ୍ନତା ନଥିଲା । ଗୋପ ମାଇନର ସ୍କୁଲରେ ପଢିବା ଅବସରରେ ଜଗବନ୍ଧୁଙ୍କର ସାକ୍ଷାତ ହୋଇଥିଲା ଭକ୍ତକବି ମଧୁସୂଦନ ରାଓଙ୍କ ସହିତ । ମଧୁସୂଦନ ରାଓ ଜଗବନ୍ଧୁଙ୍କ ଉପରେ ପ୍ରୀତ ହୋଇ କେତେଗୁଡିଏ ଉପଦେଶ ପ୍ରଦାନ କରିଥିଲେ । ଏହି ନୀତିବାଣୀ ଥିଲା– ମନଦେଇ ପାଠପଢ଼, ଯେତେ ପଢିବ ତୁମର ପରିସର ସେତେ ବୃଦ୍ଧି ହେବ ଓ ସମାଜକୁ ଯେତେ ଚିହ୍ନିବ, ତୁମର ପ୍ରତିଷ୍ଠା ସେତେ ବୃଦ୍ଧି ହେବ । ଏହି ନୀତି ଆଦର୍ଶରେ ପ୍ରଭାବିତ ହୋଇଥିଲେ ଜଗବନ୍ଧୁ ବାବୁ ।

୧୮୯୧ ମସିହାରେ ମାଇନର ପାଶ୍ କରି ଉଚ୍ଚଶିକ୍ଷା ପାଇଁ ଜଗବନ୍ଧୁ ମନ ବଳାଇ ଥିଲେ । ପୂର୍ବପରି ଅଧିକ ପାଠ ନପଢି ଘରର ଜମିବାଡି ତଦାରଖ କରିବା ପାଇଁ ତାଙ୍କୁ ପିତା ଗୌରହରି ପରାମର୍ଶ ଦେଇଥିଲେ । ପିତାଙ୍କ କଥାରେ ଏକମତ ନହୋଇ ଜିଦ୍ କରି ପୁରୀ ଜିଲ୍ଲା ସ୍କୁଲରେ ଏଣ୍ଟ୍ରାନ୍ସ ପଢିବା ପାଇଁ ନାମ ଲେଖାଇ ଦେଲେ । ସେ ସ୍ୱାବଲମ୍ବୀ ହୋଇ ପୁରୀ ସହରରେ କେତୋଟି ଟିଉସନ କରି ତାଙ୍କର ପଢିବା ଓ ଖାଇବା ଖର୍ଚ୍ଚ ନିର୍ବାହ କରୁଥିଲେ । ଗୋପବନ୍ଧୁ ଦାସ ମଧ୍ୟ ସେଠାରେ ଅଧ୍ୟୟନ କରୁଥିଲେ । ଉଭୟ ମିଳିମିଶି ସହରର ସଫେଇ, ସମାଜ ସେବା ଓ ରିଲିଫ କାର୍ଯ୍ୟରେ ସମୟ ଉତ୍ସର୍ଗ କରୁଥିଲେ । ଉଭୟ ମିଳିମିଶି ସହରର ସଫେଇ, ସମାଜ ସେବା ଓ ରିଲିଫ କାର୍ଯ୍ୟରେ ସମୟ ଉତ୍ସର୍ଗ କରୁଥିଲେ । ୧୮୯୬ ମସିହାରେ ଅଭାବ ଅନଟନ ଓ ବହୁ ଅସୁବିଧାର ସମ୍ମୁଖୀନ ହୋଇ ଏଣ୍ଟ୍ରାନ୍ସ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଦୃଢ ଇଚ୍ଛାଶକ୍ତି ଓ ସଂକଳ୍ପବଦ୍ଧ ମନୋବଳ ନିଶ୍ଚିତ ମଣିଷକୁ ବଡ କରାଇଥାଏ । ଉଚ୍ଚଶିକ୍ଷାରୁ ଜଗବନ୍ଧୁ ପଛକୁ ନଚାହିଁ ଆଗକୁ ଆଗକୁ ମାଡିଯାଇଥିଲେ । ସେ କଟକର ରେଭେନ୍ସା କଲେଜରେ ଏଫ୍.ଏ. ପାଶ୍‌କରି ବି.ଏ. ପଢିବା ପାଇଁ ନାମ ଲେଖାଇଥିଲେ । ଦୁର୍ଭାଗ୍ୟବଶତଃ ପିତା ଗୌରହରିଙ୍କର ମୃତ୍ୟୁ ତାଙ୍କର ଶିକ୍ଷାଦାନ କ୍ଷେତ୍ରରେ ବ୍ୟାଘାତ ସୃଷ୍ଟି କରିଥିଲା । ତାଙ୍କ ଉପରେ ଘରର ଜମିବାଡି ଦାୟିତ୍ୱ ପଡିଥିଲା । ତତ୍‌ପରେ ସେ ୧୯୦୧ ମସିହାରେ ଓକିଲାତି ବିଦ୍ୟାରେ କୃତକାର୍ଯ୍ୟ ହୋଇଥିଲେ ।

୧୯୦୧ ମସିହାରେ ମଧୁବାବୁ ଜଗବନ୍ଧୁଙ୍କ ଉପରେ ଖୁସି ହୋଇ ନିଜର ଜୁନିୟର ଓକିଲଭାବେ ନିଯୁକ୍ତ କରିଥିଲେ । ୧୯୦୩ ମସିହାରେ ମଧୁବାବୁ ଓଡ଼ିଆ ଜାତି ଓ ଭାଷାର ଉନ୍ନତି ପାଇଁ ଉତ୍କଳ ସମ୍ମିଳନୀ ନାମକ ଏକ ସଂଗଠନର ପ୍ରାଣ ପ୍ରତିଷ୍ଠା କରିଥିଲେ । ତେଣୁ ଜଗବନ୍ଧୁବାବୁ ତାଙ୍କ କର୍ମମୟ ଜୀବନର ପ୍ରଥମାର୍ଦ୍ଧରେ ମଧୁବାବୁଙ୍କ ସହିତ ମିଶି ଓଡ଼ିଆ ଜାତି ଓ ଭାଷା ତଥା ଜାତୀୟ ଜୀବନ ଉପରେ ଯଥେଷ୍ଟ ପ୍ରଭାବିତ ହୋଇ ନିଜର ସମଗ୍ର ଜୀବନକୁ ସ୍ୱଜାତି ଓ ଦେଶ ସେବାରେ ଉତ୍ସର୍ଗ କରିଦେଲେ । ୧୯୦୪ ମସିହାରେ ତାଙ୍କର ବଡମାଆଙ୍କର ମୃତ୍ୟୁ ଫଳରେ ସେ କଟକଛାଡି ନିମାପଡା ନିଜ ଗ୍ରାମକୁ ଫେରି ଆସିଥିଲେ । ମଧୁବାବୁଙ୍କଠାରୁ ବିଦାୟ ନେଇ ଆସିବା ଅବସରରେ ମଧୁବାବୁ ତାଙ୍କୁ କେତେକ ମହତ୍‌ବାଣୀ କହିଥିଲେ, ଯାହାକି ତାଙ୍କ କର୍ମମୟ ଜୀବନରେ ପରିବର୍ତ୍ତନ ହୋଇଥିଲା । ତାହା ଥିଲା ଭାଷା ବଞ୍ଚିଲେ ଜାତି ବଞ୍ଚିବ । ଜାତି ବଞ୍ଚିଲେ ଦେଶ ସମୃଦ୍ଧିଶାଳୀ ହେବ । ତୁମେ ଯେଉଁଠାରେ ଥାଅ ପଛେ ଓଡ଼ିଆ ଜାତି ଓ ଭାଷା ପାଇଁ କିଛି କାମ କରିବ । ଏହି କେତେକ ଉପଦେଶ ବାଣୀ ଜଗବନ୍ଧୁଙ୍କ ମନରେ ଗଭୀର ରେଖାପାତ କରିଥିଲା ।

ଜଗବନ୍ଧୁବାବୁ ପୁରୀକୁ ନିଜର କର୍ମମୟ ଜୀବନ ରୂପେ ଆଦରି ନେଇଥିଲେ । ସେ ଥିଲେ ସ୍ୱାଧୀନଚେତା । କହିବାଠାରୁ କାର୍ଯ୍ୟ କରିବାକୁ ବେଶୀ ଭଲ ପାଉଥିଲେ । ତେଣୁ ସେ ସଭାସମିତି କରିବା ଓ ଭାଷଣ ଦେବାଠାରୁ ଘର ଘର ବୁଲି ଲୋକମାନଙ୍କର ଦୁଃଖରେ ସାହାଯ୍ୟ କରିବା ସହିତ ରାସ୍ତାଘାଟ, ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି କାମ କରିବାକୁ ପସନ୍ଦ କରୁଥିଲେ । ପୁରୀରେ ତାଙ୍କର ସହଯୋଗୀ ତଥା ପରମବନ୍ଧୁ ଗୋପବନ୍ଧୁବାବୁଙ୍କ ସହିତ ହାତ ମିଳାଇ ସେ ସମସ୍ତ କାର୍ଯ୍ୟ କରୁଥିଲେ । ଓଡ଼ିଆ ଭାଷା ଓ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ କାର୍ଯ୍ୟକୁ ସେ ଅଧିକ ଗୁରୁତ୍ୱ ଦେଉଥିଲେ । ଏପରିକି ପୁରୀଠାରେ ଅନୁଷ୍ଠିତ ହୋଇଥିବା ଦୁଇଦୁଇଟି ଉତ୍କଳ ସମ୍ମିଳନୀ ଅଧିବେଶନରେ ସେ ଅଭ୍ୟର୍ଥନା କମିଟିର ସଭାପତି ଦାୟିତ୍ୱ ସୁଚାରୁ ରୂପେ ସମ୍ପାଦନା କରିଥିଲେ । ୧୯୧୯ ମସିହାରେ ପୁରୀଠାରେ ହୋଇଥିବା ଅଧିବେଶନରେ ଏକ ଉଚ୍ଚକୋଟୀର ପ୍ରସ୍ତାବ ଉପସ୍ଥାପନ କରି ପ୍ରଶଂସିତ ହୋଇଥିଲେ । ଏହାଥିଲା– ଦୁର୍ଭିକ୍ଷର କରାଳ ଚିତ୍ରର ନିରାକରଣ । ଏହି ପ୍ରସ୍ତାବଟି ସର୍ବସମତିକ୍ରମେ ଗୃହୀତ ହୋଇ ଏକ କମିଟି ଗଠନ ହୋଇଥିଲା । ଏହି କମିଟିରେ ଜଗବନ୍ଧୁବାବୁଙ୍କ ସମେତ ଗୋପବନ୍ଧୁ ଦାସ, ଲକ୍ଷ୍ମୀନାରାୟଣ ସାହୁ ଓ ଶଶିଭୂଷଣ ରଥ ସଦସ୍ୟ ରହି ଏକ ପ୍ରସ୍ତାବ ଇଂରେଜ ସରକାରଙ୍କୁ ଅର୍ପଣ କରିଥିଲେ । ସବୁଠାରୁ ତାଙ୍କର ଭଲଗୁଣ ଥିଲା ସେ ଯାହା କୁହନ୍ତି ତାହା କାର୍ଯ୍ୟରେ ପରିଣତ ନକରିବା ପର୍ଯ୍ୟନ୍ତ ନିଷ୍ଠା ରଖିଥାନ୍ତି । ଜଗବନ୍ଧୁବାବୁ ପ୍ରତ୍ୟେକ ଅଧିବେଶନରେ ଓଡ଼ିଆ ଭାଷା ଓ ଜାତି ସମ୍ପର୍କରେ ପ୍ରସ୍ତାବମାନ ଦେଇ ତାହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଅହରଣ ସଂଗ୍ରାମ ଜାରି ରଖିଥିଲେ । ଓଡ଼ିଶା ଉପକୂଳରେ ଥିବା ଲବଣମରା କେନ୍ଦ୍ରମାନ ଉଠିଯିବା ଫଳରେ ଶତଶତ କର୍ମଜୀବୀମାନଙ୍କର ଆର୍ଥିକ ମାନଦଣ୍ଡ

ଦୁର୍ବଳ ହୋଇଛି । ତେଣୁ ଏହିସବୁ କେନ୍ଦ୍ରକୁ ପୁନର୍ବାର କାର୍ଯ୍ୟକାରୀ କରିବା ପାଇଁ ଇଂରେଜ ସରକାରଙ୍କୁ ଏକ ପ୍ରସ୍ତାବ ଦିଆଯାଉ । ଏହିପରି ଓଡ଼ିଆ ଜାତି ଓ ଭାଷାର ସର୍ବାଙ୍ଗୀନ ଉନ୍ନତି ପାଇଁ ଗଠନମୂଳକ କାର୍ଯ୍ୟରେ ତାଙ୍କ ମନ ବ୍ୟସ୍ତ ଓ ବିବ୍ରତ ହୋଇଯାଉଥିଲା । ୧୯୨୧ ମସିହାରେ ଜଗବନ୍ଧୁବାବୁ ଚକ୍ରଧରପୁରଠାରେ ହୋଇଥିବା ସମ୍ମିଳନୀରେ ସଭାପତି ଆସନ ଅଳଙ୍କୃତ କରି ଉଚ୍ଚକୋଟୀର ଭାଷଣ ମାଧ୍ୟମରେ ସୁପ୍ତ ଓଡିଶାବାସୀଙ୍କୁ ଜାଗ୍ରତ କରାଇଥିଲା । ଓଡ଼ିଆ ଜାତି ଓ ଭାଷାର ଉନ୍ନତି ପାଇଁ ଜଗବନ୍ଧୁବାବୁଙ୍କ ଅବଦାନ ଅବିସ୍ମରଣୀୟ ।

୧୯୨୦ ମସିହାରେ ନାଗପୁରଠାରେ ହୋଇଥିବା ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗଦେବା ପାଇଁ ଓଡ଼ିଶା ତରଫରୁ ପ୍ରତିନିଧିତ୍ୱ କରୁଥିବା ସଦସ୍ୟମାନଙ୍କ ମଧ୍ୟରେ ଜଗବନ୍ଧୁବାବୁ ଥିଲେ ଅନ୍ୟତମ । ଏହାଥିଲା ଓଡ଼ିଶା ପ୍ରଦେଶ ଜାତୀୟ ସ୍ତରୀୟ କଂଗ୍ରେସରେ ଯୋଗ ଦେବାର ସର୍ବପ୍ରଥମ । ଏଥିରେ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଜଗବନ୍ଧୁବାବୁଙ୍କ ସମେତ ଭଗୀରଥି ମହାପାତ୍ର, ହରେକୃଷ୍ଣ ମହତାବ, ନିରଞ୍ଜନ ପଟ୍ଟନାୟକ, ଯଦୁମଣି ମଙ୍ଗରାଜ, ମୁକୁନ୍ଦ ପ୍ରସାଦ ଦାସ ଯୋଗ ଦେଇଥିଲେ । ଏହି ସମ୍ମିଳନୀରେ ଭାଷାଭିତ୍ତିକ ପ୍ରଦେଶ ଗଠନ ନୀତି ଗୃହୀତ ହୋଇଥିଲା । ଯାହାକି ଓଡ଼ିଶା ପାଇଁ ଏକାନ୍ତ ଆବଶ୍ୟକ ଥିଲା । ତେଣୁ ଓଡ଼ିଶା କଂଗ୍ରେସ କମିଟି ପରିବର୍ତ୍ତେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି କରାଯାଇଥିଲା । ଓଡ଼ିଶା ତରଫରୁ ଜଗବନ୍ଧୁବାବୁ ଏହି ସମ୍ମିଳନୀରେ ଜାତୀୟ ସ୍ତରୀୟ କମିଟିକୁ ସଦସ୍ୟ ରୂପେ ମନୋନୀତ ହୋଇଥିଲେ । ଏହି ନବଗଠିତ ପ୍ରାଦେଶିକ ସ୍ତରୀୟ କମିଟି ଦ୍ୱାରା ପ୍ରତ୍ୟେକ ଜିଲ୍ଲାରେ କଂଗ୍ରେସର ନୀତି ଆଦର୍ଶକୁ ପ୍ରଚାର ଓ ପ୍ରସାର କରିବା ପାଇଁ ସଭ୍ୟମାନ ମନୋନୀତ ହୋଇଥିଲେ । ପୁରୀ ଜିଲ୍ଲା ପାଇଁ ଜଗବନ୍ଧୁ ବାବୁ ଓ କୃପାସିନ୍ଧୁ ହୋତା ମନୋନୀତ ହୋଇଥିଲେ । ଏହି ଦୁଇବନ୍ଧୁ ଅବିଭକ୍ତ ପୁରୀ ଜିଲ୍ଲାରେ ସମସ୍ତ କେନ୍ଦ୍ର ସ୍ଥାନରେ ସଭା ସମିତିମାନ କରି କଂଗ୍ରେସର ନୀତି ଆଦର୍ଶରେ ସମସ୍ତ ଜନତାଙ୍କୁ ଅନୁପ୍ରାଣିତ କରାଇଥିଲେ । ଭାରତ ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ମହାତ୍ମା ଗାନ୍ଧୀଙ୍କ ପାଖରେ ଜଗବନ୍ଧୁବାବୁଙ୍କର ବ୍ୟକ୍ତିତ୍ୱ ଓ ସରଳ ନିଷ୍ପାପର ଗୁଣ ଉଚ୍ଚ ସୋପାନରେ ଉପନୀତ ହୋଇ ପାରିଥିଲା । ଫଳରେ ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନ ଡାକରାରେ ଓଡ଼ିଶାବାସୀ ସମ୍ପୂର୍ଣ୍ଣ ରୂପେ ସହଯୋଗ କରିଥିଲେ ।

ମଧୁବାବୁ ଓ ଜଗବନ୍ଧୁବାବୁ ପରସ୍ପର ଥିଲେ ଗୁରୁ ଓ ଶିଷ୍ୟ ତୁଲ୍ୟ । ସଦାସର୍ବଦା ଜଗବନ୍ଧୁ ବାବୁ ମଧୁବାବୁଙ୍କୁ ଗୁରୁର ସମ୍ମାନ ପ୍ରଦର୍ଶନ କରୁଥିଲେ । କିନ୍ତୁ ୧୯୨୦ ମସିହାରେ ଜଗବନ୍ଧୁ ବାବୁ ସର୍ବଭାରତୀୟ ସ୍ତରରେ କଂଗ୍ରେସର ସଭ୍ୟ ହେବା ଫଳରେ ସମସ୍ତ ସମୟ ଦେଶ ସ୍ୱାଧୀନତା କାର୍ଯ୍ୟରେ ବିନିଯୋଗ କଲେ । ଫଳରେ ଜଗବନ୍ଧୁ ବାବୁ ଉତ୍କଳ ପ୍ରଦେଶ ଗଠନ ତଥା ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ସେତେଟା ସମୟ ଦେଇପାରିଲେ ନାହିଁ । ଯାହାଫଳରେ କି ମଧୁବାବୁ ଜଗବନ୍ଧୁଙ୍କ ଉପରେ ବିରକ୍ତ ହୋଇଥିଲେ ମଧ୍ୟ ସମ୍ପର୍କ ତୁଟାଇ ନଥିଲେ । ମଧୁବାବୁଙ୍କ ମୃତ୍ୟୁ ସମୟରେ ଜଗବନ୍ଧୁ ବାବୁ କଟକ ଆସି ଅତ୍ୟନ୍ତ ମର୍ମାହତ ହେବା ସଙ୍ଗେ ସଙ୍ଗେ ଶବ ଶୋଭା ଯାତ୍ରାରେ ଗୋରା କବର ପର୍ଯ୍ୟନ୍ତ ଯାଇଥିଲେ । ସେ ମଧୁବାବୁଙ୍କୁ କେତେ ଭଲ ପାଉଥିଲେ ପରବର୍ତ୍ତୀ ସମୟରେ ତାଙ୍କ ଲିଖିତ 'ଭାରତ ଚରିତାମୃତ' ପୁସ୍ତକରେ ଉଲ୍ଲେଖ ରହିଛି–

ଓଡ଼ିଶାର ବରପୁତ୍ର ଶ୍ରୀ ମଧୁସୂଦନ,
ଉତ୍କଳରେ ସମ୍ମିଳନୀ କରିଥିଲେ ଜାଣ

ମଧୁବାବୁ ଥିଲେ ଜଣେ ପ୍ରକୃତ ଓଡ଼ିଆ
ଥିଲା ତାହାଙ୍କର ବୁଦ୍ଧି ବହୁତ ବଢିଆ
ସ୍ୱଦେଶ ଶିଳ୍ପ ଉଦ୍ଧାରେ ଥିଲା ତାଙ୍କ ଚିତ୍ତ
ସ୍ୱାଧୀନ ଚିନ୍ତାରେ ମନ ଦିଅନ୍ତି ନିୟତ

ଯାବତ ଓଡ଼ିଆ ଇତିହାସ ରହିଥିବ,
ମଧୁ ଯଶ କୀର୍ତ୍ତି ଇତିହାସ ଗାଉଥିବ ।

ସଦା ସର୍ବଦା ଗୋପବନ୍ଧୁବାବୁ ଓ ଜଗବନ୍ଧୁବାବୁ ଆଗପଛ ହୋଇ ମାନବ ସେବା ତଥା ବନ୍ୟା, ବାତ୍ୟା, ମରୁଡି, ଦୁର୍ଭିକ୍ଷ ପ୍ରପୀଡିତ ଜନତାଙ୍କ ପେଟକୁ ଖାଦ୍ୟ, ଶରୀରକୁ ପୋଷକ ଓ ମୁଣ୍ଡ ଗୁଞ୍ଜିବାକୁ ବାସ ଇତ୍ୟାଦି ଯୋଗାଉଥିଲେ । ୧୯୧୮–୧୯୧୯ ମସିହାରେ ପୁରୀ ଜିଲ୍ଲାରେ ହୋଇଥିବା କରାଳ ଦୁର୍ଭିକ୍ଷର ଚିତ୍ରରେ ଜଗବନ୍ଧୁ ବାବୁ ଅତ୍ୟନ୍ତ ମ୍ରିୟମାଣ ହୋଇଥିଲେ । ଓକିଲାତି ବ୍ୟବସାୟକୁ ବନ୍ଦ କରି ମାସ ମାସ ଧରି ସାକ୍ଷୀଗୋପାଳ, ପିପିଲି, ନିମାପଡା, ଗୋପ, କୋଣାର୍କ, କାକଟପୁର, ଅସ୍ତରଙ୍ଗ ଇତ୍ୟାଦିରେ ଥିବା ସମସ୍ତ ଗ୍ରାମରେ ଡେରା ପକାଇ ଭୋକିଲା ପେଟକୁ ଖାଦ୍ୟ ଓ ରୋଗୀମାନଙ୍କୁ ଔଷଧ ବଣ୍ଟନ କରିଥିଲେ । ସରକାରଙ୍କ ଉପରେ ଚାପ ପକାଇ ରିଲିଫ୍ ବଣ୍ଟନର ସୁବନ୍ଦୋବସ୍ତ କରାଇଥିଲେ । ଏତଦ୍‌ବ୍ୟତୀତ ବିଭିନ୍ନ ବଡ ବଡ ଅନୁଷ୍ଠାନ, ଜମିଦାର, ମଜନ୍ଦମା, ମଠ ଇତ୍ୟାଦିରୁ ରିଲିଫ ସାମଗ୍ରୀ ଆଦାୟ କରି ସ୍ୱେଚ୍ଛାସେବକ ବାହିନୀ ମଧ୍ୟରେ ପ୍ରପୀଡିତ ଅଞ୍ଚଳରେ ସୁବଣ୍ଟନ କରାଇବା ତାଙ୍କର ଥିଲା ମୁଖ୍ୟ କାର୍ଯ୍ୟ । ସେ ରାଜ୍ୟସ୍ତରୀୟ ସମସ୍ତ ଜନ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରି ସାଧାରଣ ଜନତାଙ୍କୁ ଯଥାଚିତ ନ୍ୟାୟ ପ୍ରଦାନ କରିବା ପାଇଁ ଅହରହ ସଂଗ୍ରାମ

ଜାରି ରଖିଥିଲେ । କନିକାର ପ୍ରଜାମେଳି, ଲବଣ ସତ୍ୟାଗ୍ରହ, ଓଡ଼ିଶାରେ କଂଗ୍ରେସ ଅଧିବେଶନ, ଆଇନ ଅମାନ୍ୟ ଆନ୍ଦୋଳନ, ଚାଷୀ ଆନ୍ଦୋଳନ ଇତ୍ୟାଦିରେ ତାଙ୍କ ଭୂମିକାର ପଟାନ୍ତର ନାହିଁ । ଜଗବନ୍ଧୁବାବୁ ରାଜ୍ୟସ୍ତରରେ ଉତ୍କଳ ସମ୍ମିଳନୀ ଓ ସ୍ୱାଧୀନତା ସଂଗ୍ରାମରେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱରେ ଥିଲେ ମଧ କୌଣସି ପଦପଦବୀ ପ୍ରତି ଲୋଭ ନଥିଲା ।

ତତ୍‌କାଳୀନ ଓଡ଼ିଶା ଶିକ୍ଷା ଜଗତର ସେ ଥିଲେ ଏକ ଉଜ୍ଜ୍ୱଳତମ ତାରକା । ନାରୀଶିକ୍ଷାର ପ୍ରସାର ଓ ପ୍ରଚାରର ସେ ଥିଲେ ଅଗ୍ରଦୂତ । ସମାଜର ସମସ୍ତ କ୍ଷେତ୍ରରେ ପୁରୁଷମାନଙ୍କ ପରି ନାରୀର ସମାନ ଅଧିକାର ପାଇଁ ସେ ଆହ୍ୱାନ ଦେଇଥିଲେ । ଓଡ଼ିଶାରେ ବାଳିକା ବିଦ୍ୟାଳୟ ସ୍ୱତନ୍ତ୍ରଭାବେ ପ୍ରତିଷ୍ଠା ପାଇଁ ତାଙ୍କର ଅବଦାନ ସ୍ୱୀକାରଧାର୍ଯ୍ୟ । ଫଳରେ ଓଡ଼ିଶାରେ ବାଳିକା ବିଦ୍ୟାଳୟମାନ ଗଢି ଉଠିଥିଲା । ନାରୀମାନଙ୍କ ଉଦ୍ଦେଶ୍ୟରେ ସେ 'ଗୃହଲକ୍ଷ୍ମୀ' ନାମକ ଏକ ପୁସ୍ତକ ରଚନା କରିଥିଲେ । ଏହି ପୁସ୍ତକରେ ସୁଦଶାବ୍ରତର ୧୦ଟି ଗୁଣ ଅଛି । ତାହା ଥିଲା– ସନ୍ତୋଷ, କ୍ଷମା, ସଂଯମ, ଅକ୍ରୋଧ, ଶୌଚ, ସତ୍ୟ, ଜ୍ଞାନ, ବିଦ୍ୟା, ସେବା ଓ ଦାନ । ଏହି ୧୦ଟି ଗୁଣକୁ ନାରୀ ଅନୁକରଣ କଲେ ଜଣେ ସୁଗୃହିଣୀ ହେବା ସଙ୍ଗେ ସଙ୍ଗେ ପୁଅ, ଝିଅ, ସ୍ୱାମୀ, ଶାଶୂ, ଶ୍ୱଶୁର ଓ ଯାଆ ଇତ୍ୟାଦିଙ୍କ ସହ ସୁସମ୍ପର୍କ ରକ୍ଷା କରିପାରିବେ । ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ଜଗବନ୍ଧୁ ବାବୁଙ୍କର ଅବଦାନ ଅତୁଳନୀୟ । ଓକିଲାତି ସମୟରେ ଯଦି କେହି ସାହିତ୍ୟପ୍ରେମୀ ବନ୍ଧୁ ପହଞ୍ଚିଯାଆନ୍ତି, ତେବେ ମହକିଲମାନଙ୍କୁ ଅନ୍ୟ ସମୟ ଦେଇ ସାହିତ୍ୟ ଚର୍ଚ୍ଚାରେ ସେ ସମୟ ବିନିଯୋଗ କରିଥାଆନ୍ତି । କେତେବେଳେ ପାଲା, ଯାତ୍ରା, ଦାଶକାଠିଆ ଇତ୍ୟାଦି ଆଲୋଚନା କରିଥାଆନ୍ତି ତ, ଆଉ କେତେବେଳେ ଭଞ୍ଜ ସାହିତ୍ୟ, କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ବିଷୟରେ । ଏପରିକି ନିଜର ଖାଇବା ଓ ଶୋଇବା ଇତ୍ୟାଦି ଭୁଲିଯାଆନ୍ତି । ତାଙ୍କ ଦ୍ୱାରା ଲିଖିତ ପୁସ୍ତକଗୁଡିକ ହେଲା– ଗୃହଲକ୍ଷ୍ମୀ, ପ୍ରାଚୀନ ଉତ୍କଳ, ପ୍ରବନ୍ଧ ସାର, ଶ୍ରୀକୃଷ୍ଣ, ଜ୍ୟୋତିଷାର୍ଣ୍ଣବ, ଭାରତ ଚରିତାମୃତ, କର୍ମଯୋଗ, ପଞ୍ଚାମୃତ, ସଂଗୀତ, ରସନିଧି, ଯୋଗତନ୍ତ୍ର, ଗୀତା ରହସ୍ୟ, ନବାକ୍ଷରୀ ଗୀତା ଇତ୍ୟାଦି । ମୁଦ୍ରଣ ନହୋଇ ରହିଯାଇଥିବା ପୁସ୍ତକମାନଙ୍କ ମଧ୍ୟରେ କର୍ଣ୍ଣାର୍ଜୁନ, ପାଣ୍ଡବଗୌରବ, ହରିଶ୍ଚନ୍ଦ୍ର, ନନ୍ଦିକେଶରୀ, ପ୍ରଭାସଯଜ୍ଞ, ଇନ୍ଦୁମତୀ, ବିଲ୍ୱମଙ୍ଗଳ, ପ୍ରବୀର ଇତ୍ୟାଦି ଗୀତିନାଟ୍ୟ । ସେ ଏକ ମାସିକ ପତ୍ରିକା 'ମୁକୁର'ର ନିୟମିତ ଲେଖକ ଥିଲେ ।

ସେ ଥିଲେ ଆଧାତ୍ମିକ ପ୍ରେମୀ ପ୍ରକୃତିର ମାନବ । ମାନବ ସେବା ହିଁ ମାଧବ ସେବା, ଏହା ଥିଲା ତାଙ୍କ ଜୀବନର ଅମୋଘ ଅସ୍ତ୍ର । ସତ କହିବା ଥିଲା ତାଙ୍କର ଜୀବନର ଅଳଙ୍କାର ସଦୃଶ । ରାଗ ଓ ଦ୍ୱେଷ ଥିଲା ତାଙ୍କର ପ୍ରଧାନ ଶତ୍ରୁ । କର୍ତ୍ତବ୍ୟ ହିଁ ଭଗବାନ ଥିଲା ତାଙ୍କର ଚାବିକାଠି । ଏହିସବୁ ମହତ ଗୁଣର ଅଧିକାରୀ ଜଗବନ୍ଧୁ ବାବୁ ୧୯୧୦ରୁ ୧୯୨୧ ମସିହା ପର୍ଯ୍ୟନ୍ତ ପୁରୀ ଜିଲ୍ଲା ବୋର୍ଡର ଚେୟାରମ୍ୟାନ ଏବଂ ଦୀର୍ଘ ୧୦ବର୍ଷ ଧରି ପୁରୀ ମୁନିସିପାଲିଟିର ଉପସଭାପତି ରୂପେ ସୁଚାରୁ ରୂପେ କାର୍ଯ୍ୟ ସମ୍ପାଦନା କରିବାର ପାରଦର୍ଶିତା ଅବିସ୍ମରଣୀୟ ।

ସେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ନିର୍ବାଚିତ ସଭ୍ୟ ରୂପେ ମନୋନୀତ ହୋଇଥିଲେ । ୧୯୩୭ ମସିହାରେ ପୁରୀ ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେ ଥିଲେ ପୁରୀର ସର୍ବଶ୍ରେଷ୍ଠ ସାଂସ୍କୃତିକ ବ୍ୟକ୍ତିତ୍ୱଧାରୀ ମହାପୁରୁଷ । ପୁରୀ ଜଗନ୍ନାଥବଲ୍ଲଭ ମଠର ଟ୍ରଷ୍ଟିରୂପେ କାର୍ଯ୍ୟକରି ଗୌରବମଣ୍ଡନ କରିଥିଲେ । କୋଟିକରେ ଗୋଟିଏ ପରି ତାଙ୍କର ମୃତ୍ୟୁବରଣ ଥିଲା ଏକ ଆଧାତ୍ମିକ ଘଟଣା ବହୁଳ ଇତିହାସ । କାରଣ ଏକ ଆଧାତ୍ମିକ ପୀଠରେ ଓ ଆଧାତ୍ମିକ ପରିବେଶ ମଧ୍ୟରେ ସେ ପରଲୋକ ଗମନ କରିଥିଲେ । ଏହି ଶୋକାକୁଳ ଓ ଦୁଃଖଦ ଘଟଣାଟି ଥିଲା ୧୯୪୮ ମସିହା ମେ ମାସ ୧୭ ତାରିଖ । ସେଦିନ ସେ ସକାଳ ୫ଘଟିକାରେ ତାଙ୍କ ବାସଭବନ କୁଣ୍ଡେଇବେଣ୍ଟ ସାହିରୁ ଦଇତାପଡା ସାହି ଜଗନ୍ନାଥବଲ୍ଲଭ ମଠକୁ ଯାଇଥିଲେ । ଦୈନନ୍ଦିନ କାର୍ଯ୍ୟପରି ମଠରେ ତେଲ ଲଗାଇ ମଠ ଭିତରେ ଥିବା ଏକ ପୁଷ୍କରିଣୀରେ ସ୍ନାନାଦି କାର୍ଯ୍ୟ ସମ୍ପାଦନା କଲେ । ତତ୍ପରେ ଶୁଦ୍ଧପୂତ ଭାବରେ ମନ୍ତ୍ରପାଠ କରୁଥିବା ସମୟରେ ଟଳିପଡିଲେ । କ୍ଷଣକ ମଧ୍ୟରେ ତାଙ୍କର ପ୍ରାଣବାୟୁ ଉଡିଯାଇଥିଲା । ବୋଧେ ଏହାଥିଲା ତାଙ୍କ ପାଇଁ ଶ୍ରୀଜଗନ୍ନାଥଙ୍କର ପ୍ରତ୍ୟକ୍ଷ ଆଶୀର୍ବାଦ । ଏହି ବିଚିତ୍ର ଓ ବିସ୍ମୟକର ଘଟଣା ବାସ୍ତବିକ ଏକ ଆଲୋକିତ କିମ୍ବଦନ୍ତୀ ରୂପେ ସୃଷ୍ଟି କରିଗଲା ଏକ ଆଧାତ୍ମିକ ଇତିହାସ ।

ମହାମନୀଷୀ ଜଗବନ୍ଧୁ ସିଂହ କାଳର କରାଳ ଗତିରେ ଆଜି ସ୍ୱଦେହରେ ନାହାନ୍ତି ସତ, ମାତ୍ର ଓଡ଼ିଶା ପ୍ରଦେଶ ଗଠନରେ ଥିବା ମହାନ ଅବଦାନ କଳ୍ପକାଳ ଯାଏ ଅବିସ୍ମରଣୀୟ ହୋଇରହିବ । ସେ କାଳଜୟୀ ଓ ଅମର । ଆଜି ତାଙ୍କ ପାଖରେ କାଳ ହାରିଯାଇଛି । ଉତ୍କଳ ମାତାର ଅନ୍ୟତମ ବିଦ୍ଧାଣି ଜଗବନ୍ଧୁଙ୍କୁ ଓଡ଼ିଆ ଜାତି ଚିରଦିନ ଯାଏ ମନେ ରଖିଥିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ପ୍ଲଟ. ନଂ– ୭୮୫/୧୨୪୦
ଦୁର୍ଗାମାଧବ ନଗର, ଭରତପୁର, ଭୁବନେଶ୍ୱର

# ରକ୍ତରଞ୍ଜିତ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ରଣଭେରୀ ବୀର ବୈଷ୍ଣବ ପଟ୍ଟନାୟକ

ଅଧ୍ୟାପକ ଅବନୀ କୁମାର ବରାଳ

ସାମନ୍ତବାଦୀ ରାଜାରାଜୁଡ଼ା ଅତ୍ୟାଚାର ଦମନ ତଥା ସାମ୍ରାଜ୍ୟବାଦୀ ବ୍ରିଟିଶ ଶାସନର ପହରାଦାର ଗୋଲାମ, ଗଡଜାତି ଶାସନ ବିରୁଦ୍ଧରେ ଢେଙ୍କାନାଳରେ ସଶସ୍ତ୍ର ସଂଗ୍ରାମକୁ ଆଗ୍ନେୟ ରୂପ ଦେଇଥିବା ପ୍ରଜା ଆନ୍ଦୋଳନର ଦୁର୍ବାର, ଦୁର୍ଦ୍ଧର୍ଷ ନାୟକ, ଜନ ମୁଖରେ 'ବୀର ବୈଷ୍ଣବ' ରୂପରେ ପରିଣତ ହୋଇଥିବା ରକ୍ତକ୍ଷୟୀ ସଂଗ୍ରାମର ପ୍ରବାଦ ପୁରୁଷ କିମ୍ବଦନ୍ତୀର ଅବସାନ ଘଟିଲା ୨୦୧୩ ଜାନୁଆରୀ ପହିଲା ତାରିଖ, ଅପରାହ୍ଣ ୨.୪୫ ମିନିଟ୍ ସମୟରେ ।

ସେ କିମ୍ବଦନ୍ତୀ, ସେ ପ୍ରବାଦ ପୁରୁଷଙ୍କର ନାମ ବୈଷ୍ଣବ ଚରଣ ପଟ୍ଟନାୟକ । ଭାରତବର୍ଷର ସ୍ୱାଧୀନତା ସଂଗ୍ରାମୀର ନାନା ଧାରା ମଧ୍ୟରେ ସାମ୍ରାଜ୍ୟବାଦୀ ବ୍ରିଟିଶ ଶାସନର ଏଜେଣ୍ଟ ତଥା ପହରାଦାର ଭାବରେ ଜନଗଣଙ୍କ ଉପରେ ନିର୍ମମ ଅତ୍ୟାଚାର କରୁଥିବା ବିଭିନ୍ନ ଗଡଜାତ ରାଜାରାଜୁଡ଼ାଙ୍କ ଶାସନ ବିରୁଦ୍ଧରେ ସଂଗ୍ରାମକୁ ସ୍ୱାଧୀନତା ସଂଗ୍ରାମର ଏକ ପ୍ରଧାନ ଧାରା ଭାବରେ ନିଜର ସଂଗ୍ରାମ ବଳରେ ପ୍ରତିଷ୍ଠିତ କରାଇଥିଲେ ବୀର ବୈଷ୍ଣବ ।

୧୯୧୪ ମସିହା ଏପ୍ରିଲ ୨୯ ତାରିଖରେ ଢେଙ୍କାନାଳର ଏକ ନିମ୍ନମଧ୍ୟବିତ୍ତ ପରିବାରରେ ଜନ୍ମ ତାଙ୍କର । ୧୮୭୭ ମସିହାଠାରୁ ୧୯୦୬ ମସିହା ପର୍ଯ୍ୟନ୍ତ ଢେଙ୍କାନାଳ ରାଜ୍ୟ ବ୍ରିଟିଶ ସରକାର ଦ୍ୱାରା କୋର୍ଟ ଅଫ୍‌ୱାର୍ଡ କରାଯାଇ ପ୍ରତ୍ୟକ୍ଷ ଶାସନାଧୀନ କରି ପଲିଟିକାଲ ଏଜେଣ୍ଟଙ୍କ ଦ୍ୱାରା ଶାସିତ ହେଉଥିଲା । ୧୯୧୮ ମସିହାରେ କୋର୍ଟ ଅଫ୍ ୱାର୍ଡ୍ସ ଉଠିଯାଇ ଶଙ୍କର ପ୍ରତାପ ସିଂଦେଓ ମହୀନ୍ଦ୍ର ବାହାଦୁରଙ୍କ ଦ୍ୱାରା ଶାସିତ ହେଲା ।

ସେତେବେଳକୁ ସମଗ୍ର ଢେଙ୍କାନାଳ ରାଜ୍ୟରେ ଢେଙ୍କାନାଳ ହାଇସ୍କୁଲ ୧୮୯୬ରେ ପ୍ରତିଷ୍ଠିତ ହୋଇ ଏକମାତ୍ର ହାଇସ୍କୁଲ ଥିଲା, ଯାହାର ନାମ ପରବର୍ତ୍ତୀ କାଳରେ ବ୍ରଜନାଥ ବଡଜେନା ହାଇସ୍କୁଲ ନାମରେ ନାମିତ ହୋଇଛି ।

ଢେଙ୍କାନାଳ ରାଜା ଶଙ୍କର ପ୍ରତାପଙ୍କ ପ୍ରତ୍ୟକ୍ଷ ଶାସନାଧୀନ ହେବା ପରେ ସମଗ୍ର ଢେଙ୍କାନାଳର ପ୍ରଜାକୁଳ ଅତ୍ୟାଚାର ଦମନରେ ଜର୍ଜରିତ ହୋଇ ଉଠିଲେ ।

୧୯୩୦ ମସିହା ବେଳକୁ ସାରା ଦେଶରେ ସ୍ୱାଧୀନତା ସଂଗ୍ରାମର ପ୍ରେରଣା ଯେପରି ଅନୁଭୂତ ହେଉଥିଲା ଏବଂ ଲକ୍ଷ ଲକ୍ଷ ନରନାରୀ ସ୍ୱାଧୀନତା ସଂଗ୍ରାମରେ ଯେପରି ଝାସ ଦେଇଥିଲେ, ସେ ପ୍ରଭାବ ତତ୍‌କାଳରେ ହାଇସ୍କୁଲରେ ନବମ, ଦଶମ ଶ୍ରେଣୀମାନଙ୍କରେ ଅଧ୍ୟୟନ କରୁଥିବା ଢେଙ୍କାନାଳ ଗଡଜାତ ପ୍ରଜା ଆନ୍ଦୋଳନର ପରବର୍ତ୍ତୀ କାଳରେ ନେତୃତ୍ୱ ନେଇଥିବା ହରମୋହନ ପଟ୍ଟନାୟକ, ଗତିକୃଷ୍ଣ ଭଞ୍ଜ, ଲକ୍ଷ୍ମୀଧର ସାହୁ ଏବଂ ବୈଷ୍ଣବ ଚରଣ ପଟ୍ଟନାୟକ ମଧ୍ୟ ପ୍ରଭାବିତ ହୋଇଥିଲେ । ଏମାନଙ୍କର ପ୍ରେରଣାଦାତା ଥିଲେ ହାଇସ୍କୁଲର ତତ୍କାଳର ଶିକ୍ଷକ ମନମୋହନ ଘୋଷ, ରାଜେନ୍ଦ୍ର ଲାଲ ଦତ୍ତ ପ୍ରମୁଖ । ଏହି ନେତୃତ୍ୱକାରୀ ଛାତ୍ରଗଣ ଛାତ୍ରମାନଙ୍କ ମଧ୍ୟରେ ବ୍ରିଟିଶ ଶାସନ ତଥା ରାଜ୍ୟ ଶାସନ ବିରୁଦ୍ଧରେ ବାର୍ତ୍ତା ପ୍ରଚାର କରିବାରୁ ରାଜ ଦରବାରର କୋପ ଦୃଷ୍ଟିରେ ପଡିଲେ । ହରମୋହନ, ଗତିକୃଷ୍ଣ ଏବଂ ଲକ୍ଷ୍ମୀଧର ଟ୍ରାନ୍ସଫର ସାର୍ଟିଫିକେଟ୍ ନେଇଆସି ଢେଙ୍କାନାଳ ରାଜ୍ୟ ବାହାରେ ଅନ୍ୟତ୍ର ପଢିଲେ । ବୈଷ୍ଣବଙ୍କୁ କିନ୍ତୁ ରଷ୍ଟିକେଟ୍ କରାଗଲା ଦଶମ ଶ୍ରେଣୀରୁ । ଫଳରେ ସେହି ଦଶମ ଶ୍ରେଣୀରୁ ପାଠ ପଢାରେ ଡୋରି ବାନ୍ଧି ବୈଷ୍ଣବ ପଟ୍ଟନାୟକ କଟକ–ତାଳଚେର ରେଳ ଲାଇନ୍‌ରେ ପେଣ୍ଟର କାମ କଲେ ।

୧୯୩୮ ମସିହା ମାର୍ଚ୍ଚ ମାସରେ ହରିପୁରା କଂଗ୍ରେସ ଅଧିବେଶନକୁ ସ୍ୱାଗତ ଜଣାଇବା ସହିତ ବୈଷ୍ଣବ ପଟ୍ଟନାୟକ ଓ

ହରମୋହନ ପଟ୍ଟନାୟକ ଢେଙ୍କାନାଳ ପ୍ରଜାମଣ୍ଡଳ ନାମରେ ବାର୍ତ୍ତା ପଠାଇବା ସଙ୍ଗେ ସଙ୍ଗେ ଜୁନ୍ ୨୭ ତାରିଖରେ ଅସ୍ଥାୟୀ ପ୍ରଜାମଣ୍ଡଳ ଗଠନ କରାଇଲେ । ପରେ ପରେ ଜେନାପୁର (ଢେଙ୍କାନାଳ ରାଜ୍ୟ ସୀମାରେ ମାତ୍ର ଢେଙ୍କାନାଳ ଶାସନ ବାହାରେ ଅବସ୍ଥିତ) ଠାରେ ସେପ୍ଟେମ୍ବର ପହିଲା ଦିନ କୃଷକ ଦିବସରେ ୫୦ ହଜାର ଚାଷୀ ସମବେତ ହୋଇଥିଲେ– ସେଥିମଧ୍ୟରୁ ୨୦ ହଜାରରୁ ଊର୍ଦ୍ଧ୍ୱ ଢେଙ୍କାନାଳ ରାଜ୍ୟର । ଏହାର ଠିକ୍ ପୂର୍ବରୁ ୧୯୩୮ ମସିହା ଅଗଷ୍ଟ ୧୧ ତାରିଖରେ ପରଜଙ୍ଗ ଠିକଣାରୁ ଢେଙ୍କାନାଳ ପ୍ରଜାମଣ୍ଡଳ ପକ୍ଷରୁ ଢେଙ୍କାନାଳ ରାଜଶାସନ ଉଦ୍ଦେଶ୍ୟରେ ଏକ ଦାବିପତ୍ର ପ୍ରଦାନ କରାଗଲା । ସେହି ଦାବିପତ୍ରରେ ମୁଖ୍ୟତଃ ସଂଘ, ସଙ୍ଗଠନ, ସଭା–ସମିତି କରିବାର ତଥା ଖବରକାଗଜ, ପ୍ରଚାରପତ୍ର ପ୍ରକାଶ କରିବାର ସାମୂହିକ ନାଗରିକ ଅଧିକାର, ବେଠି, ଭେଟି, ରସମ ତଥା ଆମଦାନୀ ରପ୍ତାନୀ ଉପରେ ଟିକସ, ଖଜଣା–ଟିକସ ଭାରରେ ପ୍ରଜାକୁଳକୁ ଅତିଷ୍ଠ କରିବା ଆଦି ଉଠାଇଦେବା ପାଇଁ ଦାବିପତ୍ରରେ ରହିଲା ଏବଂ ଏହା 'କୃଷକ' ସମ୍ବାଦପତ୍ର ତଥା ଲିଫ୍‌ଲେଟ୍ ହଜାର ହଜାର ସଂଖ୍ୟାରେ ବଣ୍ଟାଗଲା ଓ ବିକ୍ରୟ କରାଗଲା । ନିଜେ ବୈଷ୍ଣବ ପଟ୍ଟନାୟକ 'କୃଷକ' ସମ୍ବାଦପତ୍ରର ହଜାରେ କପି ରେଳରେ ଓ ସଭା–ସମିତିରେ ବିକ୍ରି କରିଥିବା କଥା ପ୍ରକାଶ କରୁଥିଲେ । 'କଂଗ୍ରେସ–ସୋସାଲିଷ୍ଟ' ପାର୍ଟିର ମୁଖପତ୍ର 'କୃଷକ'ର ସମ୍ପାଦକ ଥିଲେ କମ୍ରେଡ ଭଗବତୀଚରଣ ପାଣିଗ୍ରାହୀ ଏବଂ ପରିଚାଳନା ସମ୍ପାଦକ ଥିଲେ କମ୍ରେଡ୍ ଗୁରୁଚରଣ ପଟ୍ଟନାୟକ । ଉଲ୍ଲେଖଯୋଗ୍ୟ ଯେ ଢେଙ୍କାନାଳର ଏହି ଛାତ୍ର ଗୋଷ୍ଠୀ ବା ତରୁଣବୃନ୍ଦ ସେତେବେଳେ ଛାତ୍ରସଂଘ, କଂଗ୍ରେସ, କଂଗ୍ରେସ–ସୋସାଲିଷ୍ଟ ପାର୍ଟିର ନେତୃବୃନ୍ଦ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ର ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ରବିଘୋଷ, ବିଶ୍ୱନାଥ ପଶାୟତ, ବୈଦ୍ୟନାଥ ରଥ, ନୀଳଗିରିର ନାୟକ ବନମାଳୀ ଦାସ ପ୍ରମୁଖଙ୍କ ସହିତ ଘନିଷ୍ଠ ଯୋଗାଯୋଗ ସ୍ଥାପନ କରିଥିଲେ ଏବଂ ତତ୍କାଳରେ ଦରଘାବଜାରଠାରେ ଏକ ଛୋଟିଆ କୁଡିଆ ଘରେ ପ୍ରକାଶିତ ହେଉଥିବା 'କୃଷକ' ସାପ୍ତାହିକ ସମ୍ବାଦପତ୍ର ଏବଂ 'ରଣଭେରୀ' ନାମକ ଏକ ପ୍ରଚାର ପତ୍ରିକା ପ୍ରକାଶନ ଏବଂ ଭଗବତୀ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକଙ୍କ ସହିତ ଘନିଷ୍ଠ ହୋଇଯାଇଥିଲେ । ଢେଙ୍କାନାଳର ଗଠିତ ପ୍ରଜାମଣ୍ଡଳର ଉପଦେଷ୍ଟା ମଣ୍ଡଳୀରେ ଥିଲେ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ମାଳତୀ ଚୌଧୁରୀ ଓ ସାରଙ୍ଗଧର ଦାସ ।

ରାଜାଶାସିତ ଢେଙ୍କାନାଳର ଅତ୍ୟାଚାର, ଦମନ, ଲୁଣ୍ଠନ, ନାରୀ ନିର୍ଯ୍ୟାତନାର କାହାଣୀ ଯେପରି ରୋମାଞ୍ଚକର, ଭୟଙ୍କର ଏବଂ ସାରା ଦେଶରେ ପ୍ରଚାରିତ ଅବିଶ୍ୱାସନୀୟ କାହାଣୀ ହୋଇଯାଇଥିଲା, ସେହିପରି ଢେଙ୍କାନାଳର ପ୍ରଜାମଣ୍ଡଳ ନେତୃତ୍ୱରେ ପ୍ରଜାମାନଙ୍କର ସଂଗ୍ରାମ ମଧ୍ୟ ସାରା ଦେଶରେ ପ୍ରବାଦ ତଥା ଅଗ୍ନିଯୁଗର ଇତିହାସ ହୋଇ କାଳ କାଳକୁ ରହିବ ।

ଢେଙ୍କାନାଳ ରାଜଶାସନରେ ଶତାଧିକ କର, ସେସ୍ ସାଙ୍ଗକୁ ବେଠି, ଭେଟି, ରସଦ ପ୍ରଭୃତି ଦ୍ୱାରା ଗରିବ ପ୍ରଜାଗଣଙ୍କୁ ଲୁଣ୍ଠନ କରାଯାଇଥାଏ । ଗରିବ ପ୍ରଜାର ନବବିବାହିତା ବଧୂଙ୍କୁ ପ୍ରଥମ ରାତ୍ରିଟି ବିତାଇବାକୁ ପଡେ ରାଜନଅରରେ । ରାଜନଗରରେ ବା ବଡ ବଡ କର୍ମଚାରୀମାନଙ୍କର ଭୋଜି, ବିବାହ, ବ୍ରତ ଆଦିରେ ଗାଁକୁ ଗାଁ ରାଜାଙ୍କ ପିଆଦା/ବରକନ୍ଦାଜମାନେ ଛୋଟ କ୍ରିକେଟ୍ ବ୍ୟାଟ୍ ଆକାରର କାଠ ବାଡିଟିଏ ଯେଉଁଥିରେ 'ହୁ.ସୁ.ଡି ଅର୍ଥ(ହୁକୁମ ସୁଆଁସ ଡିପାର୍ଟମେଣ୍ଟ) ଏହି ହୁ.ସୁ.ଡି. ଲେଖା ହୋଇଥିବା ବାଡିଟି ଯେଉଁଠାରେ ଯେଉଁ ଗାଁରେ ପହଞ୍ଚିବ, ତା' ପରଦିନର ଉଆସର ସମସ୍ତ ଚାଉଳ, ଡାଲି, ପନିପରିବା, ମାଛ, ମାଂସ ଆଦି ସେ ଗ୍ରାମବାସୀ ଯୋଗାଇବେ । ରାଜାଙ୍କର ପାର୍ଷଦବର୍ଗ ଅଥବା ଅତିଥି ଅଭ୍ୟାଗତମାନେ ଭୋଜି ଭାତ କଲେ ସେହିପରି ଭୋଜିର ସମସ୍ତ ଖାଦ୍ୟ ସାମଗ୍ରୀ ହୁ.ସୁ.ଡି. ବାଡି ପଠାଯାଇ ଅଣାଯାଏ । ଏବେ ମଧ୍ୟ ସେଥିରୁ ଗୋଟିଏ ବାଡି ରାଜ୍ୟ ଅଭିଲେଖାଗାରକୁ ଦିଆଯିବା ପାଇଁ ଗଚ୍ଛିତ ।

ବୈଷ୍ଣବ ପଟ୍ଟନାୟକ, ନିଜର ଅଭିଜ୍ଞତା ସମ୍ବଳିତ ଅନ୍ଧାରୀ ରାଜା ଶାସନର ଅତ୍ୟାଚାର ଲୁଣ୍ଠନ, ଧର୍ଷଣର କାହାଣୀ ଶୁଣାନ୍ତି ଏବଂ ସେ ବିଷୟରେ ଅନେକ ସେ ଲେଖିଥିଲେ ।

ଢେଙ୍କାନାଳ ପ୍ରଜା ଆନ୍ଦୋଳନରେ ଏକ ରକ୍ତରଞ୍ଜିତ ଅଧ୍ୟାୟ ହେଲା ଭୁବନ ନିକଟସ୍ଥ ନୀଳକଣ୍ଠପୁର ଠାରେ ବ୍ରାହ୍ମଣୀନଦୀ ଘାଟରେ ବାଜିରାଉତ, ଲକ୍ଷ୍ମଣ ମଳିକ, ନଟ, ରଘୁ, ଗୁରୁ, ହୁରୁଷି ଆଦିଙ୍କର ରାଜାର ଫଉଜ ଓ ଶିଖ ପଲଟଣମାନଙ୍କ ଦ୍ୱାରା ଗୁଳିବିଦ୍ଧ ହୋଇ ଲୋଟିବାର ଅକ୍ଷୟ କାହାଣୀ– ଯାହା ସଚୀ ରାଉତରା, ଅନନ୍ତ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ ଆଦି ସୁପ୍ରସିଦ୍ଧ କବିଙ୍କର କୃତୀରେ ବିମୂର୍ତ୍ତି ହୋଇ ରହିଛି ।

ବୀର ବୈଷ୍ଣବ ବାଜି, ରଘୁ, ଗୁରୁ, ହୁରୁଷି, ଲକ୍ଷ୍ମଣ ଆଦିଙ୍କର ମୃତ ଶବକୁ କୋଳେଇ କୋଳେଇ ନେଇ ଗୋଟିଏ ଗୋଟିଏ ତାଟିକୁ କୋକେଇ କରି ଜେନାପୁର ଷ୍ଟେସନକୁ ଆଣି, ସେଠାରୁ ମାଲଗାଡିରେ କଟକ ଷ୍ଟେସନକୁ ପଠାଇ ଦେଇଥିଲେ ।

କଟକ ଷ୍ଟେସନରେ ନାହିଁନଥିବା ଭିଡ ଭିତରେ ଛଅଟି ଶଗଡରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ବୀର ଶହୀଦମାନଙ୍କ ଶବକୁ ବିଶାଳ ପଟୁଆରରେ ଖାନନଗର ଶ୍ମଶାନରେ ଦାହ କରାଗଲା । ଶବବାହୀ ଶଗଡ ଛଅଟିର ବାହକ ଥିଲେ କବି ସଚ୍ଚୀ ରାଉତରା, କବି ଅନନ୍ତ ପଟ୍ଟନାୟକ, ଗୋବିନ୍ଦ ମହାନ୍ତି, ରବିଘୋଷ, ଶରତ ପଟ୍ଟନାୟକ ଏବଂ ଏମାନେ ମଧ୍ଯ ବାଜି, ଗୁରୁ, ରଘୁ ଆଦିଙ୍କୁ ମୁଖାଗ୍ନି ଦେଇଥିଲେ ।

୧୯୪୦ ମସିହା ଜୁନ୍ ୨୯ ତାରିଖରେ ଗଡଜାତ ରାଜଶାସନମାନଙ୍କୁ ରକ୍ଷା କରିବା ପାଇଁ ରାଜାରାଜୁଡା ଏବଂ ବ୍ରିଟିଶ ଶାସନ ପକ୍ଷରୁ ଗଢାଯାଇଥିବା ପୂର୍ବାଞ୍ଚଳ ମିଳିତ ପୋଲିସ ବାହିନୀର ଅଭୟରେ ପ୍ରଜାମଣ୍ଡଳ ନେତା ମହେଶ୍ୱର ସୁବାହୁ ସିଂ ଏବଂ ବୈଷ୍ଣବ ପଟ୍ଟନାୟକଙ୍କୁ ଗିରଫ କରି ୧୯୪୨ ଏପ୍ରିଲ ୨୮ ତାରିଖ ପର୍ଯ୍ୟନ୍ତ ଜେଲରେ ରଖାଗଲା । ଅନ୍ୟ ପ୍ରମୁଖ ନେତାମାନଙ୍କୁ ମଧ୍ୟ ଗିରଫ କରାଗଲା । ୧୯୪୨ ଅଗଷ୍ଟ ଭାରତଛାଡ ଆନ୍ଦୋଳନ ବେଳେ ପ୍ରଜାମଣ୍ଡଳର ବହୁନେତାଙ୍କୁ ଅନ୍ଧାଧୁନିଆ ଗିରଫ କଲେ ମଧ୍ୟ ବୈଷ୍ଣବ ପଟ୍ଟନାୟକ, ମୃଷାମଲିକ, ଦିବାକର ବିଶ୍ୱାଳ ଆଦି ଆତ୍ମଗୋପନ କରି ରହିଗଲେ ଏବଂ ରଙ୍ଗଥାଳି ଜଙ୍ଗଲରେ ବିପ୍ଳବୀ ସାଥୀମାନଙ୍କ ସହିତ ଆଲୋଚନା କରି ଭବିଷ୍ୟତ କର୍ମପନ୍ଥା ସ୍ଥିର କରି ଏକ ମରଣବାହିନୀ ଗଠନ କଲେ ୧୯ଜଣ ସାଥୀଙ୍କୁ ନେଇ । ମରଣବାହିନୀର ନେତୃତ୍ୱ ନେଲେ ବୈଷ୍ଣବ ପଟ୍ଟନାୟକ, ମୃଷାମଲିକ, କୁଳମଣି ପ୍ରଧାନ, ଦିବାକର ବିଶ୍ୱାଳ, ଆନନ୍ଦ ସ୍ୱାଇଁ, ବାଇଦର ସ୍ୱାଇଁ ଆଦି । ଏମାନେ ନିଷ୍ପତ୍ତି ନେଲେ ପରଜଙ୍ଗ ଥାନା ଉପରେ ଚଢଉ କରିବା । କିନ୍ତୁ ସେଠାରେ ବହୁ ପୋଲିସ ମୁତୟନ ହୋଇଥିବା ଦେଖି ତୁରନ୍ତ ନିଷ୍ପତ୍ତି ପରିବର୍ତ୍ତନ କରି ମଢି ଥାନା ଦଖଲ କରିବାକୁ ମରଣବାହିନୀର ୧୯ ଜଣ ଯାକ ସାଥୀ ଯିଏ ଯାହା ପାରିଲା, ଅସ୍ତ୍ରଶସ୍ତ୍ର ଠେଙ୍ଗାବାଡି ଧରି ମଢି ଥାନା ଅଭିମୁଖେ ଚାଲିଲେ । ସାଙ୍ଗରେ ଥାଏ ବାରବର୍ଷର ପିଲାଟିଏ, ନାଁ ତା'ର ବିଦ୍ୟାଧର ସ୍ୱାଇଁ ।

ମଢିର ନାଁ ଏବେ କାମାକ୍ଷାନଗର । ରାଜା ଶଙ୍କର ପ୍ରତାପଙ୍କ ପୁତ୍ର କାମାକ୍ଷ ପ୍ରସାଦ ସିଂ ଦେଓଙ୍କ ଜନ୍ମ ପରେ ତାଙ୍କ ସମ୍ମାନରେ ପ୍ରଜା ଆନ୍ଦୋଳନର ଅବିସ୍ମରଣୀୟ ବୈପ୍ଳବିକ ଘାଟି 'ମଢି'ର ନାମ ପରିବର୍ତ୍ତନ କରାଯାଇ ରାଜାଙ୍କ ଆଦେଶରେ 'କାମାକ୍ଷାନଗର'ରେ ପରିଣତ କରାଯାଇଥିଲା ।

ବୈଷ୍ଣବ ପଟ୍ଟନାୟକଙ୍କ ନେତୃତ୍ୱରେ ମଢି ଥାନା ଦଖଲର କାହାଣୀ, ସ୍ୱାଧୀନତା ସଂଗ୍ରାମର ରକ୍ତରଞ୍ଜିତ ଅଧ୍ୟାୟ ''ଚଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ'ର ସମକକ୍ଷ ଓ ସେଇଭଳି ଚମକପ୍ରଦ ଘଟଣା । ମଢି ଥାନା ପାଖରେ ଥିବା ପୋଲିସ ଛାଉଣୀ ଓ ଅଫିସରମାନଙ୍କ କ୍ୱାର୍ଟର ଭେଦକରି ବିପ୍ଳବୀ ପ୍ରଜାମଣ୍ଡଳର ମରଣବାହିନୀମାନେ ରାତି ପାହାନ୍ତାରେ (ଅଗଷ୍ଟ ୨୪ ତାରିଖ ୧୯୪୨ ମସିହା ଭୋର) 'ପ୍ରଜାମଣ୍ଡଳ ଜିନ୍ଦାବାଦ'' 'ମହାତ୍ମା ଗାନ୍ଧୀ କି ଜୟ' ଧ୍ୱନୀରେ ଆକାଶ ପବନ ପ୍ରକମ୍ପିତ କରି ମଢି ଥାନାରେ ଜାତୀୟ ପତାକା ଉତ୍ତୋଳନ କରିଦେଲେ– କ୍ୱାର୍ଟରମାନଙ୍କରୁ ନିଦ୍ରାଳୁ ଆଖି ମଳିମଳି ଅଫିସରମାନେ କାବା ହୋଇ ଦେଖିଲେ ଥାନା ଦଖଲର ଦୃଶ୍ୟ– ସେମାନଙ୍କୁ ଆଦେଶ ଦେଲେ ବୀରବୈଷ୍ଣବ, ୧୫ ମିନିଟ୍ ଭିତରେ ଘରଦ୍ୱାର ଛାଡିଦିଅ– ସେମାନେ ଅବାକ ହୋଇ ଦେଖୁଥିଲେ ସରକାରୀ ଫାଇଲ, ଆସବାବପତ୍ର ସବୁ ପୋଡା ହେଉଥାଏ– ଉପସ୍ଥିତ ବିଶାଳ ଦେଖଣାହାରୀ ଜନତାଙ୍କୁ କୁହାଗଲା ସାଧାରଣ ସଭାରେ ଯୋଗ ଦିଅନ୍ତୁ ସମସ୍ତେ । ଅପରାହ୍ନରେ ୧୦ ହଜାରରୁ ଊର୍ଦ୍ଧ୍ୱ ଜନ ସମାବେଶରେ ବୀରବୈଷ୍ଣବ ପଟ୍ଟନାୟକ ତାଙ୍କର ଉଦାତ୍ତ କଣ୍ଠରେ ଘୋଷଣା କଲେ, 'ଢେଙ୍କାନାଳରେ ସ୍ୱାଧୀନ ସରକାର ଗଢାଗଲା ।' ବିଜୟ ଉଲ୍ଲାସରେ ସଂଗ୍ରାମୀ ଯୋଦ୍ଧାମାନେ ମଢି ଦଖଲ କରି ଗାଁକୁ ଗାଁ ସାଥୀରେ ଜନତାଙ୍କ ପଟୁଆର ନେଇ ପରିକ୍ରମା କଲେ । ମାଳପୁରା ଗାଁରେ ରାଜାଘର ଧାନ ଅମାରକୁ ଦଖଲ କରି ଅମାରରୁ ସବୁ ଧାନ କାଢି ଆଣି ଗରିବ ପ୍ରଜାଙ୍କ ଭିତରେ ବାଣ୍ଟି ଦିଆଗଲା । ପଳାଶୁଣି ଗାଁରେ ପଶି ସେପ୍ଟେମ୍ବର ୨ ତାରିଖ ଦିନ ଚାନ୍ଦପୁର ଥାନା ତହସିଲ ପୋଡି ଦିଆଗଲା ।

ପରଜଙ୍ଗ ଥାନା ଦଖଲ କରିବାକୁ ଗଲାବେଳେ ଢେଙ୍କାନାଳରୁ ଆସିଥିବା ସଶସ୍ତ୍ର ପୋଲିସ ଫଉଜ ସହିତ ଲଢେଇ ହେଲା । ପରଜଙ୍ଗ ଯିବା ବାଟରେ ଜହ୍ନପଡା ଗାଁରେ ମରଣବାହିନୀ ପହଞ୍ଚିଲା ବେଳକୁ ହଜାରେ ଲୋକ ଚାଲିଥାନ୍ତି । ଘେରି ଆସୁଥିବା ସଶସ୍ତ୍ର ଫଉଜ ସହିତ ଆକ୍ରମଣ– ପ୍ରତି ଆକ୍ରମଣ ଚାଲିଲା । ସଶସ୍ତ୍ର ବାହିନୀ ଗୁଳିରେ କୁସୁମୁଣ୍ଡା ଗାଁର ବେଣୁସାହୁ ଓ ତୋରଡାନଳୀ ଗାଁର ବୀରସାହୁ ଟଳିପଡିଲେ । ବୈଷ୍ଣବଙ୍କ ବାମ କାନ୍ଧରେ ଗୁଳିବାଜି ସେ ଟଳିପଡିଲେ– ମାତ୍ର ବଞ୍ଚିଗଲେ । ନବଘନ ବେହେରାଙ୍କୁ ସାଙ୍ଗରେ ଧରି ଗୁଳିବିଦ୍ଧ ଦେହକୁ ନେଇ ବୀର ବୈଷ୍ଣବ କଟକରେ ପହଞ୍ଚିଲେ । ଗୋପନରେ ଦେହରୁ ଗୁଳି ବାହାର କରାଗଲା ଓ ପରେ ଚିକିତ୍ସା ଲାଗି ଆନ୍ଦୋଳନ ପରିଚାଳନା କେନ୍ଦ୍ର ତାଙ୍କୁ କଲିକତା ପଠାଇଦେଲେ ।

୧୯୪୨ ସେପ୍ଟେମ୍ବର ମାସରେ ବୈଷ୍ଣବଙ୍କୁ ଧରାଇଦେବାକୁ ୩୬୦୦ ଟଙ୍କା ପୁରସ୍କାର ଘୋଷଣା କରି

ଢେଙ୍କାନାଳ ଗେଜେଟ୍ ପ୍ରକାଶ ପାଇଲା ଏବଂ ଗାଁ ଗାଁରେ ଛପା ଲିଫ୍‌ଲେଟ ମାରି ଦିଆଗଲା । ଗ୍ରାମଗୁଡିକ ଉପରେ ଗୋଟି ଗୋଟିକରି ୫୬୩୦୦ ଟଙ୍କା ଜୋରିମାନା ଆଦାୟ କରାଗଲା । ମୂଷା ମଳିକ, ଆନନ୍ଦ ସ୍ୱାଇଁ, ଅନୁକୂଳ ସାହୁଙ୍କୁ ଗିରଫ କରାଯାଇ ବିଚାରର ପ୍ରହସନ କରାଇ ମୂଷା ମଳିକଙ୍କୁ ଫାଶୀ ହୁକୁମ ହେଲା । ୧୨ବର୍ଷର ବାଳକ ବାଇଧର ସ୍ୱାଇଁଙ୍କୁ ୬ବର୍ଷ ଜେଲ୍ ଦଣ୍ଡ ମିଳିଲା । ଅନ୍ୟ ତିନିଜଣଙ୍କୁ ଯାବତ୍‌ଜୀବନ କାରାଦଣ୍ଡ ମିଳିଲା ।

ବୈଷ୍ଣବ ପଟ୍ଟନାୟକଙ୍କ ଉପରେ ଫାଶୀ ଦଉଡି ଝୁଲି ରହିଥିଲେ ମଧ୍ୟ ସେ କଲିକତାକୁ ଖସିଯାଇ ଥିବାରୁ ଫାଶୀରୁ ବଞ୍ଚିଗଲେ । ବଙ୍ଗପ୍ରଦେଶର କମ୍ୟୁନିଷ୍ଟ ପାର୍ଟି ଏବଂ ପି.ସି.ଯୋଷୀ ତାଙ୍କୁ ଆତ୍ମଗୋପନରେ ରଖାଇଲେ ୧୯୪୬ ମସିହା ପର୍ଯ୍ୟନ୍ତ । ଢେଙ୍କାନାଳର ରକ୍ତକ୍ଷୟୀ ପ୍ରଜା ଆନ୍ଦୋଳନ ଏବଂ ମଢି ଦଖଲର ମହାନ ଗରିମାକୁ ଲୋକ ମନରୁ ଲିଭାଇ ଦେବାକୁ ଢେଙ୍କାନାଳ ରାଜା ମଢିର ନାମ ବଦଳାଇ ନିଜ ପୁଅଙ୍କ ନାମରେ କାମାକ୍ଷାନଗର କରିଦେଲା । ଇତିହାସ ପୃଷ୍ଠାରୁ ମଢି ନାଁ ଲିଭିଗଲା । ହେଲେ ଦିନେ ନା ଦିନେ ରାଜତନ୍ତ୍ରକୁ ନିଜର ରକ୍ତରେ ହୋଲି ଖେଳି ବିଲୋପ କରିଥିବା ଢେଙ୍କାନାଳବାସୀ ପୁରୁଣା ମଢିର ନାମକୁ ରାଜତନ୍ତ୍ରର ନାମକରଣରୁ ପରିବର୍ତ୍ତନ କରି 'ବାଜିରାଉତ ନଗର' ବା 'ବୀରବୈଷ୍ଣବ ନଗର' କରିବେ ।

ଦୀର୍ଘଦିନ ଧରି ମଢି ଅସ୍ତ୍ରାଗାର ଦଖଲର ନେତା ବୀରବୈଷ୍ଣବ ଅଜ୍ଞାତବାସରେ ରହି ଢେଙ୍କାନାଳରେ ୧୯୪୬ ଆରମ୍ଭରେ ପହଞ୍ଚିଲା ପରେ ଢେଙ୍କାନାଳର ବୀର ପ୍ରଜାଗଣ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦେଲେ । କଟକରେ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ବିରାଟ ପଟୁଆର କରି ବୀରବୈଷ୍ଣବଙ୍କୁ ସଭାରେ ସମ୍ବର୍ଦ୍ଧିତ କରାଗଲା ।

ଢେଙ୍କାନାଳ ରାଜାଶାସନ ଭୟରେ କାତର ହୋଇ ଫାଶୀ ଦଣ୍ଡାଦେଶ ଦେଇଥିବା ମୂଷା ମଳିକଙ୍କୁ ଫାଶୀ ଦେଇ ଦେଶକୁ ସାହସ କରିପାରିଲା ନାହିଁ । ଗଡଜାତ ମିଶ୍ରଣ ପରେ ସେ ମୁକ୍ତ ହେଲେ ।

ଯୋଦ୍ଧା ବୀରବୈଷ୍ଣବ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ହୋଇଥିବା ହେତୁ ଢେଙ୍କାନାଳ ରାଜ୍ୟ ଭାରତରେ ତଥା ଓଡ଼ିଶାରେ ମିଶ୍ରଣ ପରେ ବେଆଇନ ପାର୍ଟିର ସଦସ୍ୟ ଭାବରେ ୧୯୪୮ରୁ ୧୯୫୨ ପର୍ଯ୍ୟନ୍ତ ବର୍ଜନ ଜେଲରେ ଅନ୍ୟାନ୍ୟ କମ୍ୟୁନିଷ୍ଟ ବନ୍ଦୀମାନଙ୍କ ସହିତ ରହିଥିଲେ ।

ସେ ବନ୍ଦୀଶାଳାରେ ଥିଲାବେଳେ ସ୍ୱର୍ଗତଃ ନନ୍ଦକିଶୋର ପଟ୍ଟନାୟକଙ୍କ ପରିଚାଳନାରେ ୧୯୫୧ ନିର୍ବାଚନରେ ଢେଙ୍କାନାଳ ଦ୍ୱୈତ ନିର୍ବାଚନ ମଣ୍ଡଳୀରୁ ଜେଲ୍‌ରେ ରହିଥିବାବେଳେ ମଧ୍ୟ ନିଜ ଅନୁପସ୍ଥିତିରେ ବୀରବୈଷ୍ଣବ ପଟ୍ଟନାୟକ ଏବଂ ମୂଷା ମଳିକ କମ୍ୟୁନିଷ୍ଟ ପାର୍ଟି ଟିକେଟ୍‌ରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଏବଂ ୧୯୫୭ ପର୍ଯ୍ୟନ୍ତ ବିଧାନସଭାରେ କମ୍ୟୁନିଷ୍ଟ ସଦସ୍ୟ ଭାବରେ ରହିଥିଲେ ।

ଢେଙ୍କାନାଳବାସୀଙ୍କ ପାଇଁ 'ରଣଭେରୀ' ପତ୍ରିକାଟି ଯେପରି ସମ୍ବାଦ ପରିବେଷଣ କରୁଥିଲା, ବୀରବୈଷ୍ଣବ ସେହିଭଳି ନିଜେ ଅତ୍ୟାଚାରିତ ପ୍ରଜାକୁଳଙ୍କ ପାଇଁ ରଣଭେରୀ ଥିଲେ ଏବଂ ଗାଁ ଗାଁ ନିଜର ଉଦାତ୍ତ କଣ୍ଠରେ, 'ମଣିଷ କୁଳରେ ଜନମ ଆମର ନାହିଁ ଇଜ୍ଜତ ମାନ– ଆମ ଝିଅ ବୋହୂ ସବୁରି ଶାଳୀରେ ଆମେ ଶଳା ସଇତାନ' ? ଅବା ମାର ତୁ ଯେତେ ଗୁଳି– ମରିବୁ ପଛେ ଡରିବୁ ନାହିଁ । ଯାଅନା ଏହା ଭୁଲି ଇତ୍ୟାଦି ଗୀତ ଗାଇ ଲକ୍ଷ ଲକ୍ଷ ଜନତାଙ୍କୁ ଉଦ୍‌ବେଳିତ କରୁଥିଲେ ।

କମ୍ୟୁନିଷ୍ଟ ପାର୍ଟି ଦପ୍ତର ଭଗବତୀ ଭବନଠାରେ ସୁରକ୍ଷିତ ଭଗବତୀଙ୍କର ପ୍ରତିକୃତି ବୀରବୈଷ୍ଣବଙ୍କର କଳାକୃତି ଅତୀତରେ କୋଇଲାରେ, ଲେନିନ୍, ଷ୍ଟାଲିନ୍, ଭଗବତୀ ଆଦିଙ୍କର କ୍ୟାନ୍‌ଭାସ ପ୍ରତିକୃତି କରି ସଭା ଶୋଭାଯାତ୍ରା ପାଇଁ ଦେଉଥିଲେ ବୈଷ୍ଣବ ପଟ୍ଟନାୟକ ।

ସମଗ୍ର ଭାରତବର୍ଷର ତଥା ଓଡ଼ିଶାର ପ୍ରଜାକୁଳର, ସାମନ୍ତବାଦୀ/ରାଜତନ୍ତ୍ର ବିରୋଧୀ ସଂଗ୍ରାମର 'ରଣଭେରୀ' ବୀରବୈଷ୍ଣବ ପଟ୍ଟନାୟକଙ୍କର ଭେରୀ ନିନାଦ ଜାନୁଆରୀ ପହିଲା ୨୦୧୩ ତାରିଖଠାରୁ ନିରବି ଯାଇଛି ।

ରକ୍ତରଞ୍ଜିତ ପ୍ରଜା ଆନ୍ଦୋଳନର ସାମ୍ୟବାଦୀ ସଂଗ୍ରାମୀ ଇତିହାସରେ ବୀର ବୈଷ୍ଣବଙ୍କର କାହାଣୀ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ତାଙ୍କ ଉଦ୍ଦେଶ୍ୟରେ ତାଙ୍କ ପ୍ରିୟ ପତାକା ଅବନମିତ କରିବା ସଙ୍ଗେ ସଙ୍ଗେ ତାଙ୍କ ପ୍ରତି ସଂଗ୍ରାମୀ ରକ୍ତ ପ୍ରଣାମ ଜଣାଉଛୁ ।

ଏଚ୍.ଆଇ.ଜି.–୧/୨,
ସତ୍ୟସାଇ ଏନ୍‌କ୍ଲେଭ
ଖଣ୍ଡଗିରି, ଭୁବନେଶ୍ୱର–୭୫୧୦୩୦



# ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ

**ସୁରେଶ କୁମାର ପ୍ରଧାନ**

ଆନ୍ତର୍ଜାତିକ ସ୍ତରରେ ଓଡ଼ିଶାର ଗର୍ବ-ଗୌରବ ଓ ଗରିମାକୁ ପ୍ରତିପାଦିତ କରିଥିବା ଓଡ଼ିଆ ବୀରଙ୍କ ମଧ୍ୟରୁ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ଏକ ଶାଣିତ ବ୍ୟକ୍ତିତ୍ୱ । ଆଧୁନିକ ଓଡ଼ିଶାର ବିଶ୍ୱକର୍ମା, ସ୍ୱପ୍ନର ସମ୍ରାଟ, ସ୍ୱାଭିମାନୀ-ସ୍ୱର-ସମ୍ଭାଷର ଉଦ୍‌ଗାତା ବିଜୁବାବୁ ହିଁ ଯଥାର୍ଥରେ ଏକ କିମ୍ବଦନ୍ତୀ ପୁରୁଷ । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବ୍ୟକ୍ତିତ୍ୱ ନେତାଜୀ ସୁଭାଷ ବୋଷ ଓ କୁଳବୃଦ୍ଧ ମଧୁସୂଦନଙ୍କ ସମୁଜ୍ଜ୍ୱଳ ସାକ୍ଷର ହିଁ ବିଜୁଙ୍କ ବ୍ୟକ୍ତିସତ୍ତାର ଯଥାର୍ଥ ପରିପ୍ରକାଶ ।

ମହାନ୍ ଦେଶଭକ୍ତ, ପ୍ରବୀଣ କୂଟନୀତିଜ୍ଞ, ଶିଳ୍ପ ଓ ସମୃଦ୍ଧିର ସୌଦାଗର ବିଜୁ ପଟ୍ଟନାୟକଙ୍କ ଅସୀମ ଓଡ଼ିଆ ପ୍ରୀତି ପାଇଁ ଓଡ଼ିଆ ଜାତି ମୁଣ୍ଡଟେକି ନିଜକୁ ପ୍ରତିଷ୍ଠା କରିବାକୁ ସକ୍ଷମ ହୋଇଛି । ଆନ୍ତର୍ଜାତିକ ସମସ୍ୟା ଉପରେ ବିଶ୍ୱନେତୃବୃନ୍ଦ ବିଜୁବାବୁଙ୍କ ପରାମର୍ଶ ଲୋଡିବା ନିଶ୍ଚିତ ଭାବରେ ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ । ଓଡ଼ିଶାର ପ୍ରାଣକେନ୍ଦ୍ର ଭାବେ ଦୀର୍ଘ ଏକହଜାର ବର୍ଷର ଗୌରବଗାଥାକୁ ଅକ୍ଷୁଣ୍ଣ ରଖିଥିବା କଟକ ସହରସ୍ଥିତ ତୁଳସୀପୁର ଆନନ୍ଦ ଭବନରେ ବିଜୁବାବୁଙ୍କ ଜନ୍ମ । ୧୯୧୬ ମସିହା ମାର୍ଚ୍ଚ ୫ ତାରିଖର ପବିତ୍ର ଲଗ୍ନରେ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତା ଆଶାଲତା ଦେବୀଙ୍କ ଆନନ୍ଦ ଭବନରେ ଆନନ୍ଦର ଢେଉ ଖେଳିଯାଇଥିଲା ।

ଅନନ୍ୟ ଅନୁନାଦିତ, ମହାନ ଜନନାୟକ ସାହସ ଓ ସାମର୍ଥ୍ୟର ଅବିକଳ ପ୍ରତୀକ, ବିଜୁଙ୍କ ବାଲ୍ୟଶିକ୍ଷା ଥିଲା ଭବିଷ୍ୟତରେ ବଡହେବାର ପ୍ରେରଣା । ମାତ୍ର ୧୦ବର୍ଷ ବୟସରେ ଗୋରା ପୁଲିସର ଲାଠିମାଡକୁ ଖାତର ନକରି କଟକସ୍ଥିତ ସ୍ୱରାଜ ଆଶ୍ରମରେ ମହାତ୍ମା ଗାନ୍ଧୀଙ୍କ ସହିତ କରମର୍ଦ୍ଦନର ସୁଯୋଗ ସହିତ ଗାନ୍ଧିଜୀଙ୍କ ଆଶୀର୍ବାଦ ଲାଭ । ୧୯୩୨ ମସିହାରେ ରେଭେନ୍ସା କଲେଜରେ ଆଇ.ଏସ୍‌ସି ପଢୁଥିବାବେଳେ ସହଯୋଗୀଙ୍କ ସହ ସାଇକେଲରେ ପେଶୱାର ଯାତ୍ରା ତାଙ୍କ ସାହସ ଓ ନିର୍ଭୀକତାକୁ ପ୍ରମାଣ କରେ । ଜୀବନରେ ପ୍ରତିଜ୍ଞା ଓ ଦୃଢ ମନୋବଳ ତାଙ୍କୁ ଜଣେ ସଫଳ ବୈମାନିକ ହେବାର ସୁଯୋଗ ଦେଇଥିଲା । ୧୯୩୪ରେ ବି.ଏସ୍‌ସି ପାଠ ଶେଷ ହେବାପରେ ପାଇଲଟ୍ ଟ୍ରେନିଂ ଗ୍ରହଣ କରି ୧୯୩୬ ମସିହାରେ ଇଣ୍ଡିଆନ୍ ନ୍ୟାସନାଲ୍ ଏୟାରୱେଜ୍‌ର ପାଇଲଟ୍ ଭାବେ ଯୋଗଦାନ । ୧୯୩୮ ମସିହାରେ କାଶ୍ମୀରର ଏକ ସମ୍ଭ୍ରାନ୍ତ ପରିବାରରେ ବିଜୁ ବୈବାହିକ ସମ୍ବନ୍ଧ ସ୍ଥାପନ କରି ଜ୍ଞାନଦେବୀଙ୍କୁ ପତ୍ନୀ ରୂପେ ଗ୍ରହଣ କରି ସଂସାରୀ ହେଲେ ।

ଇଂରେଜ ସରକାରଙ୍କ ଅଧୀନରେ ଚାକିରି କରିଥିଲେ ମଧ୍ୟ ସେ ନିର୍ଭୀକତାର ସହ କାର୍ଯ୍ୟ କରୁଥିଲେ । ବିଦେଶୀ କବଳରୁ ଭାରତବର୍ଷକୁ ସ୍ୱାଧୀନ କରିବା ପାଇଁ ୧୯୪୦ରେ ଭାରତୀୟ ସ୍ୱାଧୀନତା ସଂଗ୍ରାମୀଙ୍କ ସହ ସାମିଲ ହେଲେ । ୧୯୪୩ରେ ଭାରତର ତତ୍କାଳୀନ ବଡଲାଟ୍ ଆଭେଲଙ୍କର ପାଇଲଟ୍ ହେବାର ସୁଯୋଗ ହିଁ ସ୍ୱାଧୀନତା ସଂଗ୍ରାମୀଙ୍କୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯୋଗାଇବାର ଅବକାଶ ସୃଷ୍ଟି କରିଥିଲା । ମାତୃଭୂମି ପାଇଁ ସଂଗ୍ରାମ କରିବାକୁ ଯାଇ ୧୯୪୩ ଜାନୁଆରୀ ୧୨ ତାରିଖରେ ଦିଲ୍ଲୀଠାରେ ବିଜୁବାବୁ ଗିରଫ ହେଲେ । ପରେ ପରେ ୧୯୪୫ ମସିହାରେ ସ୍ୱଦେଶୀ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିବାରୁ ତାଙ୍କୁ ପୁନଃ ଗିରଫ କରାଯାଇ ପ୍ୟାରୋଲ୍‌ରେ କାରାଭୁକ୍ତ କରାଗଲା । ଗିରଫ

ତଥା ବନ୍ଦୀ ହୋଇ ମଧ୍ୟ କୌଣସି ପ୍ରତିବନ୍ଧକକୁ ଖାତର ନକରି ଆଗକୁ ପାଦ ପକାଇବାରେ ସେ ଥିଲେ ଅଗ୍ରଣୀ ପୁରୁଷ । ବିଜୁବାବୁ ଯେ, ଦୃଢମନା ଏକଥା ଜାତୀୟ ସ୍ତରରୁ ଆନ୍ତର୍ଜାତିକ ସ୍ତରକୁ ଖେଳିଯିବାକୁ ଆଉ ବିଳମ୍ବ ନଥିଲା । ବିଶ୍ୱ ନେତୃବୃନ୍ଦଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ସେ ସକ୍ଷମ ହେଲେ । ୧୯୪୭ ମସିହାରେ ପଣ୍ଡିତ ନେହେରୁଙ୍କ ଅନୁରୋଧ ତଥା ପରାମର୍ଶକ୍ରମେ ସୁଦୂର ଇଣ୍ଡୋନେସିଆର ସ୍ୱାଧୀନତା ଆନ୍ଦୋଳନରେ ସାମିଲ ନେତୃବୃନ୍ଦଙ୍କ ସହ ଯୋଗସୂତ୍ର ସ୍ଥାପନ କରି ଆନ୍ତର୍ଜାତିକ ସମସ୍ୟା ସହିତ ନିଜକୁ ଅଂଗୀଭୂତ କଲେ । ୧୯୪୮ ମସିହା ଥିଲା ସମଗ୍ର ଓଡ଼ିଆ ଜାତି ପାଇଁ ଏକ ଗୌରବର ବର୍ଷ । ବିଜୁବାବୁ ତାଙ୍କ ସାହସିକତାର ପ୍ରଦର୍ଶନ କରି ବିଶ୍ୱବାସୀଙ୍କୁ ଚମତ୍କୃତ କରିଦେଇଥିଲେ । ଇଣ୍ଡୋନେସିଆର ପ୍ରଧାନମନ୍ତ୍ରୀ ସାହରିୟର ଓ ଉପରାଷ୍ଟ୍ରପତି ମହମ୍ମଦ ହଟ୍ଟାଙ୍କୁ ଡଚ୍‌ମାନଙ୍କ କବଳରୁ ଏକ ସିଙ୍ଗଲ ସିଟର ପ୍ଲେନ୍ 'ଡାକୋଟା' ଯୋଗେ ଉଠାଇ ଆଣି ଦିଲ୍ଲୀରେ ନିରାପଦରେ ପହଞ୍ଚାଇ ତାଙ୍କର ଅପୂର୍ବ ସାହସ ଓ ବୀରତ୍ୱ ପ୍ରତିପାଦନ କରିଥିଲେ । ଏଥିପାଇଁ ଇଣ୍ଡୋନେସିଆ ସରକାର ଦେଶର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଉପାଧିରେ ସମ୍ମାନିତ କରି କୃତଜ୍ଞତା ସ୍ୱରୂପ ତାଙ୍କୁ ୫୦୦କୋଟି ଟଙ୍କା ପ୍ରଦାନ କଲେ । ମାତ୍ର ସ୍ୱାଭିମାନୀ ବିଜୁବାବୁ ଇଣ୍ଡୋନେସିଆ ସରକାରଙ୍କ ପ୍ରଦତ୍ତ ଉପହାର ରାଶିକୁ ତାଙ୍କ ଦେଶର କଲ୍ୟାଣାର୍ଥେ ଫେରାଇ ଦେଇ ମହାନୁଭବତାର ପ୍ରଦର୍ଶନ କରିଥିଲେ ।

ବିଜୟାନନ୍ଦ ପଟ୍ଟନାୟକ ସମସ୍ତଙ୍କର ପ୍ରିୟ ବିଜୁବାବୁ ଯଥାର୍ଥରେ ଥିଲେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଓଡ଼ିଆ ବୀର । ଭାରତର ସାର୍ବଭୌମ, ଅଖଣ୍ଡତା ଓ ସ୍ୱାଧୀନତାର ସୁରକ୍ଷାରେ ସେ ପ୍ରାଣପାତ କରିବାକୁ ପଛାଇ ନଥିଲେ । ୧୯୪୮ ମସିହାରେ ପଡୋଶୀ ରାଷ୍ଟ୍ର ପାକିସ୍ଥାନର ଭାରତ ଆକ୍ରମଣ ସମୟରେ ବିଜୁବାବୁ ସର୍ବପ୍ରଥମେ ଭାରତୀୟ ସୈନ୍ୟଙ୍କୁ ବିମାନରେ ନେଇ ଶ୍ରୀନଗରରେ ପହଞ୍ଚାଇବାର ଗୁରୁଦାୟିତ୍ୱ ନିର୍ବାହ କରିଥିଲେ । ୧୯୬୨ ମସିହାରେ ଭାରତ-ଚୀନ୍ ଯୁଦ୍ଧବେଳେ ବିଜୁବାବୁଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ନେହରୁଙ୍କ ନିର୍ଦ୍ଦେଶରେ ସ୍ୱତନ୍ତ୍ର ପ୍ରତିନିଧିମାନେ ଗୁପ୍ତରେ ଆମେରିକା ଯାଇ ମାର୍କିନ୍ ନେତୃବୃନ୍ଦଙ୍କ ସାହାଯ୍ୟ ଓ ସହଯୋଗ ହାସଲ କରି ଚୀନ୍‌ର ହୀନ ଉଦ୍ୟମକୁ ପଣ୍ଡ କରିଥିଲେ । ତାଙ୍କର ଏହି ଦେଶପ୍ରୀତି ଓ ସମୟୋଚିତ ପଦକ୍ଷେପ ଯୋଗୁଁ ଦେଶ ଏକ ଚରମ ସଙ୍କଟରୁ ବର୍ତ୍ତି ଯାଇଥିଲା । ତତ୍କାଳେ ବିଜୁଙ୍କୁ ବୈଦେଶିକ ବ୍ୟାପାର ବିଭାଗକୁ ସ୍ୱତନ୍ତ୍ର ଭାବରେ ଆମନ୍ତ୍ରଣ କରାଯାଇ ତାଙ୍କୁ ଯଥୋଚିତ ସମ୍ମାନ ଦିଆଯିବାର ବ୍ୟବସ୍ଥା ହୋଇଥିଲା । ଦେଶର ଘଡିସନ୍ଧି ମୁହୂର୍ତ୍ତରେ ପ୍ରଧାନମନ୍ତ୍ରୀ ନେହରୁଙ୍କୁ ସେ ପ୍ରତିରକ୍ଷା ସମ୍ପର୍କିତ ବହୁ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଦେଉଥିଲେ ।

ବିଶ୍ୱର ଅଗ୍ରଗଣ୍ୟ ରାଷ୍ଟ୍ରନାୟକଙ୍କ ସହିତ ତାଙ୍କର ଘନିଷ୍ଠତା ଭାରତ ପାଇଁ ବହୁ ସମ୍ମାନ ଆଣିଦେବା କଥା ଯେ କେହି ସ୍ୱୀକାର କରିବ । ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ସେ ନିଜ ଜୀବନକୁ ବାଜି ଲଗାଇ ଜାପାନ, ବର୍ମା ଆଦି ରାଷ୍ଟ୍ରଙ୍କର ବୋମାମାଡକୁ ଖାତର ନକରି ଅନେକ ବ୍ରିଟିଶ୍ ପରିବାରକୁ ସଙ୍କଟରୁ ଉଦ୍ଧାର କରିଥିଲେ । ଭାରତୀୟ ମୁକ୍ତି ସଂଗ୍ରାମରେ ନିଜକୁ ସାମିଲ କରି ନେତାଜୀ ସୁଭାଷ ବୋଷଙ୍କ କ୍ରାନ୍ତିକାରୀ ପ୍ରଚାରପତ୍ରକୁ ବିମାନରେ ବଣ୍ଟନ କରୁଥିଲେ । ବ୍ରିଟିଶ୍ ବିରୁଦ୍ଧରେ ଆରମ୍ଭ ହୋଇଥିବା ଭାରତଛାଡ ଆନ୍ଦୋଳନ କାଳରେ ସେ ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅରୁଣା ଆସଫ୍ ଅଲ୍ଲୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତି ଜାତୀୟ ନେତାଙ୍କ ସହ ସମ୍ପର୍କ ରଖି ତାଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ ଯୋଗାଇ ଦେଉଥିଲେ । ମୁକ୍ତିଯୁଦ୍ଧର ଏହି ଦୁର୍ଦ୍ଧର୍ଷ ସେନାପତି ବିଜୁବାବୁଙ୍କର ଆଦର୍ଶ ହେଉଛନ୍ତି ମହାନ୍ ବୀର ନେପୋଲିୟନ୍ ବୋନାପାର୍ଟ । ଯଥାର୍ଥରେ କହିଲେ ଏକ ଯୋଦ୍ଧା ହିଁ ଅନ୍ୟ ଏକ ଯୋଦ୍ଧାର ଗୁରୁ ଆଉ ମାର୍ଗଦର୍ଶକ ହୋଇପାରେ ।

ଜାତୀୟ ରାଜନୀତିକୁ ପ୍ରଭାବିତ କରିଥିବା ବିଜୁବାବୁଙ୍କ ଲକ୍ଷ୍ୟ ଥିଲା ସମୃଦ୍ଧ ଓଡ଼ିଶା ଗଠନ । ଉତ୍କଳର ଅତୀତ ଗୌରବ ଓ ଗରିମାକୁ ଫେରାଇ ଆଣିବା ପାଇଁ ସେ ସର୍ବଦା ସଂଘର୍ଷରତ ଥିଲେ । ଜଣେ ସାଲିସ୍‌ବିହୀନ ରାଜନେତା ଭାବେ ଓଡ଼ିଶାର ସାମଗ୍ରିକ ବିକାଶର କଥା ସେ ଅହରହ ଚିନ୍ତା କରୁଥିଲେ । ତାଙ୍କର ଏହି ଓଡ଼ିଆ ପ୍ରୀତି ବା ସମୃଦ୍ଧ ଓଡ଼ିଶା ଗଠନର ସ୍ୱପ୍ନ ତାଙ୍କୁ 'ଓଡ଼ିଶାର ଦ୍ୱିତୀୟ ଖାରବେଳ' ବୋଲି ଆଖ୍ୟାୟିତ କରିଥିଲା । ଯଥାର୍ଥରେ ସେ ଥିଲେ ଆଧୁନିକ କଳିଙ୍ଗର ମୁକୁଟ ବିହୀନ ସମ୍ରାଟ । ତାଙ୍କ ଦ୍ୱାରା ବ୍ୟବହୃତ ରଥ ଥିଲା 'କଳିଙ୍ଗ ରଥ' । ପ୍ରାଚୀନ କଳିଙ୍ଗର ସାମାଜିକ, ଧାର୍ମିକ, ସାଂସ୍କୃତିକ ଓ ରାଜନୈତିକ ଧାରା ତଥା ଶ୍ରେଷ୍ଠତ୍ୱ ବିଜୁଙ୍କ ପ୍ରତିଟି ପଦକ୍ଷେପରେ ପ୍ରକଟିତ ହେଉଥିଲା । କଳିଙ୍ଗ ଶବ୍ଦକୁ ପ୍ରତିଟି

ଓଡ଼ିଆର ରକ୍ତବିନ୍ଦୁରେ ଶିହରଣ କଲାଭଳି ଡାକରା ହିଁ ବିଜୁବାବୁ ଦେଇଥିଲେ । ଅତୀତର ଗୌରବମୟ ଇତିହାସକୁ କର ଲେଉଟାଇବାରେ ବିଜୁଙ୍କ ପଦକ୍ଷେପ କାଳଜୟୀ ହୋଇଛି । ଆତ୍ମୋତ୍ସର୍ଗ, ବୀରତ୍ୱ, ସାହସ ଓ ନିର୍ଭୀକତା 'କଳିଙ୍ଗାଃ ସାହସିକା' ଏ ଉକ୍ତି ପ୍ରତିପାଦନ କରିବାକୁ ଯାଇ କଳିଙ୍ଗ ଏୟାରଲାଇନ୍ସ, କଳିଙ୍ଗ ସମ୍ବାଦପତ୍ର, କଳିଙ୍ଗ ଫାଉଣ୍ଡେସନ୍ସ, କଳିଙ୍ଗ ଟ୍ୟୁବ୍ସ, କଳିଙ୍ଗ ଆଇରନ୍ ୱାର୍କ୍ସ ଭଳି ଅନୁଷ୍ଠାନ ସେ ଗଠନ କରିଯାଇଛନ୍ତି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଲୋକପ୍ରିୟତାକୁ ପ୍ରସାରିତ କରିବାର ଲକ୍ଷ୍ୟ ନେଇ ବିଜୁବାବୁଙ୍କ ଦ୍ୱାରା ଯେଉଁ ଯୁଗାନ୍ତକାରୀ ପୁରସ୍କାର ପ୍ରଦାନର ବ୍ୟବସ୍ଥା ଗ୍ରହଣ କରାଯାଇଥିଲା, ତାହା ହେଉଛି 'କଳିଙ୍ଗ ପୁରସ୍କାର' । ୧୯୫୦ ମସିହାରେ କଳିଙ୍ଗ ଫାଉଣ୍ଡେସନ୍ ଗଠନ କରାଯାଇ ୧୯୫୧ରେ ଜାତିସଂଘର ୟୁନେସ୍କୋ ଜରିଆରେ କଳିଙ୍ଗ ପୁରସ୍କାର ପ୍ରଦାନର ଶୁଭାରମ୍ଭ ହେଲା ।

ବିଜୁବାବୁଙ୍କ ଦୂରଦୃଷ୍ଟି ଓ ଓଡ଼ିଆ ପ୍ରୀତିର ନିଦର୍ଶନ ହେଲା ପାରାଦୀପ ବନ୍ଦର । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହରୁଙ୍କୁ ପ୍ରଭାବିତ କରି ଓଡ଼ିଶା ଆସିବାର ବନ୍ଦୋବସ୍ତ କରି ବନ୍ଦରର ଶୁଭ ଦିଆଇଥିଲେ । ଖୁବ୍ ସ୍ୱଳ୍ପ ଦିନ ମଧ୍ୟରେ ୧୯୬୬ ମସିହା ସୁଦ୍ଧା ଭାରତର ଏକ ଗଭୀରତମ ବୃହତ୍ତମ ବନ୍ଦରଭାବେ ପାରାଦୀପ ବନ୍ଦର ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହେଲା । ଯଥାର୍ଥରେ ପାରାଦୀପ ବନ୍ଦର ହେଉଛି ବିଜୁବାବୁଙ୍କ ମାନସ ସନ୍ତାନ । ଯେଉଁଥିପାଇଁ ଓଡ଼ିଆ ଜାତି ଶିଳ୍ପ ସମୃଦ୍ଧ ହେବାର ସୁଯୋଗ ପାଇଛି ।

ବିଜୁ ପଟ୍ଟନାୟକଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱ କେବଳ ଓଡ଼ିଶା ଭିତରେ ସୀମିତ ନଥିଲା । ତେଣୁ ଜାତୀୟ ସ୍ତରର ନେତୃବୃନ୍ଦ ତାଙ୍କୁ ସମଗ୍ର ଦେଶର ଓ ଜନମାନସର ନେତା ବୋଲି ସ୍ୱୀକାର କରି ତାଙ୍କ ସମ୍ମାନାର୍ଥେ 'ବିଜୁ ପଟ୍ଟନାୟକ ଆନ୍ତର୍ଜାତିକ ବିମାନ ବନ୍ଦର'କୁ ସ୍ୱୀକୃତି ଦେଇଥିଲେ । ତାଙ୍କ ଦଶାହ କାର୍ଯ୍ୟରେ ଭାରତବର୍ଷର ମହାନ୍ ଜନନାୟକବୃନ୍ଦ– ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦର କୁମାର ଗୁଜୁରାଲ, ଭୂତପୂର୍ବ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର, ପୂର୍ବତନ ପ୍ରଧାନମନ୍ତ୍ରୀ ଦେବେ ଗୌଡ଼ା, ଦିଲ୍ଲୀ ମୁଖ୍ୟମନ୍ତ୍ରୀ ତଥା ବିଜେପି ନେତା ସାହେବ ସିଂ ବର୍ମା, ଜନତା ଦଳର ନେତା ଶରଦ ଯାଦବ, କେନ୍ଦ୍ରମନ୍ତ୍ରୀ ସି.ଏମ୍.ଇବ୍ରାହିମ୍ ଓ ଏସ୍.ଆର.ବୋମାଇ ପ୍ରମୁଖ ଯୋଗଦେବା ତାଙ୍କ ବ୍ୟକ୍ତିତ୍ୱ ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନକୁ ସୂଚାଇ ଦିଏ ।

ଜାତୀୟ ସ୍ତରରେ କଂଗ୍ରେସ ବିରୋଧରେ ମିଳିତ ସାମ୍ମୁଖ୍ୟ ଗଠନର ସେ ଥିଲେ ଅନ୍ୟତମ ବିଦ୍ଧାଣି । ମିଳିତ ସାମ୍ମୁଖ୍ୟର ରୂପକାର ଭାବେ ସେ ୧୯୮୯ରେ ଭି.ପି. ସିଂହଙ୍କ ସରକାରଙ୍କ ନିର୍ମାତା ଥିଲେ ବୋଲି କହିଲେ ସତ୍ୟର ଅପଳାପ ହେବନାହିଁ । ତାଙ୍କଠାରେ ଭାରତବର୍ଷର ପ୍ରଧାନମନ୍ତ୍ରୀ ହେବାର ସମସ୍ତ ଯୋଗ୍ୟତା ରହିଥିଲା । କିନ୍ତୁ ସେ ଅନ୍ୟକୁ ପ୍ରଧାନମନ୍ତ୍ରୀ କରାଉଥିବାବେଳେ ନିଜକୁ କ୍ଷମତାଠାରୁ ଦୂରେଇ ରଖୁଥିଲେ । ସମଗ୍ର ଭାରତବର୍ଷକୁ ନିଜର କର୍ମଭୂମି ଭାବେ ଗ୍ରହଣ କରିଥିବାରୁ ବିଜୁ ଉଭୟ କେନ୍ଦ୍ର ଓ ରାଜ୍ୟ ରାଜନୀତିରେ ନିଜକୁ ପ୍ରତିଷ୍ଠିତ କରାଇ ଦେଶ ଓ ଜାତିର ସେବାରେ ନିଜକୁ ଉତ୍ସର୍ଗ କରିଥିଲେ ।

ପ୍ରଚଣ୍ଡ ଦେଶଭକ୍ତ, ଧୂରୀଣ କୂଟନୀତିଜ୍ଞ, ମହାନ୍ ସଂଗ୍ରାମୀ, ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ଅଧିକାରୀ ବିଜୁବାବୁ ଯଥାର୍ଥରେ ହେଉଛନ୍ତି ଓଡ଼ିଆତ୍ୱର ଅସଲ ପ୍ରତୀକ । ତାଙ୍କର ଏକାନ୍ତ ନିଷ୍ଠା ଓ ଆନ୍ତରିକତା ଯୋଗୁଁ ଓଡ଼ିଆ ଜାତି ଆଜି ଏକ ବିକଶିତ ରାଜ୍ୟରେ ପରିଣତ ହୋଇ ଦେଶର ଅନ୍ୟ ରାଜ୍ୟସହ ସମକକ୍ଷ ହୋଇପାରିଛି । ତାଙ୍କର ନେତୃତ୍ୱ, ଅପୂର୍ବ ସାହସ ଯୋଗୁଁ ଏ ଜାତି ଆଜି ଗର୍ବରେ ମୁଣ୍ଡଟେକି ବାଟ ଚାଲିବାକୁ ସକ୍ଷମ ହୋଇଥିବାରୁ ଏହି ଓଡ଼ିଆ ବୀରଙ୍କ ପ୍ରତି ଏ ଜାତି ଚିରକୃତଜ୍ଞ ହୋଇ ରହିଛି ଓ ରହିଥିବ ।

ଖୁଣ୍ଟୁଣୀ, ଆଠଗଡ, କଟକ

❖ ❖ ❖

# ଓଡ଼ିଶାର ଆଦିବାସୀ ସଂସ୍କୃତି ଓ ଲୋକନୃତ୍ୟ

ଡଲିରାଣୀ ବ୍ରହ୍ମା

ଆମ ସଂସ୍କୃତି ଅନୈକ୍ୟ ମଧ୍ୟରେ ଐକ୍ୟ ସ୍ଥାପନା କରି ସମସ୍ତଙ୍କୁ ଆପଣାର କରିପାରିଛି । ଏହା ସମୟର ପାଦ ସହିତ ପାଦ ମିଳାଇଛି । କେଉଁଠି ନଦୀର ଗତି ପରିବର୍ତ୍ତନ କରି ପରିବର୍ତ୍ତିତ ହୋଇଯାଇଛି କିନ୍ତୁ ଏହାର ସ୍ୱାତନ୍ତ୍ର୍ୟ ମରିଯାଇନି । ଆମ ସଂସ୍କୃତି ପୂଜା କରେ ସତ୍ୟ, ଶିବ, ସୁନ୍ଦରର ଆଧାର ଭଗବାନଙ୍କୁ । କର୍ମଯୋଗରେ ଆମ ସଂସ୍କୃତି ଗଭୀର ବିଶ୍ୱାସୀ । କର୍ମର ମହତ୍ତ୍ୱ ସଂସ୍କୃତିକୁ ଯୁଗେ ଯୁଗେ ସ୍ୱୀକୃତ କରିଛି ।

ଆଦିବାସୀ ସଂସ୍କୃତି ସେ ଭିତରୁ ଅନ୍ୟତମ । ତାଙ୍କ ଭାଷା, ଚଳଣୀ, ନୃତ୍ୟ ସଙ୍ଗୀତ ଆଚାର ବ୍ୟବହାର, ଧର୍ମଧାରଣା କଳା କାରିଗରୀ, ଉତ୍ପାଦାନ ପ୍ରଣାଳୀ, ପୋଷାକପତ୍ର, ଅଳଙ୍କାର ଓ ଆଚରଣ ତାଙ୍କୁ ମହୀୟାନ ଓ ଉଦାର କରିପାରିଛି, ଏକଥା ନିଃସନ୍ଦେହରେ କୁହାଯାଇପାରେ । ତଥାପି ତାଙ୍କର ଶିକ୍ଷାର ବିକାଶ ସଚେତନତା ବୃଦ୍ଧି ଘଟିବା ନିହାତି ଆବଶ୍ୟକ ରହିଛି । କାରଣ ତା’ ଦ୍ୱାରା ସମାଜରେ ଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର ହୋଇପାରିବ ।

ଆଦିବାସୀ ସଂସ୍କୃତିରେ ଅନେକ ସୂକ୍ଷ୍ମ ମାନବିକ ମୂଲ୍ୟବୋଧ ରହିଛି । ସେମାନଙ୍କର ଅର୍ଥନୈତିକ ଓ ସାମାଜିକ ଚଳଣି ଅନୁଧ୍ୟାନ କଲେ ଜଣାପଡିବ ସେମାନେ କାମ କଲା ବେଳେ ନାଚ, ଗୀତ ଗାଇ କାମ କରନ୍ତି । ଆଦିବାସୀ ସମାଜରେ ନାରୀର ସ୍ଥାନ ଉଚ୍ଚରେ । ଜୀବନ, ଜୀବିକା ପାଇଁ ପ୍ରତ୍ୟେକ ସ୍ତ୍ରୀ ପୁରୁଷମାନଙ୍କ ଠାରୁ ଆଗରେ ଥାଆନ୍ତି । ସେ ଚାଷକାମ ହେଉ ବା ଜଙ୍ଗଲ ପଦାର୍ଥ ସଂଗ୍ରହ ଅବା ଅନ୍ୟକାମ, ସେମାନେ ଛୁଆକୁ ଶାଢୀରେ ବାନ୍ଧି କାମ କରିବାକୁ ନିର୍ଭୟରେ ବାହାରି ପଡନ୍ତି । ଅବଶ୍ୟ ଆଜିକାଲି କିଛି କିଛି ପୁରୁଷଙ୍କ ସାଙ୍ଗରେ ମିଶି କାମ କରୁଛନ୍ତି । ଆଦିବାସୀ ପରିବାରରେ ଝିଅ ଜନ୍ମ ହେଲେ ସେମାନେ ବେଶୀ ଖୁସି ହୁଅନ୍ତି । କାରଣ ଝିଅ ବାହାଘରରେ ସେମାନେ ଯୌତୁକ ଦିଅନ୍ତି ନାହିଁ । ବରଂ ପୁଅ ଘରର ଲୋକେ ବୋହୂ ପାଇଁ ସୁନା ଗହଣା ନେଇଯାଆନ୍ତି ।

ଆଦିବାସୀ ଧାଙ୍ଗ୍ଡା ଧାଙ୍ଗ୍ଡି ମଧ୍ୟରେ ମିଳାମିଶା କରିବାର ବାରଣ ନଥାଏ । ସେମାନେ ପ୍ରତି ସନ୍ଧ୍ୟାରେ ନାଚ, ଗୀତ ଗାଇ କର୍ମମୟ ଜୀବନର କଷ୍ଟକୁ ଲାଘବ କରିଥାନ୍ତି । ସେମାନେ ସର୍ବଦା କାମ କରି ବଞ୍ଚିଥାନ୍ତି । ଦିନ ମଜୁରୀ କରି ସେମାନେ ଯେତେଟଙ୍କା ରୋଜଗାର କରିଥାନ୍ତି, ସେସବୁ ତାଙ୍କର ଖାଦ୍ୟପେୟ ଓ ମୌଜ୍‌ମଜ୍‌ଲିସ୍‌ରେ ଖର୍ଚ୍ଚ କରିଥାନ୍ତି । ସେମାନେ କେତେବେଳେ ବଡବଡ ସ୍ୱପ୍ନ ଦେଖନ୍ତି ନାହିଁ କି ଅସତ୍ ଉପାୟରେ ରୋଜଗାର କରିବାକୁ ପସନ୍ଦ କରନ୍ତି ନାହିଁ ।

ଆଦିବାସୀ ସଂସ୍କୃତିରେ ଆଦିବାସୀମାନେ ଅତିଥି ସତ୍କାରକୁ ଗୁରୁତ୍ୱ ଦେଇଥାନ୍ତି । ଯାହା ତାଙ୍କ ପାଖରେ ଥାଏ, ଅତିଥିଙ୍କ ପାଇଁ ମନପ୍ରାଣ ଦେଇ ଖର୍ଚ୍ଚ କରିଥାଆନ୍ତି । ଅତିଥି ସେବା କରି ସେମାନେ ନିଜକୁ ଧନ୍ୟ ମନେ କରନ୍ତି ।

ବୃକ୍ଷ ଓ ଜଙ୍ଗଲ ଆଦିବାସୀଙ୍କର ଅତିପ୍ରିୟ । ସେମାନେ ତାହାକୁ ଦେବତା ପରି ମାନିଥାନ୍ତି । ବୃକ୍ଷ ଜଙ୍ଗଲର କ୍ଷତି କରୁଥିବା ଲୋକଙ୍କୁ ସେମାନେ ସହ୍ୟ କରିପାରନ୍ତି ନାହିଁ ।

ଲୋକନୃତ୍ୟ– ଆଦିବାସୀ ଜୀବନର ଏହା ଏକ ଅବିଚ୍ଛେଦ୍ୟ ଅଙ୍ଗ । ଆଦିବାସୀ ସମ୍ପ୍ରଦାୟ ସମସ୍ତ ଜାତିର ଲୋକନୃତ୍ୟର ପ୍ରାୟ ଏକ । ଉଦାହରଣ ସ୍ୱରୂପ, ଓରାମ୍‌ମାନଙ୍କର ଲୋକନୃତ୍ୟକୁ ନିଆଯାଉ । କିମ୍ବଦନ୍ତୀରୁ ସ୍ପଷ୍ଟ ଯେ ‘ଓରାମ୍’ମାନେ ସହସ୍ର ବର୍ଷ ପୂର୍ବେ ଦାକ୍ଷିଣାତ୍ୟର ଗୋଦାବରୀ ନଦୀ କୂଳ ଓ ଉତ୍ତରରେ ଛୋଟନାଗପୁର ଅଞ୍ଚଳରେ ବସବାସ କରୁଥିଲେ । ପୂର୍ବେ

ଏମାନେ 'କୁରୁବ୍ୟ' ବୋଲି ବିବେଚିତ ହେଉଥିଲେ । ପ୍ରଥମରୁ ଏମାନେ ଯାଯାବର ଥିଲେ । କାଳଗର୍ଭରୁ ଏମାନେ ପଶୁପାଳନ, କୃଷି ଓ ପଶୁଶିକାର ଆଦି ବିଦ୍ୟାରେ ଦକ୍ଷତା ହାସଲ କରିଥିଲେ । ପରେ ଏମାନେ ବିଖ୍ୟାତ ନେତା 'କାରାଖ'ଙ୍କ ନେତୃତ୍ୱରେ 'ସୋନ୍'ନଦୀ (ବିହାରର ଶାହାବାଦ ଜିଲ୍ଲା) ଉପକୂଳବର୍ତ୍ତୀ ଅଞ୍ଚଳରେ ଏକ ରାଜତ୍ୱ ସ୍ଥାପନ କରିଥିଲେ । ସେଠାରୁ 'ମ୍ଲେଛ'ଙ୍କ ଦ୍ୱାରା ବିତାଡିତ ହୋଇ ଏମାନେ ଛୋଟନାଗପୁର, ଯିଶପୁର, ସୁର୍‌ଗୁବା, ସିଂହଭୂମ ଏବଂ ଶଙ୍ଖ କୋଏଲ ଓ ସୁବର୍ଣ୍ଣରେଖା ନଦୀ କୂଳବର୍ତ୍ତୀ ଗାଙ୍ଗପୁର (ସୁନ୍ଦରଗଡ ଓ ସମ୍ବଲପୁର ଜିଲ୍ଲା) ଅଞ୍ଚଳରେ ବିସ୍ତାର ଲାଭ କଲେ ଓ ଜଙ୍ଗଲ କାଟି କୃଷି କାର୍ଯ୍ୟରେ ଲିପ୍ତ ହେଲେ ।

ପୂର୍ବରୁ ଛୋଟନାଗପୁର ଅଞ୍ଚଳ ମୁଣ୍ଡାଙ୍କ ଅଧୀନରେ ଥିଲା, ପରେ 'ଓରାମ୍'ମାନେ ଏହାର ସଂସ୍ପର୍ଶରେ ଆସିଲେ । 'ଓରାମ୍'ମାନଙ୍କର ଇତିହାସରୁ ଜଣାଯାଏ ଯେ ନୃତ୍ୟ ସଙ୍ଗୀତ ସେମାନଙ୍କର ଅବିଚ୍ଛେଦ୍ୟ ଅଙ୍ଗ । କୃଷି କର୍ମରେ ଆଦିବାସୀମାନେ ସର୍ବଦା ଲିପ୍ତ ରହୁଥିଲେ । ଜୀବନର ପ୍ରତି କ୍ଷଣକୁ ସେମାନେ ମୂଲ୍ୟବାନ ଭାବି କଠିନ ପରିଶ୍ରମ ଦ୍ୱାରା ସାମାଜିକ ଜୀବନକୁ ସରସ ସୁନ୍ଦର କରି ଗଢି ତୋଳୁଥିଲେ ।

ଗ୍ରୀଷ୍ମ ଓ ଶରତ ଋତୁରେ ସେମାନେ ସାରାରାତି ନାଚ ଗୀତରେ ନିମଜ୍ଜିତ ରହି କଟେଇ ଦେଇଥାନ୍ତି । ସାମାଜିକ ଓ ଧାର୍ମିକ ଉତ୍ସବରେ ମଧ୍ୟ ସେମାନେ ନାଚ ଗୀତରେ କଟେଇଥାନ୍ତି । ସାଧାରଣତଃ ଭୋଜନ ପରେ ସନ୍ଧ୍ୟାରେ ନୃତ୍ୟ ଆରମ୍ଭ ହୁଏ ।

ଶୀତ ବସନ୍ତ ଋତୁରେ ଫସଲ ଅମଳ ହେଉଥିବାରୁ ଏହା ତାଙ୍କର ବିବାହ ଓ ପର୍ବପର୍ବାଣିର ଋତୁ ହୋଇଥାଏ । ଏହି ସମୟରେ ଧାର୍ମିକ ପର୍ବ 'କୋହ୍ଲାବେଞ୍ଜା'(ବିଶ୍ୱ ଜନନୀ ବିବାହ) ସମ୍ପନ୍ନ ହୁଏ, କୋହ୍ଲାବେଞ୍ଜା ଉତ୍ସବରେ 'ହାଡବୋଓରି' (ହାଡପୋଡା) ନୃତ୍ୟଯାତ୍ରା ହୁଏ । ଶରତ ଶେଷରେ ମାର୍ଚ୍ଚ ମାସରେ ଫଗୁ ପାଳନ ହୁଏ । ଏପ୍ରିଲ୍‌ରେ 'ସାରହୁଲ୍' ପର୍ବ ଅତି ଜାକଜମକରେ ପାଳନ ହୁଏ । 'ସାର୍‌ହୁଲ୍' ପର୍ବରେ ସୂର୍ଯ୍ୟ ଓ ପୃଥିବୀର ବିବାହ ସମ୍ପନ୍ନ ହୋଇଥାଏ । ଏହାପରେ ସେମାନେ ଚାଷବାସ, ବନଫୁଲ ଓ ଫଳ ସଂଗ୍ରହ ଆରମ୍ଭ କରିଥାଆନ୍ତି ।

ଏଫ୍/୧୯, ସେକ୍ଟର–୭
ରାଉରକେଲା–୩

❖ ❖ ❖

# ଭୂସଂସ୍କାର ଆଇନ ଉଲ୍ଲଂଘନ କରିଥିବା କମ୍ପାନୀମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ପଦକ୍ଷେପ

ରାଜ୍ୟର ବିଭିନ୍ନ ଜିଲ୍ଲାରେ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ୧୪୦ଟି କମ୍ପାନୀ ୫୩୫୦.୪୦ ଏକର ବେସରକାରୀ ଜମି କିଣିଛନ୍ତି । ସେଥିରୁ ମାତ୍ର ୧୫ଟି କମ୍ପାନୀ ୧୮୭୬.୦୫ ଏକର ଜମି ଭୂସଂସ୍କାର ଆଇନ ଧାରା ୭୩(ସି)ରେ ସରକାରଙ୍କଠାରୁ ଅନୁମତି ନେଇଛନ୍ତି । ବାକି ୧୨୫ଟି କମ୍ପାନୀ ୩୪୭୪. ୩୫ ଏକର ଜମି ବିନା ଅନୁମତିରେ କିଣିଛନ୍ତି । ଏପରି କିଣିବା ଓଡ଼ିଶା ଭୂସଂସ୍କାର ଆଇନର ବିରୁଦ୍ଧାଚରଣ କରୁଛି । ଏଣୁ ରାଜସ୍ୱ ମନ୍ତ୍ରୀ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ପାତ୍ର ଭୂସଂସ୍କାର ଆଇନ ଅନୁଯାୟୀ ସମ୍ପୃକ୍ତ କମ୍ପାନୀ ଉପରେ ସିଲିଂ ବହିର୍ଭୂତ କେସ୍ ଦାଖଲ ପାଇଁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ତଥା ଯେଉଁ ଯେଉଁ ତହସିଲଦାରମାନେ ଏହି ଜମି ବେଆଇନ ଭାବରେ କମ୍ପାନୀ ନାମରେ ରେକର୍ଡଭୁକ୍ତ କରିଛନ୍ତି, ସେହି ତହସିଲଦାରମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିବା ସଙ୍ଗେ ସଙ୍ଗେ ତୁରନ୍ତ ଜିଲ୍ଲାପାଳଙ୍କ ସହ କଥାବାର୍ତ୍ତା କରି ପଟ୍ଟା ରଦ୍ଦ କରିବା ପାଇଁ ଉପଯୁକ୍ତ କର୍ତ୍ତୃପକ୍ଷଙ୍କଠାରେ ଅପିଲ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

# ପବିତ୍ର ସେ ଉତ୍କଳ ଭୂଇଁ

ଚନ୍ଦ୍ରମଣି ସେଠୀ

ବନ୍ଦେ ଉତ୍କଳ ଜନନୀ ! ବନ୍ଦେ ଉତ୍କଳ ଜନନୀ !...

ଏହି ଜୟଧ୍ୱନୀ ଓଡ଼ିଆ ଭାଷାଭାଷୀଙ୍କ ହୃଦୟରେ ଉନ୍ମାଦନା ସୃଷ୍ଟି କରେ । ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ଗୋଟିଏ ସୂତ୍ରରେ ବାନ୍ଧି ରଖିଛି ଓଡ଼ିଶାବାସୀଙ୍କୁ । ପରସ୍ପର ମଧ୍ୟରେ ସ୍ନେହ, ବାତ୍ସଲ୍ୟ ମମତାର ପୁଟଦେଇ ଏକତ୍ୱ ସ୍ଥାପନ କରିପାରିଛି । ଓଡ଼ିଶାର ଅତୀତ ଇତିହାସକୁ ପାଠ କଲେ ଜଣାଯାଏ ଯେ, ଓଡ଼ିଆ ସାଧବ ପୁଅମାନେ ବୋଇତରେ ଜାଭା, ବାଲିଦ୍ୱୀପ ଓ ସୁମାତ୍ରା ଦ୍ୱୀପକୁ ଯାତ୍ରା କରୁଥିଲେ । ବିଦେଶରୁ ପ୍ରଚୁର ଧନରତ୍ନ ଧରି ସେମାନେ ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଓଡ଼ିଶା ହୋଇଥିଲା ବିଶ୍ୱରେ ବିଭବଶାଳୀ ରାଜ୍ୟ । ପୁଣି ଦେଖିବାକୁ ଗଲେ ଇତିହାସ ପୃଷ୍ଠା ସୂଚନା ଦିଏ ଯେ, ଏହି ଓଡ଼ିଶା ମହାନ୍ ଏବଂ ଏହି ଜନନୀ ଓଡ଼ିଶା ଜନ୍ମ ଦେଇଛି ମହାନ ବୀର ପୁରୁଷମାନଙ୍କୁ, ଯେଉଁମାନେ ଦେଶର ସ୍ୱାଧୀନତା ସଂଗ୍ରାମରେ ଜାତୀୟ ସ୍ରୋତରେ ସାମିଲ ହୋଇ ଭାରତବର୍ଷରେ ସୁନାମ ଅର୍ଜନ କରିଅଛନ୍ତି । ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ବୀର ସୁରେନ୍ଦ୍ର ସାଏ, ଲକ୍ଷ୍ମଣ ନାଏକ, ଜୟୀ ରାଜଗୁରୁ, ବାଜି ରାଉତ, ଯେଉଁମାନେ କି ମାତୃଭୂମିର ରକ୍ଷା ପାଇଁ ଇଂରେଜ ଶାସକଙ୍କ ଦ୍ୱାରା ସହିଦ ହୋଇଛନ୍ତି । ପୁଣି ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବ୍ୟାସକବି ଫକୀର ମୋହନ ସେନାପତି, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ପଣ୍ଡିତ ନୀଳକଣ୍ଠ ଦାସ, କବିବର ରାଧାନାଥ ରାୟ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ସ୍ୱଭାବ କବି ଗଙ୍ଗାଧର ମେହେର, ଡକ୍ଟର ହରେକୃଷ୍ଣ ମହତାବ ଓ ଶ୍ରୀ ବିଜୁ ପଟ୍ଟନାୟକଙ୍କର ମାତୃଭୂମି ଓଡ଼ିଶାପ୍ରତି ଅବଦାନ କମ୍ ନୁହେଁ । ମାତୃଭୂମିର ଗୁଣଗାନ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ପୁନରୁଦ୍ଧାର ପାଇଁ ଏମାନଙ୍କର ଚେଷ୍ଟା ଉଲ୍ଲେଖନୀୟ । କଟକର ଜରାଜୀର୍ଣ୍ଣ ଅବସ୍ଥାରେ ରହିଥିବା ବାରବାଟୀ ଦୁର୍ଗ, ଭୁବନେଶ୍ୱରର ଖଣ୍ଡଗିରି ଓ ଉଦୟଗିରି ଓଡ଼ିଶାର ଅତୀତ କୀର୍ତ୍ତିରାଜିର ସୂଚନା ଦିଏ ।

ଓଡ଼ିଶା ପୁଣ୍ୟମୟୀ ଏବଂ ଏହାର ମାଟି ପବିତ୍ର । ସ୍ୱୟଂ ଜଗନ୍ନାଥ ଦାରୁବ୍ରହ୍ମ ରୂପରେ ନୀଳାଚଳରେ ବିରାଜମାନ ଓ ପୂଜିତ । ନୀଳାଚଳ କ୍ଷେତ୍ର ପୁରୀ ହେଉଛି ମର୍ତ୍ତ୍ୟର ବୈକୁଣ୍ଠ । ଓଡ଼ିଶା ହେଉଛି ଏକ ମନ୍ଦିର ମାଳିନୀ ପ୍ରଦେଶ । ଅଶେଷ ଦେବଦେବୀଙ୍କ ମନ୍ଦିର ସୂକ୍ଷ୍ମ କାରୁକାର୍ଯ୍ୟ ମଣ୍ଡିତ ଏହି ଓଡ଼ିଶା ମାଟି ବିଦେଶୀ ପର୍ଯ୍ୟଟକମାନଙ୍କୁ ଆକର୍ଷଣ କରେ । ପୁରୀରେ ବିଶ୍ୱପ୍ରସିଦ୍ଧ ଜଗନ୍ନାଥ ମନ୍ଦିର, କୋଣାର୍କର ସୂର୍ଯ୍ୟମନ୍ଦିର ଓ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଯେତିକି ଆକର୍ଷଣୀୟ ବାସ୍ତବରେ ତା'ଠାରୁ ଯଥେଷ୍ଟ ଗୁଣରେ ମନୋମୁଗ୍ଧକର । ପୁରୀର ସ୍ୱୟଂ ଦାରୁବ୍ରହ୍ମ ବିଶ୍ୱକୁ ସ୍ନେହ, ଶାନ୍ତି, ଦୟା, କ୍ଷମାରେ ବନ୍ଧନ କରି ଏକ ସମନ୍ୱୟ ରକ୍ଷା କରିଛନ୍ତି । ଉତ୍କଳମଣି ଗୋପବନ୍ଧୁ ଦାସ କହିଛନ୍ତି–

ଉତ୍କଳରେ ନେତା ନାହିଁ ପ୍ରୟୋଜନ
ଉତ୍କଳର ନେତା ସ୍ୱୟଂ ନାରାୟଣ ।

ଓଡ଼ିଶାର ପ୍ରତ୍ୟେକ ମନ୍ଦିର ସୂକ୍ଷ୍ମ କାରୁକାର୍ଯ୍ୟରେ ପରିପୂର୍ଣ୍ଣ । ଏହି କାରୁକାର୍ଯ୍ୟ ଦର୍ଶକମାନଙ୍କୁ ଯେତିକି ଆଶ୍ଚର୍ଯ୍ୟାନ୍ୱିତ ନକରେ, ଓଡ଼ିଶାର ଶିଳ୍ପୀମାନଙ୍କର କଳା କୁଶଳତା ହୃଦୟକୁଞ୍ଜରେ ସଦାକାଳ ପାଇଁ ଚିତ୍ର ଅଙ୍କିତ କରିଥାଏ । ଭକ୍ତମାନଙ୍କର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ହୃଦୟକୁ ଭକ୍ତିପ୍ଲାବିତ କରିଥାଏ । ପୁଣି ଏହି ଓଡ଼ିଶାରେ ମହାନ୍ ଭକ୍ତ ଜନ୍ମ ହୋଇ ଭକ୍ତିର ଭାବଧାରା ହୃଦୟେ ହୃଦୟେ ସଂଚାର କରିଅଛନ୍ତି । ଓଡ଼ିଶା ହେଉଛି ପଞ୍ଚସଖାଙ୍କର ଜନ୍ମଭୂମି ଓ କର୍ମଭୂମି । ସେହିମାନେ ଭକ୍ତିର ମାଧ୍ୟମ ନିରୂପଣ କରି ଭକ୍ତମାନଙ୍କ ହୃଦୟରେ ଜଗନ୍ନାଥ ତତ୍ତ୍ୱର ବିଶେଷତ୍ୱ ଉପସ୍ଥିତ କରି ଅଛନ୍ତି । ଓଡ଼ିଆ ରାମାୟଣ, ଓଡ଼ିଆ ମହାଭାରତ, କପିଳସଂହିତା ବୃହଦ୍

ସଂହିତା, ସ୍କନ୍ଦ ପୁରାଣ, ବ୍ରହ୍ମ ପୁରାଣ, ହରିବଂଶ, ମତ୍ସ୍ୟ ପୁରାଣ ଇତ୍ୟାଦି ଅମୂଲ୍ୟ ଗ୍ରନ୍ଥ ସମ୍ଭାରରେ ଓଡ଼ିଶା ଗୌରବ ମଣ୍ଡିତ ।

ଆମ ଓଡ଼ିଶା ହେଉଛି ଏକ ପଲ୍ଲୀ ବହୁଳ ପ୍ରଦେଶ । ପ୍ରତ୍ୟେକ ପଲ୍ଲୀର ପ୍ରାକୃତିକ ସୌନ୍ଦର୍ଯ୍ୟ ମନମୁଗ୍ଧକର । ଚାଷୀ ମୂଲିଆ, ଗରିବ ଖଟିଖିଆଙ୍କୁ ନେଇ ଏହି ପଲ୍ଲୀଗୁଡିକ ଆନନ୍ଦ ମୁଖରିତ କେବଳ ପଖାଳ, ଶାଗ, ପିଆଜରେ । ବର୍ତ୍ତମାନ ପ୍ରତ୍ୟେକ ପଲ୍ଲୀରେ ଶିକ୍ଷା, ସ୍ୱାସ୍ଥ୍ୟ ବ୍ୟବସ୍ଥା ଯଥେଷ୍ଟ ପରିମାଣରେ ଯୋଗାଇ ଦିଆଯାଇଛି । ପଞ୍ଚାୟତିରାଜ ବ୍ୟବସ୍ଥା ଦ୍ୱାରା ପ୍ରତ୍ୟେକ ପଲ୍ଲୀର ସୁଖ ସମୃଦ୍ଧି ବୃଦ୍ଧି ପାଇଛି । ସରକାରଙ୍କର 'ଗରିବ ହଟାଅ' ବ୍ୟବସ୍ଥା ପଲ୍ଲୀବାସୀଙ୍କ ଦୁଃଖ ଲାଘବ କରିଛି । ସାଧାରଣତଃ ଓଡ଼ିଶା କହିଲେ, କେତେଗୁଡିଏ ପଲ୍ଲୀର ସମାହାର । ଓଡ଼ିଶାର ଅଧିକାଂଶ ଅଞ୍ଚଳ ଆଦିବାସୀ ବହୁଳ, ସେମାନେ ଘଞ୍ଚ ଜଙ୍ଗଲ ମଧ୍ୟରେ ଏବେ ସୁଦ୍ଧା ବସବାସ କରୁଅଛନ୍ତି । ସରକାର ସେମାନଙ୍କ ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ ଓ ବାସଗୃହ ଯୋଗାଇ ଦେଇଅଛନ୍ତି । ସେମାନଙ୍କ ପାଇଁ ଅତ୍ୟାବଶ୍ୟକ ସାମଗ୍ରୀ ସୁଲଭ ଦରରେ ଯୋଗାଇ ଦିଆଯାଉଛି । ଛୋଟ ଛୋଟ ସହର ସେମାନଙ୍କ ନିକଟ ସ୍ଥାନମାନଙ୍କରେ ନିର୍ମାଣ କରାଯାଇଛି । ଗମନାଗମନର ସୁବିଧା ଯଥେଷ୍ଟ ପରିମାଣରେ ସେମାନଙ୍କ ପାଇଁ କରାଯାଇଛି ।

ଓଡ଼ିଶା ହେଉଛି ଏକ ଖଣିଜ ସମ୍ପଦ ସମୃଦ୍ଧ ରାଜ୍ୟ । ଏହାର ଭୂ–ଗର୍ଭରେ ଯଥେଷ୍ଟ ପରିମାଣରେ ଖଣିଜ ଦ୍ରବ୍ୟ ରହିଅଛି । ଲୌହପଥର, ମାଙ୍ଗାନିଜ, ଗ୍ରାଫାଇଟ୍ ଇତ୍ୟାଦି ମୂଲ୍ୟବାନ ଖଣିଜ ପଦାର୍ଥ ଆମ ଓଡ଼ିଶାରେ ରହିଅଛି । ବର୍ତ୍ତମାନ ଏହାକୁ ସୁବିନିଯୋଗ କରି ଓଡ଼ିଶାକୁ ସମୃଦ୍ଧଶାଳୀ କରିବାକୁ ସରକାର ଚେଷ୍ଟିତ । ଅଧୁନା ଓଡ଼ିଶାର ବହୁତ ସ୍ଥାନରେ କଳକାରଖାନାମାନ ଗଢି ଉଠିଛି । ହଜାର ହଜାର ଶ୍ରମଜୀବୀ ଏହି କାରଖାନାମାନଙ୍କରେ ନିଯୁକ୍ତ ହୋଇ ଜୀବିକା ନିର୍ବାହ କରୁଅଛନ୍ତି ।

ଯେତେବେଳେ ଇଂରେଜମାନେ ଆମ ଭାରତବର୍ଷରେ ଶାସନ କରୁଥିଲେ ସେତେବେଳେ ସ୍ୱତନ୍ତ୍ର ଓଡ଼ିଶା ବୋଲି କିଛି ନଥିଲା । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ସେତେବେଳେ ଶାସନ ଚକ୍ରାନ୍ତ କେବଳ ସେମାନଙ୍କର ସ୍ୱାର୍ଥ ଉପରେ ପର୍ଯ୍ୟବସିତ ଥିଲା । ଇଂରେଜ ଶାସକମାନଙ୍କ ଦ୍ୱାରା ଓଡ଼ିଶା ଭାଷାଭାଷୀ ଅଞ୍ଚଳ ଖଣ୍ଡ ଖଣ୍ଡ ହୋଇ ଭିନ୍ନ ଭିନ୍ନ ପ୍ରଦେଶ ଯଥା– ବଙ୍ଗ, ବିହାର, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶ ସହିତ ମିଶି ରହିଥିଲା । ଯାହାଫଳରେ ଓଡ଼ିଆ ଗୋଟିଏ ଜାତି ଓ ଓଡ଼ିଆଭାଷା କେବଳ ଓଡ଼ିଶା ପାଇଁ ଏଥିରେ ବ୍ୟତିକ୍ରମ ପରିଲକ୍ଷିତ ହୋଇଥିଲା । ଫଳରେ ଭାରତରେ ଆମ ଓଡ଼ିଶା ଅଗ୍ରଗତିର ବହୁତ ପଛରେ ଥିଲା । ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଏକ ଆନ୍ଦୋଳନ ହୋଇଥିଲା । ଏହି ଆନ୍ଦୋଳନରେ ବାରିଷ୍ଟର ମଧୁସୂଦନ ଦାସ, ଫକୀରମୋହନ ସେନାପତି, ବ୍ରଜ ମୋହନ ପଟ୍ଟନାୟକ, ବଳଭଦ୍ର ସୁଆର, ମହନ୍ତ ବିହାରୀ ଦାସ, ମଦନମୋହନ ମିଶ୍ର ଓ ଶ୍ରୀପତି ମିଶ୍ର ଭଳି ଅନେକ ସାମିଲ ହୋଇଥିଲେ । ଉତ୍କଳଗୌରବ ମଧୁସୂଦନ ଦାସ ବ୍ୟକ୍ତ କରିଥିଲେ–

ମାତୃଭୂମି ମାତୃଭାଷାର ମମତା ଯା' ହୃଦେ ଜନମି ନାହିଁ
ତାଙ୍କୁ ଯେବେ ଜ୍ଞାନୀ ଗଣରେ ଗଣିବା ଅଜ୍ଞାନୀ ରହିବେ କାହିଁ ?

ମାତୃଭୂମି ଓଡ଼ିଶାର ଗୌରବ ଓ ଐତିହ୍ୟ ବଜାୟ ରଖିବା ପାଇଁ ଏବଂ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ଏକ ସୂତ୍ରରେ ବନ୍ଧନ ନିମିତ୍ତ ରାମଚନ୍ଦ୍ର ଭଞ୍ଜଦେଓଙ୍କ ଅଧ୍ୟକ୍ଷତାରେ କଟକଠାରେ ୧୯୦୩ ମସିହାର ଡିସେମ୍ବର ୩୦ ଓ ୩୧ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀର ମୂଳଲକ୍ଷ୍ୟ ହେଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମୂହର ଏକତ୍ରୀକରଣ ତଥା ଓଡିଆଙ୍କ ସ୍ୱାର୍ଥରକ୍ଷା । ଫକୀର ମୋହନ ସେନାପତି, ରାଧାନାଥ ରାୟ, ଭକ୍ତକବି ମଧୁସୂଦନ, କବି ଦାମୋଦର ପ୍ରଭୃତି ସାହିତ୍ୟିକବୃନ୍ଦ ୧୯୦୩ ମସିହାରେ 'ଉତ୍କଳ ସାହିତ୍ୟ ସମାଜ' ନାମରେ ଏକ ଜାତୀୟ ପ୍ରତିଷ୍ଠାନ କଟକଠାରେ ପ୍ରତିଷ୍ଠା କଲେ । କ୍ରମେ କ୍ରମେ ଏହା ଅଭୁତପୂର୍ବ ଜାତୀୟ ଜାଗରଣରେ ପରିଣତ ହେଲା ।

ଉତ୍କଳ ସମ୍ମିଳନୀକୁ ଉଜ୍ଜୀବିତ କରିଥିଲେ ଉତ୍କଳଗୌରବ ମଧୁସୂଦନ ଦାସ । ତାଙ୍କର ଜାତିପ୍ରେମ ସମସ୍ତ ଓଡ଼ିଆ ଭାଷାଭାଷୀଙ୍କ ହୃଦୟରେ ଗଭୀର ଭାବ ସୃଷ୍ଟି କରିଥିଲା । ତାଙ୍କ ସହିତ ଅନ୍ୟ ତୁଙ୍ଗ ନେତାମାନେ ସହଯୋଗ କରିଥିଲେ । ବହୁତ ବାଦବିବାଦ ଫଳରେ ୧୯୩୫ରେ ଇଂରେଜ ସରକାର ଭାରତ ଶାସନ ଆଇନ ନାମକ ଏକ ନୂତନ ନୀତି ପ୍ରଣୟନ କଲେ । ଏହି ଆଇନ୍ ଅନୁସାରେ ପ୍ରତ୍ୟେକ ପ୍ରଦେଶରେ ପ୍ରାଦେଶିକ ସରକାରଙ୍କୁ ଶାସନ କାର୍ଯ୍ୟ ପରିଚାଳନା ଲାଗି ସୁଯୋଗ ଦିଆଗଲା, ଯାହାକି ଉତ୍କଳପ୍ରଦେଶ ଗଠନ ଦିଗରେ ଏହି ଆଇନ ବିଶେଷ ସହାୟକ ହୋଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଇଂଲଣ୍ଡ ପାର୍ଲାମେଣ୍ଟରେ ଉତ୍କଳପ୍ରଦେଶ ଗଠନ ସଂକ୍ରାନ୍ତରେ ଏକ ବିଲ୍ ଆଗତ କରାଗଲା । ୧୯୩୬ ମସିହା ମାର୍ଚ୍ଚ ୩ ତାରିଖରେ ଏହି ବିଲ୍ ଇଂରେଜମାନଙ୍କ ଦ୍ୱାରା ଅନୁମୋଦନ ଲାଭକଲା । କିନ୍ତୁ ସେହିବର୍ଷ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ଓଡ଼ିଶାକୁ ଏକ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶର ସ୍ୱୀକୃତି ମିଳିଲା ।

ସେହିବର୍ଷ ଅପ୍ରେଲ ମାସରେ ୬ଗୋଟି ଜିଲ୍ଲାକୁ ନେଇ ଗଠିତ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କଲା କିନ୍ତୁ ସିଂହଭୂମି, ମେଦିନୀପୁର, ନୂଆଗଡ, ଫୁଲଝର, ସୋନାପେଣ୍ଟ, ଇଚ୍ଛାପୁରମ୍, ମଞ୍ଜୁଷା, ଜଳନ୍ତର ପ୍ରଭୃତି ଅଞ୍ଚଳ ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶରେ ରହିଗଲା ।

ପରେ ୧୯୩୬ ମସିହା ଅପ୍ରେଲ ପହିଲାରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ମିଳିଲା ସତ, କିନ୍ତୁ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଓଡ଼ିଶା ପ୍ରଦେଶ ସହିତ ସାମିଲ ହୋଇପାରିଲେ ନାହିଁ । ୧୯୪୮ ଜାନୁଆରୀ ୧ତାରିଖରେ ଷଢେଇକଳା ଓ ଖରସୁଆଁ ଗଡଜାତ ଅଞ୍ଚଳ ଓଡ଼ିଶାରେ ସାମିଲ୍ ହୋଇଥିଲା ସତ, କିନ୍ତୁ ପୁନର୍ବାର ଏହା ଓଡ଼ିଶାରୁ ବିଚ୍ଛିନ୍ନ ହୋଇଥିଲା । ୧୯୪୯ ମସିହା ଜାନୁଆରୀ ୧ ତାରିଖରେ ମୟୂରଭଞ୍ଜ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହେଲା । ୧୯୫୬ ମସିହା ଡିସେମ୍ବର ୧୪ ତାରିଖରେ ୨୫ଟି ଗଡଜାତ ଅଞ୍ଚଳ ଓଡ଼ିଶା ପ୍ରଦେଶ ସହିତ ସାମିଲ୍ ହୋଇଥିଲା ।

ଉତ୍କଳଗୌରବ ମଧୁସୂଦନ ଦାସ ଓଡ଼ିଆ ଭାଇ ଭଉଣୀମାନଙ୍କୁ ଡାକରା ଦେଇଥିଲେ–

ଉଠରେ ଉଠରେ ଉତ୍କଳ ସନ୍ତାନ, ଉଠିବୁ ତୁ କେତେ ଦିନେ
ପୁରୁବ ଗୌରବ ପୁରୁବ ମହିମା ପଡୁନାହିଁ କି ତୋ ମନେ ।

ପୁଣି ମଧ୍ୟ କହିଥିଲେ–

ଜାତି ନନ୍ଦିଘୋଷ ଚଳିବକି ଭାଇ ସ୍ୱାର୍ଥକୁ ସାରଥୀ କଲେ
ଟାଣେ କିରେ ଗାଡି ଦାନାର ତୋବଡା ଘୋଡା ମୁଖେ ବନ୍ଧାଥିଲେ,

ତାଙ୍କର ଏହି ଉଦ୍‌ବୋଧନ ଓଡ଼ିଆ ଭାଷାଭାଷୀଙ୍କ ହୃଦୟରେ ନବ ଚେତନା ଜାଗ୍ରତ କରିଥିଲା । ଓଡ଼ିଆ ଜାତି ଓ ଓଡ଼ିଆ ଭାଷାର ମାନ୍ୟତା ପାଇଁ ସେ ଯେଉଁ ଉତ୍କଳ ସମ୍ମିଳନୀ ଗଠନ କରିଥିଲେ, ସେ ସୂଚାଇ ଥିଲେ–

ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇଦେ ଭାଇ ଡେଇଁ ପଡି ସିନ୍ଧୁନୀରେ,

ଯେଉଁ ମହାନ୍ ପୁରୁଷମାନେ ଜାତୀୟ ସ୍ରୋତରେ ସାମିଲ ହୋଇଥିଲେ ସେମାନଙ୍କ ଆପ୍ରାଣ ଚେଷ୍ଟା ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଦେଇଛି, ସେମାନଙ୍କ ଉଦ୍ଦେଶ୍ୟରେ ଉତ୍କଳମଣି ଗୋପବନ୍ଧୁ ଦାସ ଗାଇ ଉଠିଥିଲେ–

ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ ପଥେ ଯେତେ ଗାଡ
ପୁରୁ ତହିଁ ପଡି ମୋର ମାଂସ ହାଡ ।

ଏଥିରୁ ପ୍ରମାଣ ମିଳେ ଯେ ଉତ୍କଳମଣି ଗୋପବନ୍ଧୁ ଦାସ ଜାତିର ଜଣେ ପ୍ରାଣକର୍ତ୍ତା । ଜାତିପାଇଁ ତାଙ୍କ ହୃଦ ସଦା ବିଦାରିତ ଥିଲା ।

ଗୌରବ ମଣ୍ଡିତା ଉତ୍କଳର କାହାଣୀ ଡଙ୍କେଇ ଯାଇ ବିଶ୍ୱର ପ୍ରତି କୋଣ ଅନୁକୋଣରେ କଳା, ଭାସ୍କର୍ଯ୍ୟ, ମନ୍ଦିର, ସ୍ଥାପତ୍ୟ, ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟ, ନଦନଦୀ, ଶିଳ୍ପ, ଖଣି, ସର୍ବୋପରି ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତ ପାଇଁ ନିଜର ଗୌରବ ମଣ୍ଡିତ କରିଛି ।

ଉତ୍କଳପ୍ରଦେଶ ଆଜି ସର୍ବତ୍ର ବନ୍ଦନୀୟ । ଉତ୍କଳ ପ୍ରଦେଶର ଭାଗ୍ୟ ଆଜି ସମସ୍ତ ଓଡ଼ିଆ ଭାଷାଭାଷୀଙ୍କ ହସ୍ତରେ, ଉତ୍କଳର ସର୍ବାଙ୍ଗ ସୁଖ ସମୃଦ୍ଧି ଲାଭ ପାଇଁ ସମସ୍ତ ଓଡ଼ିଆଭାଷୀଙ୍କ ମଧ୍ୟରେ ଐକ୍ୟଭାବ ଜାଗ୍ରତ ହେବା ଉଚିତ । ନିଃସ୍ୱାର୍ଥପର ଭାବରେ ପରସ୍ପର ମଧ୍ୟରେ ସ୍ନେହ ବନ୍ଧନ ଆବଶ୍ୟକ । ଓଡ଼ିଶା ପ୍ରଦେଶକୁ ବଳିଷ୍ଠ କରିବା ନିମନ୍ତେ ସମସ୍ତଙ୍କର ସହଯୋଗ ଏକାନ୍ତ କାମ୍ୟ ।

ଶିକ୍ଷାର ପ୍ରସାର ଏପରି ହେବା ଉଚିତ ଯେ, ଯେପରି ସମସ୍ତ ଅନଗ୍ରସର ଶ୍ରେଣୀ ଜନତାଙ୍କର ମାନସିକ ଅଗ୍ରଗତି ସମ୍ଭବ ହେବ ।

ସମସ୍ତ ଓଡ଼ିଆ ଭାଷାଭାଷୀ ଜାତୀୟ ଭାବନାରେ ଜଡିତ ହୋଇ ଏହାର ସମୃଦ୍ଧି କାମନା କରିବା ବିଧେୟ ।

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ
ପ୍ରକାଶନ ନିର୍ଦ୍ଦେଶାଳୟ, କଟକ

❖ ❖ ❖

# ଓଡ଼ିଆ ସଂସ୍କୃତିକୁ କଣ୍ଢେଇ ଶିଳ୍ପର ଦାନ

ମୀନାକ୍ଷୀ ସାହୁ

ଉତ୍କଳୀୟମାନେ କେଉଁକାଳରୁ ପୁତ୍ତଳିକା ଏବଂ ସେମାନଙ୍କର ନାଟ ସହିତ ସୁପରିଚିତ । ନାଟରେ ମଧ୍ୟ ପ୍ରତିଫଳିତ ହୋଇଛି ସେମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନବୋଧର ଇତିହାସ । ସମଗ୍ର ଭାରତବର୍ଷରେ ଏହା ପୁଣି ଏକମାତ୍ର ଭୂମି, ଯାହା ସବୁପ୍ରକାର କଣ୍ଢେଇମାନଙ୍କର ବିଚିତ୍ର ଲୀଳା–ମଞ୍ଚ ହେବାର ଗୌରବ ଲାଭ କରିଛି ଏବଂ ସେମାନଙ୍କ କଳାବୋଧ ଦ୍ୱାରା ପୃଥିବୀର ଅନ୍ୟ ଅଞ୍ଚଳର ବାସିନ୍ଦାମାନେ ପ୍ରଭାବିତ ହୋଇଛନ୍ତି । ସେମାନେ ସଖୀକଣ୍ଢେଇ, ଗୋପଲୀଳା କଣ୍ଢେଇ ଓ ରାବଣଛାୟା ଭାବରେ ହିଁ ସୁପରିଚିତ ।

ଆମର ଯାହା କିଛି ଥିଲା ଏବଂ ଯାହା କିଛି ଅଛି ସେ ସକଳ ବିଭବ ଜୀବନ ବଞ୍ଚିବାର ସର୍ବୋତ୍ତମ ଉପାଦାନ ନୁହେଁ । ପରିବର୍ତ୍ତନଶୀଳ ସମୟର ସ୍ରୋତରେ ଯାହା ଭାସି ନଯାଇ ଆମ ଚେତନାରେ ତଥାପି ରହିଥାଏ ଏବଂ ଏ ରହିଯାଇଥିବା ବିଭବ ଆମ ନିଶାସକ୍ତ ମାନସିକତାର ନିଦାନ ପରି କାର୍ଯ୍ୟ କରେ । ତାହାହିଁ ସଂସ୍କୃତି ଏବଂ ସ୍ରୋତଟିର ଅନ୍ୟନାମ ସଭ୍ୟତା । ପଛଦିନକୁ ମଣିଷ ଭଲ ପାଏ । ମାତ୍ର ତାର ସବୁକିଛି ଆଦୌ ଭଲ ନୁହେଁ । ବ୍ୟକ୍ତି ଅନ୍ୟ ସମୟରେ ଅତୀତର ମୂଳଉତ୍ସକୁ ମଧ୍ୟ ଅମୃତ ପରି ଗ୍ରହଣ କରେ । ତାହା ଅତ୍ୟନ୍ତ ରୋଚକ ବୋଲି ପ୍ରଚାର କରେ । ନିଜର ସଂକୀର୍ଣ୍ଣ ସ୍ୱାର୍ଥ ଓ ସୁଖ ପାଇଁ ଅନ୍ୟମାନଙ୍କ ଭିତରେ ବିଷର ଉପସର୍ଗଗୁଡିକ ଚତୁର ରୀତିରେ ସଞ୍ଚରିଦିଏ । ନିଜେ ମଜାମାରେ ଏବଂ ଅନ୍ୟମାନଙ୍କୁ ମଉଜ ବଜାରରେ ସଜବେଶରେ ବିହାର କରିବାର ସୁଯୋଗ ସୃଷ୍ଟି କରେ ଏବଂ ସମୟକ୍ରମରେ ନିଶା ଛାଡିଗଲା ପରେ ମଣିଷ ବିଭବର ସନ୍ଧାନ ପାଏ । ଏହି ଅସଲ ବିଭବ ହିଁ ସଂସ୍କୃତି ।

ସମୟ ମଣିଷକୁ ସମସ୍ୟାର ହେତୁ ସଂକ୍ରାନ୍ତରେ ସଚେତନ କରେ । ସେ ଅତୀତ ଓ ବର୍ତ୍ତମାନର ମୂଲ୍ୟାୟନର ସୁଯୋଗ ପାଏ । ଜୀବନ–ବେଦୀରେ ସତ୍ୟକୁ ଅନୁଭବ କରେ । କଳା, ସାହିତ୍ୟ, ଧର୍ମ, ଦର୍ଶନ, ନୃତ୍ୟ, ଗୀତ, ସାମାଜିକ ଚାଲିଚଳଣି, ରୀତିନୀତି, ବିଚାରଧାରା ଭିତରେ ଥାଏ ଜୀବନବୋଧର ନିଦାନ । ସେ ସମସ୍ତ ଭିତରେ ବ୍ୟକ୍ତି ଆପଣା ଓ ଜାତିର ପ୍ରାଣସତ୍ତାକୁ ଗଭୀରଭାବେ ଉପଲବ୍ଧି କରେ । ପ୍ରତି ମୁହୂର୍ତ୍ତରେ ମଣିଷର ଚେତନାରେ ଜମି ରହିଥିବା ପାଷାଣବିଦ୍ ପୁରୀଷ ପୁଷ୍କରଣର ମହୋଷଧି ହୁଏ କଳା, ସାହିତ୍ୟ, ଧର୍ମ ଓ ଦର୍ଶନ । ରଙ୍ଗମଞ୍ଚ ହେଉଛି ଗୋଟିଏ ଜାତିର ଅତୀତ, ବର୍ତ୍ତମାନ, ଭବିଷ୍ୟତ, ସଭ୍ୟତା ଓ ସଂସ୍କୃତିର ଏକ ଚିତ୍ରଭୂମି । ହଜାର ହଜାର ବର୍ଷ ଧରି ସମୟର ବିବର୍ତ୍ତିତ ସ୍ରୋତରେ ତଥାପି ବଞ୍ଚି ରହିଥିବା କଣ୍ଢେଇ ନାଟ ମଣିଷର ଚେତନା, ସଂସ୍କୃତି ଓ ଭବସତ୍ତାର ବାର୍ତ୍ତାବହ ।

କଣ୍ଢେଇ ନାଟ ଗୋଟିଏ ଜାତିର ଉନ୍ନତି କଳାବୋଧର ରମ୍ୟ ପରିପ୍ରକାଶ । ସୁଦୂର ଅତୀତରେ ଶିଳ୍ପୀମାନେ ମାଟି, ପଥର, କାଠରେ ସୁନ୍ଦର ସୁନ୍ଦର ପ୍ରତିମାମାନ ତିଆରି କରୁଥିଲେ । ପରବର୍ତ୍ତୀ କାଳରେ କନା, ପାଉଁଶ, କାଗଜ, ପ୍ଲାଷ୍ଟିକ, ଟିଣ, ଚମଡା, ବଲ୍, ବେଲୁନ୍, ନଡିଆ ଷଢେଇ ପରି କେତେ କେତେ ବିଚିତ୍ର ଉପାଦାନରେ ନାଟ କଣ୍ଢେଇ ତିଆରି କରାଯାଏ । ଯେଉଁ ଉପକରଣରେ ସେଗୁଡିକ ତିଆରି ହୋଇଥାଉ ନା କାହିଁକି, ସେମାନଙ୍କ ଭିତରେ ଗୋଟିଏ ଜାତିର ଲୋକମାନଙ୍କର ବେଶଭୂଷା, ରୀତିନୀତି, ଚଳଣି ସବୁକିଛି ପ୍ରତିଫଳିତ ହୋଇଥାଏ । ଶିଳ୍ପୀର ଆତ୍ମା ରୂପାୟିତ ହେଉଥାଏ ସେମାନଙ୍କ ସାମଗ୍ରୀକ ରୂପ ଭିତରେ । ସେମାନେ ଯେପରି ଜୀବନହୀନ ନୁହନ୍ତି, ବରଂ ଜୀବନ୍ତ ମାନଙ୍କଠାରୁ ଅଧିକ ରମ୍ୟ ଓ ସମ୍ବେଦନଶୀଳ ସ୍ରଷ୍ଟାର ସାମଗ୍ରୀକ ଚେତନାର କଳାତ୍ମକ

ରୂପାୟନ । ସେମାନଙ୍କ ରୂପସତ୍ତା, ସ୍ରଷ୍ଟା ବଞ୍ଚିଥିବା ସାମାଜିକ ଓ ସାଂସ୍କୃତିକ ପରିବେଶ, ସମୟ ଓ ପରିସ୍ଥିତିର ପ୍ରତିଲିପି । ତେଣୁ ଉପାଦାନଗତ ବିଭିନ୍ନତା ଥିଲେ ସୁଦ୍ଧା ବିଭିନ୍ନ ଦେଶର କଣ୍ଢେଇମାନଙ୍କର ରୂପରେ ସେ ଜାତିର ସାଂସ୍କୃତିକ ବିବର୍ତ୍ତନର ସକଳ ପ୍ରକ୍ରିୟାକୁ ଅନୁଭବ କରିହୁଏ ।

ବହୁ ବିବର୍ତ୍ତନର ପ୍ରକ୍ରିୟା ଭିତରେ ହଜାର ହଜାର ବର୍ଷ ଧରି କଣ୍ଢେଇ ନାଟ ତା'ର ଲୋକପ୍ରିୟତା ଯୋଗୁଁ ବଞ୍ଚି ରହିଛି । ସମୟ ବଦଳୁଛି । ବଦଳୁଛି ମଣିଷର ରୁଚି, ଆଦର୍ଶ, ଜୀବନଚର୍ଯ୍ୟା, ସାମାଜିକ ବ୍ୟବସ୍ଥା ସବୁକିଛି । ତା'ର ନବ ନବ ଉନ୍ମେଶାଳିନୀ ପ୍ରଜ୍ଞା ଯେତେସବୁ ନୂତନତାକୁ ଜନ୍ମଦେଇଛି, ତା'ର ଭୂମି ହୋଇଛି ଇତିହାସ ।

ମଣିଷ ବଦଳିଛି, କଣ୍ଢେଇ ବଦଳିଛି । ମଣିଷର କୌତୁହଳରୁ ସେଦିନ ଯେଉଁ କଣ୍ଢେଇ ଜନ୍ମନେଇଥିଲା ତା'ର ନିବିଡ ସମ୍ବନ୍ଧ ଥିଲା ଅଦୃଶ୍ୟ ଓ କାଳ୍ପନିକ ସତ୍ତା ସହିତ । ସେମାନେ ପ୍ରତୀକ ହୋଇଯାଇଥିଲେ । ପୂଜା ପାଉଥିଲେ । ଜୀବନ ଓ ବିଶ୍ୱାସ ସହିତ ଯୋଡି ହୋଇଯାଇଥିଲେ । ପୁତ୍ତଳିକାମାନେ ତା ନାନ୍ଦନିକ ଅବବୋଧର ପ୍ରତୀକ ହୋଇଥିଲେ ଏବଂ ଯାହା ତା' ପକ୍ଷେ କହିବା ଓ ଆଚରଣ କରିବା ସମ୍ଭବ ହେଉନଥିଲା, ତାହା ସମ୍ଭବ ହେଲା ନିର୍ଜୀବମାନଙ୍କ ଦ୍ୱାରା । ବିଶ୍ୱାସ ଭିତରେ ବିଚରଣ କରୁଥିବା କଣ୍ଢେଇମାନେ ଆଉ ଏକ ଭୂମିକୁ ଓହ୍ଲେଇ ଆସିଲେ । ତାହା ହେଉଛି ରଙ୍ଗଭୂମି । ସୁବେଶିତ ବେଶବସନରେ ଏ ଭୂମିରେ ସେମାନେ ଅଭିନୟ ପ୍ରବଣ ହେଲେ ।

'କଣ୍ଢେଇ ନାଟରୁ ନାଟକର ଜନ୍ମ' ପ୍ରସଙ୍ଗକୁ ଆଳକରି ଆଜି ପର୍ଯ୍ୟନ୍ତ ନାଟ୍ୟ ସମୀକକ୍ଷମାନଙ୍କ ମଧ୍ୟରେ ଯୁକ୍ତି ଓ ବିଚାରର ରଣଧନ୍ଦୋଳ ଚାଲିଆସିଛି । କାହାଠାରୁ କିଏ ସୃଷ୍ଟି, କାହାର ଜନ୍ମ ପ୍ରଥମେ, ଏକଥାକୁ ଗାରଟାଣି ପ୍ରମାଣ କରିବା ଅସମ୍ଭବ । ମାତ୍ର କଣ୍ଢେଇ ଓ ଅଭିନେତାମାନେ ପରସ୍ପରକୁ ଯେ ପ୍ରଭାବିତ କରି ଆସୁଛନ୍ତି, ଏହାକୁ ଅସ୍ୱୀକାର କରାଯାଇନପାରେ । ଭାରତୀୟ ନାଟ୍ୟଶାସ୍ତ୍ରଗୁଡିକରେ ବ୍ୟବହୃତ ସୂତ୍ରଧର, ସ୍ଥାପକ, ଛାୟାନୃତ୍ୟ, ଜଳମଣ୍ଡପିକା ଆଦି ଶବ୍ଦଗୁଡିକର ବ୍ୟାଖ୍ୟା କାଳରେ ସମୀକ୍ଷକମାନେ ତା'ର ଐତିହାସିକ–ବିବର୍ତ୍ତନ ପ୍ରକ୍ରିୟାକୁ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ଚୀନ୍‌ର ହାତ, ସୂତା ଓ ଛାୟା କଣ୍ଢେଇ ନାଟ, ଇଣ୍ଡୋନେସିଆର ଛାୟାନାଟ, ଇଂଲଣ୍ଡର ପଞ୍ଚ୍ ଓ ଜୁଡି, ଇଟାଲୀର ମେରି ଓ ନେଟ ସମ୍ପୃକ୍ତ ଦେଶଗୁଡିକର ବିଦଗ୍ଧ ନାଟକକୁ ବହୁ ଭାବରେ ପ୍ରଭାବିତ କରିଛି । ଜାପାନର 'ଦୋରୁରୀ' କଣ୍ଢେଇ, କାବୁକୀ ଓ ନହ ମଞ୍ଚର ସକଳ ବିବର୍ତ୍ତନର କାରଣ ହୋଇଛି । କଣ୍ଢେଇମାନଙ୍କର ନାଚକୁ ଆଚରଣ କରି ମଣିଷ ତା'ର ଅଙ୍ଗଚାଳନ ଓ କୌଶଳର ପରିବର୍ତ୍ତନ କରିଛି । ଜାପାନୀମାନେ କଣ୍ଢେଇ ନାଟର କାହାଣୀକୁ ବିଦଗ୍ଧ ନାଟକର କାହାଣୀ ଭାବରେ ଗ୍ରହଣ କରିଛନ୍ତି ।

(Brandon, R.James- 1982, PP-3-4)

କେବଳ ଅତୀତରେ ନୁହେଁ, ଆଧୁନିକ ନାଟ୍ୟକାରମାନେ କଣ୍ଢେଇମାନଙ୍କୁ ଭିନ୍ନ ରୀତିରେ ମଞ୍ଚ ଉପରକୁ ଆଣୁଛନ୍ତି । ଆପଣାର ପ୍ରତୀକ ଓ ପରୀକ୍ଷାଧର୍ମୀ ନାଟକରେ ମଧ୍ୟଯୁଗୀୟ ରହସ୍ୟବାଦୀ ନାଟକର ରୀତିକୁ ଗ୍ରହଣ କରୁଛନ୍ତି । ଅଭିନେତା ଅଭିନେତ୍ରୀମାନେ ବିଭିନ୍ନ ପଶୁ ପକ୍ଷୀ, ଦେବତା ଓ ଦାନବଙ୍କ ମୁଖାପିନ୍ଧି ମଞ୍ଚ ଉପରକୁ ଆସୁଛନ୍ତି । ପାଶ୍ଚାତ୍ୟ ଜଗତର ନାଟ୍ୟରୀତିରେ ଯେଉଁ ପରିବର୍ତ୍ତନର ସ୍ୱର ଶୁଭୁଛି, ତାହା ଭାରତୀୟମାନେ ମଧ୍ୟ ସ୍ୱୀକାର କରିଛନ୍ତି । ଗୋବିନ୍ଦ ଶୂରଦେଓଙ୍କ ପାରମ୍ପାରିକ ନାଟକ 'ମେଘନାଦ ବଧ'ରେ ମଞ୍ଚ ଉପରେ ସାପ ଓ ଚିଲଙ୍କ ଖେଳ, ଦୋଳାରୁ ପରୀ ଓହ୍ଲେଇବାର ଦୃଶ୍ୟ ସଂଯୋଜନା କରାଯାଇଛି । ବିଖ୍ୟାତ କନ୍ନଡ ନାଟ୍ୟକାର ଗିରିଶଙ୍କ 'ହୟ ବଦନ'ରେ ଘୋଡା, ବିଜୟ ମିଶ୍ରଙ୍କ 'ଜଣେ ରାଜାଥିଲେ'ରେ ଓଟ, ରତ୍ନାକର ଚଇନିଙ୍କ 'ଅସ୍ଥିର ଉପତ୍ୟକା'ରେ ଷଣ୍ଢ, ରଣଜିତ୍ ପଟ୍ଟନାୟକଙ୍କ 'ମେଷ ରାକ୍ଷସ'ରେ ମେଣ୍ଢା ଏବଂ ହୃଷୀକେଶ ପଣ୍ଡାଙ୍କର 'ବ୍ରହ୍ମ ରାକ୍ଷସ'ରେ ମୁଖାପିନ୍ଧି ଅଭିନେତାମାନେ ଅଭିନୟ କରିଛନ୍ତି ।

ମଞ୍ଚସଜ୍ଜାରେ ଗୋବିନ୍ଦଚନ୍ଦ୍ର ଶୂରଦେଓ, ଅଶ୍ୱିନୀ କୁମାର ଘୋଷ, ମନୋରଞ୍ଜନ ଦାସ, ରମେଶ ପାଣିଗ୍ରାହୀ, କାର୍ତ୍ତିକଚନ୍ଦ୍ର ରଥ, ବିଶ୍ୱଜିତ୍ ଦାସ ପ୍ରମୁଖ ନାଟ୍ୟକାର ଯେଉଁ ମଡେଲର ପରିକଳ୍ପନା କରିଛନ୍ତି ସେ ସବୁଥିରେ ପୁତ୍ତଳିକାମାନଙ୍କର ପ୍ରଭାବ ବେଶ୍ ସୁସ୍ପଷ୍ଟ । ମଣିଷର ଭେକ ପରି କଣ୍ଢେଇମାନଙ୍କର ଭେକ ବଦଳିଛି– ମାତ୍ର ଆତ୍ମା ବଦଳିନି । ତାହା ସେମିତି ଅତୁଟ ରହିଛି । ବରଂ ସେମାନେ ସମଗ୍ର ପୃଥିବୀରେ ନିଜର ପ୍ରଭାବ ବିସ୍ତାର କରିଛନ୍ତି, ଜନମନକୁ ଆପଣେଇ ନେଇଛନ୍ତି, ପୃଥିବୀ ସେମାନଙ୍କର ବଶତା ସ୍ୱୀକାର କରିଛି ।

ଭାରତ ଚୀନ, ମିଶର ଓ ଗ୍ରୀସ୍‌ରେ ଏକଦା ଲୋକପ୍ରିୟ କଳାରୂପେ ପ୍ରସିଦ୍ଧି ଲାଭ କରିଥିବା କଣ୍ଢେଇନାଟ ସମୟକ୍ରମେ ଧର୍ମ ପ୍ରଚାରକ, ପରିବ୍ରାଜକ, ସମ୍ରାଟ ଓ ଭ୍ରାମ୍ୟମାଣ କଳାଜୀବୀମାନଙ୍କ ଦ୍ୱାରା ସମଗ୍ର ଏସିଆ, ୟୁରୋପ ଓ ପୃଥିବୀର

ଅନ୍ୟ ଅଞ୍ଚଳରେ ପ୍ରସାରିତ ହୋଇଛି । ଇଣ୍ଡୋନେସିଆର ବିଭିନ୍ନ ଦ୍ୱୀପ ଜାଭା, ସୁମାତ୍ରା, ବାଲି (ପ୍ରାୟ ୭ମ/୮ମ ଶତାବ୍ଦୀ) ମାଳୟ (୯/୧୦ମ ଶତାବ୍ଦୀ) କୋରିଆ (୧୫ଶ/୧୬ଶ ଶତାବ୍ଦୀ), ଜାପାନ (୧୫ଶ ଶତାବ୍ଦୀ), ଆଦି ପ୍ରାଚ୍ୟ ଏବଂ ଇଟାଲି (୧୭ଶ ଶତାବ୍ଦୀ), ଫ୍ରାନ୍ସ, ଜର୍ମାନ (୧୬ଶ ଶତାବ୍ଦୀ)ଇଲଣ୍ଡ, ଋଷ (୭/୧୮ଶ ଶତାବ୍ଦୀ), ଚେକୋସ୍ଲୋଭାକିଆ (୧୯ଶ ଶତାବ୍ଦୀ), କାନାଡା, ହଂଗେରୀ, ଭିଏତ୍‌ନାମ, ଆମେରିକା, ଯୁଗୋସ୍ଲୋଭିଆ (୨୦ଶ ଶତାବ୍ଦୀ) ଏବଂ ଅଷ୍ଟ୍ରେଲିଆ (୧୯୬୫ ମସିହା) ବିଭିନ୍ନ ପ୍ରକାରର କଣ୍ଢେଇ ନାଚକ ପରୀକ୍ଷା ଭୂମି ହୋଇଛି ।

ମଧ୍ୟଯୁଗରେ ୟୁରୋପର ଶାସକମାନେ ନାଟକଗୁଡିକର ଅଭିନୟ ପ୍ରଦର୍ଶନକୁ ବାରଣ କରିଛନ୍ତି । ସପ୍ତଦଶ ଶତାବ୍ଦୀରେ ଇଂଲଣ୍ଡର ପାର୍ଲିଆମେଣ୍ଟ ଅନ୍ୟନାଟ ପ୍ରଦର୍ଶନକୁ ନିଷିଦ୍ଧ କରିଥିବାବେଳେ କେବଳ କଣ୍ଢେଇ ନାଚକୁ ସ୍ୱୀକୃତ ପ୍ରଦାନ କରିଛନ୍ତି । (Currel David- 1974-P.P.1) । ମାଳୟରେ ଆମୋଦ ପ୍ରମୋଦର ପାରମ୍ପରିକ କଳାବିଶେଷକୁ ଇସ୍‌ଲାମ ପ୍ରଶାସନ ମଧ୍ୟ ବିରୋଧ କରିଛି । ଏପରିକି ଚେକୋସ୍ଲୋଭାକିଆର ପ୍ରେଗ୍ ସହରର ବିଖ୍ୟାତ କଣ୍ଢେଇ ନଚାଳି ତ୍ରିଡେନକୁ ନାଟ ନଦେଖାଇବାକୁ ସରକାର ବାଧ୍ୟ କରିଛନ୍ତି । ମାତ୍ର ସରକାରୀ ଆଦେଶନାମାକୁ ଅବମାନନା କରି ଆପଣାର 'ହୁରିଭିନୀ ଏଣ୍ଡ୍ ସିବିଲ୍ ଥିଏଟର' ମାଧ୍ୟମରେ ଅସଲ ଜାଗାଗୁଡିକରେ ସେ ନାଟ ଦେଖେଇଛନ୍ତି । ଅପରାଧ ପାଇଁ ଜେଲଦଣ୍ଡ ଭୋଗିଛନ୍ତି । ମୁକ୍ତି ପାଇଛନ୍ତି ୧୯୪୫ ମସିହାରେ । ନାଟ ସାଧାରଣ ଜନତା, ପ୍ରଶାସକ, କଳା ବିଳାସୀମାନଙ୍କ ଦ୍ୱାରା ବିଭିନ୍ନ ସମୟରେ ଭିନ୍ନ ଭାବରେ ଗୃହୀତ ହୋଇଛି ।

କଣ୍ଢେଇମାନଙ୍କ ମାଧ୍ୟମରେ ଯେକୌଣସି ବିଷୟକୁ ଉପସ୍ଥାପନ କରାଯାଇପାରେ । ପାଶ୍ଚାତ୍ୟ ଦେଶର କଳାକାରମାନେ ଏହା ପ୍ରମାଣ କରିଛନ୍ତି । ଏପିକ୍ ବା ମହକାବ୍ୟର ଲୋକପ୍ରିୟ କାହାଣୀକୁ ନାଟ୍ୟରୂପ ଦେବା ସହିତ ବିଶିଷ୍ଟ ନାଟ୍ୟକାରମାନଙ୍କର ନାଟକ ଓ ନାଟକର ସଂକ୍ଷିପ୍ତ ରୂପକୁ ମଧ୍ୟ କଣ୍ଢେଇ ମାଧ୍ୟମରେ ପରିବେଷଣ କରାଯାଉଛି । ଗ୍ରୀକ୍ ନାଟ୍ୟକାର ଆରିଷ୍ଟୋପନଙ୍କ 'ବାର୍ଡସ', ସେକ୍ସପିଅରଙ୍କ 'ଜୁଲିଅସ ସିଜର', 'ମାକ୍‌ବେଥ୍', 'ମିଡ୍–ସମର ନାଇଟସ୍ ଡ୍ରିମ୍, 'ରୋମିଓ ଏଣ୍ଡ୍ ଜୁଲିଏଟ୍', ମାର୍ଲୋଙ୍କର 'ଟ୍ରାଜିକାଲ ହିଷ୍ଟ୍ରି ଅଫ୍ ଡକ୍ଟର ଫାଉଣ୍ଡ୍', ଜର୍ଜ ବର୍ଣ୍ଣାଡ୍‌ଷ୍ଟସ'ଙ୍କ 'ସେକ୍ସପିଅର ଏଣ୍ଡସ' ଏବଂ ଅନ୍ୟ କେତେକ ନାଟକ ଏପରିକି ସାମୁଏଲ୍ ବକେଟଙ୍କର ଉଦ୍‌ଭଟ ନାଟକ 'ୱଏଟିଂ ଫର୍ ଗୋଦାଲ୍ତୁ' ମଧ୍ୟ କଣ୍ଢେଇ ଅଭିନେତା ଅଭିନେତ୍ରୀମାନଙ୍କ ଦ୍ୱାରା ପ୍ରଦର୍ଶନ କରାଯାଇପାରୁଛି । ଚାର୍ଲସ ଡିକେନସ୍, ଥମାସ ହର୍ଡି, ଏଚ୍.ଜି.ଓଏଲ୍‌ସ୍, ସମରସେଟ୍ ମମ, ଓସ୍କାର ଉଆଇଲଡ୍, ଏଡଗାର ଏଲେନ୍ ପୋ, ଲିଓ ଟଲଷ୍ଟୟ, ବୋରିସ୍ ପାଷ୍ଟରନାକଙ୍କ ପରି ବିଖ୍ୟାତ କଥାକାର ଏବଂ କବିମାନଙ୍କର ଲୋକପ୍ରିୟ ଗାଥା କବିତାର ନାଟରୂପ ଜୀବନ୍ତ ରୀତିରେ ପରିବେଷଣ କରାଯାଉଛି ।

କଣ୍ଢେଇମାନେ କେବଳ ଅନ୍ୟମାନଙ୍କ ହାତରେ ନାଚି ନାହାନ୍ତି, ଅନେକଙ୍କୁ ନଚେଇଛନ୍ତି । ଅନେକ ସୃଜନଶୀଳ ସ୍ରଷ୍ଟା ସେମାନଙ୍କ ପ୍ରେମରେ ପଡିଛନ୍ତି । ଅନେକଙ୍କ ପାଇଁ ସେମାନେ ପ୍ରେରଣାର ଉତ୍ସ ହୋଇଛନ୍ତି । ଜର୍ମାନିଦ୍‌ଷାର ମହାକବି ଗୋଦେ ଡକ୍ଟର ଫାଉଷ୍ଟସ୍‌ର କାହାଣୀକୁ ପ୍ରଥମେ କଣ୍ଢେଇ ନାଟରେ ଦେଖିଥିଲେ ଏବଂ ଏହାର ପ୍ରାୟ ପଚାଶବର୍ଷ ପରେ ରଚନା କରିଥିଲେ ବିଶ୍ୱବିଖ୍ୟାତ ଗ୍ରନ୍ଥ 'ଫାଉଷ୍ଟ' । ନିଜର ଆତ୍ମଜୀବନୀ ଗ୍ରନ୍ଥରେ 'ଫାଉଷ୍ଟ କଣ୍ଢେଇ ନାଟର ଭାବ ବାରମ୍ବାର ମୋ ଭିତରେ ପ୍ରତିଧ୍ୱନିତ ହେଲା, ମୁଁ ଆନନ୍ଦରେ ଅଭିଭୂତ ହେଲି' ବୋଲି ସ୍ୱୀକାର କରିଛନ୍ତି । (Purschice Hars R-1957-P-8) ମହାକାବ୍ୟ 'ପାରାଡାଇଜ ଲଷ୍ଟ'ର ପରିକଳ୍ପନା ମିଲଟନ କଣ୍ଢେଇନାଟରେ ପ୍ରଦର୍ଶିତ 'ଦି କ୍ରିଏସନ ଅଫ୍ ୱାର୍ଲଡ' ପ୍ରସଙ୍ଗ ଦ୍ୱାରା ବିଶେଷ ଭବରେ ପ୍ରଭାବିତ ହୋଇଥିଲେ ବୋଲି ଗବେଷକମାନେ ମତବ୍ୟକ୍ତ କରିଛନ୍ତି । (Philipi A.R.-1969-P-11)

ଭାରତରେ ପାରମ୍ପରିକ ନାଟର ଆଧୁନିକୀକରଣ ପର୍ଯ୍ୟାୟ ଆରମ୍ଭ ହୋଇଛି ଚଳିତ ଶତାବ୍ଦୀର ଅଷ୍ଟମ ଦଶକରେ । ନାଟକୁ ବିଶ୍ୱମୁଖୀ କରେଇବାରେ କମଳାଦେବୀ ଚଟୋପାଧ୍ୟାୟ, କପିଳା ବାସାୟନ, ଇନ୍ଦର ରାଜଦାନ, ମେହେର ସି. କନ୍‌ଟ୍ରାକ୍ଟର, ଦେବୀଲାଲ ସମର, ରଘୁନାଥ ଗୋସ୍ୱାମୀ, ଅଜୟ ପାଲ୍, ସୁରେଶ ଦତ୍ତ, ଜେ.ଏଲ୍. ଶ୍ରୀବାସ୍ତବ, ଜୀବନ ପାଣିଙ୍କ ସାଧନା ଓ ବ୍ୟକ୍ତିତ୍ୱର ସ୍ପର୍ଶ ରହିଛି ।

ବିଶ୍ୱର ନାଟ୍ୟ ଜଗତରେ କଣ୍ଢେଇନାଟର ଯେଉଁ ସମୃଦ୍ଧ ଓ ଗୁରୁତ୍ୱପୂର୍ଣ୍ଣ ପରମ୍ପରା ଏବଂ ଜୀବନ ଗଢିବାରେ ତା'ର ଯେଉଁ ଭୂମିକା ରହିଛି, ଭାରତୀୟ ଏବଂ ଓଡ଼ିଆମାନଙ୍କ ପକ୍ଷରେ ତା'ର ଗୁରୁତ୍ୱ ଉପଲବ୍‌ଧିର ଏବେ ସମୟ ଆସିଛି । ସମୟର ସଦୁପଯୋଗ ଏବଂ ଆପଣା ଭିତରେ ଥିବା ଉଦ୍‌ଭାବନୀ ଶକ୍ତିର

ଔଜ୍ଜଲ୍ୟକୁ ଉପସ୍ଥାପନ କରିନପାରିଲେ, ଏ ଜାତିର ଅଭିମାନୀମାନେ ଆପଣା ସଂସ୍କୃତିର ସୁରକ୍ଷାରେ ସଫଳ ହୋଇପାରିବେ ନାହିଁ । ନିଜର ଶକ୍ତି ଓ ସାମର୍ଥ୍ୟ ବଳରେ ସକଳ ପ୍ରତିରୋଧର ପର୍ବତଗୁଡ଼ିକୁ ଉଲ୍ଲଂଘନ କରିବାକୁ ପଡ଼ିବ । କଣ୍ଢେଇନାଟର ନିର୍ଜୀବମାନଙ୍କୁ ନିଜର କରିନପାରିଲେ, ସେମାନେ ଆମରି ମଥା ଉପର ଦେଇ ଉଡ଼ିଯିବେ । ଜୀବନ–ଅନ୍ୱେଷୀମାନଙ୍କର ମାନସ–ଭୂମିରେ ନିଜର ସଜୀବତାକୁ ସବୁଜାୟିତ କରିବେ । ରୋଗର ନିଦାନ ହେବେ, ମୂର୍ଖଙ୍କୁ ପଣ୍ଡିତ କରିବେ, ପଙ୍ଗୁମାନଙ୍କୁ କରିବେ ଗିରିଉଲ୍ଲଂଘୀ, ମୂକମାନଙ୍କୁ କରିବେ ବାଚାଳ ଏବଂ ମୃତମାନଙ୍କୁ ଚେତନାରେ ଅମୃତ ସଂଚରିବେ । ତାହା କରିନପାରିଲେ ଏକଦା ଜନମାନସରେ କେତେ ଉଦ୍‌ବେଳନ ସୃଷ୍ଟି କରୁଥିବା ନାଟର ଚରିତ୍ରମାନେ ଆଉ କିଛିକାଳ ପରେ ସାଂସ୍କୃତିକ ଇତିହାସର ଦୁର୍ମୂଲ୍ୟ ଉପାଦାନ ଭାବରେ ବଞ୍ଚିରହିବେ ।

ବଡ଼ବ୍ରାହ୍ମଣ ସାହି
ପାରଳାଖେମୁଣ୍ଡି, ଗଜପତି

# ଆମ ଜନ୍ମଭୂମି ପବିତ୍ର ଉତ୍କଳ

**କାଞ୍ଚନ ମିଶ୍ର**

ଆମ ଜନ୍ମଭୂମି ପବିତ୍ର ଉତ୍କଳ
ଅତି ବଡ଼ ପୁରାତନ
ଜଗତର ନାଥ ପ୍ରଭୁ ଜଗନ୍ନାଥ
ଏ ମାଟିରେ ବିଦ୍ୟମାନ ।

ଉତ୍କଳ ଐତିହ୍ୟ ବାରବାଟୀ ଦୁର୍ଗ
ଶ୍ରୀମନ୍ଦିର ପାଇଁ ପୁରୀ
ରଖିଅଛି ଯଶ କୋଣାର୍କ ମନ୍ଦିର
ଗଙ୍ଗାଠାରୁ ଗୋଦାବରୀ ।

ବକ୍ଷରେ ତାହାର ଯାଉଅଛି ବହି
ପୁଣ୍ୟ ବୈତରଣୀ ନଦୀ
ଲଭିଛି ଆଦର ସର୍ବଶ୍ରେଷ୍ଠ ମାନ୍ୟ
ଶ୍ରୀକ୍ଷେତ୍ରର ମହୋଦଧି ।

ଶସ୍ୟ ଶ୍ୟାମଳାରେ ରହିଅଛି ଭରି
ଗାଆଁଗଣ୍ଡା ବିଲ କ୍ଷେତ
ଆମ ରାଇଜର ଭାତହାଣ୍ଡି ବୋଲି
ବାଲେଶ୍ୱର ପରିଚିତ ।

ନିର୍ଭୀକ ସଂଗ୍ରାମୀ ଓଡ଼ିଆ ଜାତିର
ସୁରେନ୍ଦ୍ର, ବାଜି ରାଉତ
ଜାତି ପାଇଁ ଲଢ଼ି ଚିରକାଳ ପାଇଁ
ହୋଇ ଅଛନ୍ତି ସେ ଖ୍ୟାତ ।

ମଧୁ, ଗୋପବନ୍ଧୁ, ଫକୀର, ସୁରେନ୍ଦ୍ର
ବିଜୁବାବୁ, ମହତାବ
ତାଙ୍କରି ଉଦ୍ୟମେ ସ୍ୱତନ୍ତ୍ର ଉତ୍କଳ
ଲଭିଅଛି ଗଉରବ ।

ଓଡ଼ିଆ ଆମର ପୁରାତନ ଭାଷା
କେତେକାଳୁ ପ୍ରଚଳିତ
କବି ଗଙ୍ଗାଧର, ରାଧାନାଥ ଆଦି
ସମାଜରେ ସମ୍ମାନିତ ।

ଉତ୍କଳ ଗରଭେ ରହିଅଛି ଭରି
ନାନା ଜାତି ଧନରତ୍ନ
ବିନିଯୋଗ କରି ଆମ ସରକାର
ଚଳାଉଛି ସୁଶାସନ ।

୧୦୧୧, ଜୟଦୁର୍ଗା ନଗର,
ବମିଖାଲ, ଭୁବନେଶ୍ୱର

# କର୍ମଯୋଗୀ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ

**ଡକ୍ଟର ପ୍ରଦୀପ କୁମାର ହୋତା**

ସମସ୍ତ ପ୍ରତିକୂଳତା ସତ୍ତ୍ୱେ ଯିଏ ନିଜ ଶିଙ୍ଘରେ ମାଟି ଖୋଳି ଛିଡାହୁଏ, ସମୟ ତା' ପାଖରେ ହାର ମାନେ ଏବଂ ଶେଷରେ ସେ ହୁଏ ଯୋଗଜନ୍ମା । ନିଜ ପାଇଁ ତ ସମସ୍ତେ ବଞ୍ଚନ୍ତି କିନ୍ତୁ କତିପୟ ମଣିଷ ନିଜେ ସ୍ୱାଭିମାନରେ ବଞ୍ଚିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ସମ୍ମାନର ସହିତ ବଞ୍ଚିବାର ସୁଯୋଗ ସୃଷ୍ଟି କରନ୍ତି । ପ୍ରତ୍ୟେକ ବିଫଳତାକୁ ସଫଳତାରେ ପରିଣତ କରିବାର ବିରଳ ପ୍ରତିଭାକୁ ଇତିହାସ ମନେରଖେ । ସେହିପରି ଏକ ଅନନ୍ୟ ପ୍ରତିଭା ଥିଲେ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ । ଧୂଳିରୁ ଉଠି କୋଣାର୍କ ଗଢିବାର ସ୍ୱପ୍ନକୁ ସେ ତାଙ୍କ ଜୀବଦ୍ଦଶାରେ ସଫଳ କରିପାରିଥିଲେ । କେବଳ ସଫଳ କରି ନଥିଲେ ବରଂ ଅନେକଙ୍କୁ ସେହି ସ୍ୱପ୍ନର ଅଂଶୀଦାର ମଧ୍ୟ କରିଥିଲେ ଏବଂ ସଫଳତାର ସ୍ୱାଦକୁ ନିଜେ କେବଳ ଉପଭୋଗ ନକରି ସମାନ ଭାବରେ ବାଣ୍ଟି ଦେଇଥିଲେ ତାଙ୍କ ପରିଧି ମଧ୍ୟରେ ଥିବା ଲୋକମାନଙ୍କ ମଧ୍ୟରେ । ବେଣୀ ସଂହାରରେ କର୍ଣ୍ଣ ଯେପରି କହିଲେ–

ଦୈବାୟତଂ କୂଳେ ଜନ୍ମ
ମଦାୟତଂ ଚ ପୌରୁଷଂ

ମୁଁ କେଉଁ କୂଳରେ ଜନ୍ମ ହେବି ତାହା ଦୈବର ଅଧୀନ କିନ୍ତୁ ପୌରୁଷତ୍ୱ ମୋର ଅଧୀନରେ ।

ପଦ୍ମଶ୍ରୀ ଡକ୍ଟର କୃତାର୍ଥ ଆଚାର୍ଯ୍ୟଙ୍କର ଜନ୍ମ ୨୦ ମାର୍ଚ୍ଚ ୧୯୦୦ ମସିହାରେ । ଅଧୁନା ବରଗଡ ଜିଲ୍ଲା ଭେଡେନ ଥାନା ଅନ୍ତର୍ଗତ ଦବ୍‌କାଟିକିରା ଗ୍ରାମରେ । ପିତା ଦୀନବନ୍ଧୁ ଆଚାର୍ଯ୍ୟ ଓ ମାତା ଶୋଭାଦେବୀ । ଶୋଭାଦେବୀ ହେଉଛନ୍ତି ବରପାଲିର ସତ୍ୟବାଦୀ ଦାଶଙ୍କ କନ୍ୟା । ଦବ୍‌କାଟିକିରା ମାତ୍ର ୩୨ଟି ପରିବାରର ସମାହାରରେ ଛୋଟିଆ ଗ୍ରାମଟିଏ । ପାଞ୍ଚବର୍ଷ ବୟସରୁ ତାଙ୍କର ଆନୁଷ୍ଠାନିକ ଶିକ୍ଷା ଆରମ୍ଭ ହେଲା । ପିତାମାତା ହିଁ ତାଙ୍କର ପ୍ରଥମ ଶିକ୍ଷକ । ତାଙ୍କଠାରୁ ବାଳକ କୃତାର୍ଥ ପ୍ରଥମେ ପାଠ ପଢିବା ଆରମ୍ଭ କଲେ । ପରେ ପାଖରେ ଥିବା ଅଜା ଅର୍ଜୁନ ଆଚାର୍ଯ୍ୟଙ୍କ ସଙ୍ଗରେ ମାନପୁର ଗ୍ରାମକୁ ପାଠପଢିବା ପାଇଁ ଗଲେ । ସେଠାରେ ତାଙ୍କର ମନ ପାଠରେ ନଥିଲା ବରଂ ସ୍କୁଲକୁ ନଯିବା ପାଇଁ ବିଭିନ୍ନ ବାହାନା କରୁଥିଲେ । ପରିଶେଷରେ ମାମୁଁଘର ବରପାଲିରେ ତାଙ୍କର ନାମ ଲେଖା ହେଲା । ମାମୁଁଘରେ ପୁଅ ନଥିଲେ । ତେଣୁ ସେଠାରେ ତାଙ୍କର ଆଦର ବେଶ୍ ବଢିଯାଇଥିଲା ।

୧୯୧୪ ମସିହାରେ ପଞ୍ଚମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେଲେ । ଇତ୍ୟବସରେ ମାମୁଁଙ୍କର ପୁଅଟିଏ ହେଲା । ପୂର୍ବର ସେ ସ୍ନେହ ଆଦରରେ ଊଣା ପଡିଲା । ମା' କ୍ଷୁବ୍‌ଧ ହୋଇ ତାଙ୍କୁ ପୁଣି ଗ୍ରାମକୁ ନେଇଆସିଲେ । ମାମୁଁଘରେ ରହିବା ଆଉ ଅନୁକୂଳ ନଥିଲା । ତେଣେ ପାଠ ପଢିବାର ଆଗ୍ରହ ଏପରି ଏକ ଦ୍ୱନ୍ଦ୍ୱ ଭିତରେ ସେ ନିଜେ ତାଙ୍କ ଡାଏରୀରେ ଲେଖିଛନ୍ତି–

''ମୋର ଏପରି ଅବସ୍ଥା ଦେଖି ଶିକ୍ଷକମାନେ ସ୍ଥିର କଲେ ଯେ, ସେମାନେ ମୋ ପାଇଁ ଚାନ୍ଦା ସଂଗ୍ରହ କରି ମୋତେ ପଢାଇବେ, ଏଣୁ ସ୍କୁଲ ଚପରାଶିକୁ ପଠାଇ ମୋତେ ଦବ୍‌କାଟିକିରାରୁ ଆଉଥରେ ଟାଣି ଆଣିଲେ ବରପାଲିକୁ । କିଛିଦିନ ପରେ ସ୍କୁଲ ଶିକ୍ଷକମାନେ ଗୋଟିଏ ମେସ୍ କଲେ । ସେଥିରେ ମୁଁ ରାନ୍ଧୁଣିଆ ହୋଇ ପଢାଶୁଣା କଲି । କୂଅରୁ ପାଣି ଆଣି ଶିକ୍ଷକମାନଙ୍କ ବାସନ ଧୂଏଁ, ରାନ୍ଧେଁ, ସମସ୍ତଙ୍କୁ ଖାଇବାକୁ ଦିଏଁ ଓ ନିଜେ ଖାଇସାରି ପାଠ ପଢେ । ତଥାପି କ୍ଲାସ୍‌ରେ ପ୍ରଥମ ସ୍ଥାନ ରଖେ । ପଞ୍ଚମ (ଆଜିକାଲି ଷଷ୍ଠ ଶ୍ରେଣୀ) ପରେ ସପ୍ତମ ଶ୍ରେଣୀକୁ ଗଲି । ସପ୍ତମ ଶ୍ରେଣୀରେ ବୃତ୍ତି ପରୀକ୍ଷା ଦେବା

ପାଇଁ ନିର୍ବାଚିତ ହେଲି । ୧୯୧୭ରେ ନାନା ବାଧାବିଘ୍ନ ଅତିକ୍ରମ କରି ପାରିବାରିକ ଦୁଃଖ ଦୁର୍ଦ୍ଦଶା ସତ୍ତ୍ୱେ ମୁଁ ସମ୍ବଲପୁର ହାଇସ୍କୁଲରେ ଉଚ୍ଚଶିକ୍ଷା ପାଇଁ ଭର୍ତ୍ତି ହେଲି । ମିଡିଲ ଭର୍ଣ୍ଣାକୁଲାର ପାସ୍ କରିଥିବାରୁ ଯଦ୍ୟପି ମୋତେ ଗୋଟିଏ ଶ୍ରେଣୀ ତଳେ ପ୍ରବେଶ ଦିଆଗଲା, ତଥାପି ଛଅମାସ ମଧ୍ୟରେ ଡବଲ ପ୍ରମୋଶନ ପାଇଲି ।'

୧୯୧୭ ମସିହାରେ କୃତାର୍ଥ ଉଚ୍ଚଶିକ୍ଷା ପାଇଁ ସମ୍ବଲପୁର ଚାଲିଗଲେ । ମନରେ ପାଠ ପଢିବାର ଅଦମ୍ୟ ଆଗ୍ରହ ଅନ୍ୟପଟେ ଦାରିଦ୍ର୍ୟର କଷାଘାତ । ତଥାପି ମାସିକ ୫ଟଙ୍କା ବୃତ୍ତିରେ ମେସ୍ ଖର୍ଚ୍ଚ ଚଳିଯାଉଥିଲା । ଯେଉଁ ମାସରେ ବୃତ୍ତିଟଙ୍କା ପହଞ୍ଚିବାରେ ବିଳମ୍ବ ହୋଇଥିଲା ଭୋଜନ ବନ୍ଦ ହୋଇଯାଉଥିଲା । ଦୁଇବୁନ୍ଦା ଅଶ୍ରୁ ପାନ କରି ଉଦରର ଜ୍ୱାଳାକୁ ପ୍ରଶମିତ କରିବା ଛଡା ଗତ୍ୟନ୍ତର ନଥିଲା । ବର୍ଷକ ପରେ ୧୯୧୮ ମସିହାରେ ହଠାତ୍ ମାତାଙ୍କ ମୃତ୍ୟୁ ଖବର ପହଞ୍ଚିଲା । ତାଙ୍କ ନିଜ ଭାଷାରେ–

'୧୯୧୮ରେ ସମ୍ବଲପୁରରେ କଲେରା ବ୍ୟାପିଲା ଠିକ୍ ମଇ ମାସର ଆରମ୍ଭରେ । ସେତେବେଳେ ଷାଣ୍ମାସିକ ପରୀକ୍ଷା ଶେଷ ହେବାକୁ ଏକ ଦିନ ବାକି ଅଛି । ମୁଁ ଖଣ୍ଡେ ପତ୍ର ପାଇଲି– ମୋର ମାତା ମୃତ... ଦିନର ୯ଟାରେ ଯେତେବେଳେ ଘରେ ଯାଇ ପହଞ୍ଚିଲି, ଘରର ଅବସ୍ଥା ଦେଖି ମୋର ଆଉ ଧୈର୍ଯ୍ୟ ରହିଲା ନାହିଁ । ଆଖିର ପାଣି ଆଖିରେ ଶୁଖିଗଲା । ଦେଖିଲି ପିତା ଘରେ ନାହାନ୍ତି । ଭିକ୍ଷାଟନ ପାଇଁ ଯାଇଛନ୍ତି । ତାଙ୍କର ସାଙ୍ଗରେ ଆଉ ଦୁଇଟି ଭାଇ ମଧ୍ୟ । ଦୁଇଟି ଛୋଟ ଭାଇଭଉଣୀ ଘର ପିଣ୍ଡାରେ ବସିଛନ୍ତି– ମୁହଁରେ ମାଛି ଭଣ ଭଣ । ପିତା ୧୨ଟାରେ ଭିକ୍ଷାଟନରୁ ଫେରିଲେ, ମୋତେ ଦେଖିଲାରୁ କୋହ ସମ୍ଭାଳି ପାରିଲେ ନାହିଁ । ହାୟରେ ଜୀବନ !... ପିତା କେତେ ଋଣ ଦ୍ୱାରା ଆଉ କେତେ ଭିକ୍ଷା ଦ୍ୱାରା ମାତାଙ୍କର ଶୁଦ୍ଧିକ୍ରିୟା ସମାପନ କଲେ । ମୁଁ ଦୁଇମାସ କାଳ ଘରେ ରହିଲି । ବାପା ଓ ଦୁଇଟି ଭାଇ ପ୍ରତିଦିନ ଯାଉଥିଲେ ଭିକ୍ଷା ମାଗିବାକୁ, ଘରର ସବୁକାମ, ରନ୍ଧାବଢା, ଛୋଟ ଭାଇଙ୍କର ସେବା ଶୁଶ୍ରୂଷା ସବୁ ଦେଖୁଥାଏ ମୁଁ । ମା'ଙ୍କ ଶୁଦ୍ଧିକ୍ରିୟା ସମାପ୍ତ ପରେ ଦୁଇମାସ କାଳ ଗ୍ରାମରେ ଅବସ୍ଥାନ କରି ପୁଣି ସମ୍ବଲପୁର ଗଲେ ପାଠ ପଢିବା ପାଇଁ । କିନ୍ତୁ ବିପତ୍ତି ଏକା ଆସେ ନାହିଁ । ସେହି ଗୋଟିଏ ବର୍ଷରେ ବାପା ମଧ୍ୟ ଇହଧାମ ତ୍ୟାଗ କଲେ । ଶ୍ରାବଣ ମାସ । ଝିପିଝିପି ବର୍ଷା ଲାଗିରହି ଥାଏ । ଦାହ ସଂସ୍କାର ପାଇଁ ଘରେ କାଠ ଖଣ୍ଡିଏ ନାହିଁ । ସମ୍ପର୍କୀୟମାନେ ଘର ଭାଙ୍ଗି ଦେଇ ସେହି କାଠରେ ଶବଦାହ କରିବାର ପ୍ରସ୍ତାବ ଦେଲେ । ମା'ବାପା ହରା ଛେଉଣ୍ଡମାନଙ୍କର ଘରକୁ ଭାଙ୍ଗି ଦେବାକୁ କିଏ ବା ଚାହିଁବ ? କୃତାର୍ଥ ଆଚାର୍ଯ୍ୟ ମନାକଲେ ଏବଂ ଗ୍ରାମ ଲୋକଙ୍କ ସାହାଯ୍ୟରେ ଦାହ ସଂସ୍କାର ସମାପ୍ତ ହେଲା । ଶୁଦ୍ଧିକ୍ରିୟା ନିମନ୍ତେ ମହଲାକଟା ଗ୍ରାମକୁ ସାହାଯ୍ୟ ଭିକ୍ଷା ପାଇଁ ଗଲେ । ଗଣ୍ଡା ଦୋରା ନାମକ ଗୌନ୍ତିଆ ସାହାଯ୍ୟ ବଦଳରେ ପୋଷା କୁକୁରକୁ ତାଙ୍କ ପଛରେ ଲଗେଇ ଦେଲେ । ପ୍ରାଣ ବିକଳରେ ପଳେଇଆସି ପ୍ରତିଜ୍ଞା କଲେ ଯେ ବାପାଙ୍କ ଶୁଦ୍ଧିକ୍ରିୟା ପଛେ ନହେଉ କିନ୍ତୁ ସେ ଆଉ କାହାକୁ ସାହାଯ୍ୟ ପାଇଁ ହାତ ପତେଇବେ ନାହିଁ । ୧୯୧୮ରୁ ୧୯୨୫ ମସିହା ପର୍ଯ୍ୟନ୍ତ ସେ ଯେଉଁ ପାରିବାରିକ ସଂଘର୍ଷ ଓ ଝଡଝଞ୍ଜା ଦେଇ ଗତି କରିଛନ୍ତି ତାହା ସାମ୍ପ୍ରତିକ ସମୟରେ ଅବିଶ୍ୱସ୍ତ ହେଲେ ସୁଦ୍ଧା ସତ । ଭାଇ ଭଉଣୀମାନଙ୍କୁ ଅନ୍ୟର ଘରେ ପୋଷ୍ୟ ହେବା ପାଇଁ ଛାଡି ଦେବାକୁ ପଡିଥିଲା, ଏପରିକି ସମ୍ପୂର୍ଣ୍ଣ ଅନାହାରରେ ଗୋଟିଏ ଭଉଣୀର ମୃତ୍ୟୁ ହେଲା ଯାହା ତାଙ୍କୁ ସମଗ୍ର ଜୀବନ ଆନ୍ଦୋଳିତ କରୁଥିଲା । ୧୯୨୫ ମସିହାରେ ସେ ମାଟ୍ରିକ ପରୀକ୍ଷାରେ ସଫଳ ହୋଇପାରିଲେ ନାହିଁ ବରଂ ପରୀକ୍ଷାରେ ବିଫଳ ହେବା ଏ ଜାତି ପାଇଁ ଶୁଭଙ୍କର ଥିଲା କାରଣ କଲେଜ ପଢିସାରିଲା ପରେ ଭଲ ଚାକିରିଟିଏ କରି ନିଜର ପରିବାର ମଧ୍ୟରେ ବାନ୍ଧି ହୋଇଯିବାର ସମ୍ଭାବନା ବେଶୀ ଥିଲା ଏବଂ ଯଦି ତାହାହିଁ ହୋଇଥାନ୍ତା ତା'ହେଲେ ଆଜି ଆଉ କ'ଣ ଆମେ ତାଙ୍କୁ ସ୍ମରଣ କରୁଥାନ୍ତେ ? ସେ ଯାହା ହେଉ ଏପରି ଘାତ ପ୍ରତିଘାତ ମଧ୍ୟରେ ସେ ସମ୍ବଲପୁରର ଜଣେ ଅଣଓଡ଼ିଆ ବ୍ୟବସାୟୀ ପାଖରେ ମାସିକ ୩୦ ଟଙ୍କାରେ କାମ ଆରମ୍ଭ କଲେ । ଦିନେ ବ୍ୟବସାୟୀ ଜଣକ ତା'ର ଜୋତା ଆଣିବାକୁ କହିଲା । ସଙ୍ଗେ ସଙ୍ଗେ ସ୍ୱାଭିମାନୀ କୃତାର୍ଥ ଆଚାର୍ଯ୍ୟ ମନା କରିଦେଲେ ଓ କାମ ଛାଡିଦେଲେ । ବ୍ୟବସାୟୀଟି ଅନେକ ପ୍ରଲୋଭନ ଦେଖାଇଲା କିନ୍ତୁ ସେ ଉତ୍ତରରେ କହିଥିଲେ 'ସେଠ୍‌ଜୀ, ଏଣିକି ମୁଁ ଚାକର ନହୋଇ ମାଲିକ ହେବାକୁ ଚାହେଁ' । ୧୯୨୮ ମସିହାରେ ସେ ବରଗଡରେ ଉପଗତ ହେଲେ । ସବୁଆଡେ ସ୍ୱାଧୀନତା ଆନ୍ଦୋଳନ ସହିତ ଖଦୀ କାମ । ଖଦୀ କାମଟି ତାଙ୍କ ମନକୁ ପାଇଲା । ଇତ୍ୟବସରେ ବରଗଡ ମାର୍‌ୱାଡି ପଡାରେ ସେ ଟିଉସନ୍ କରିବା ଆରମ୍ଭ କରିଦେଇଥାନ୍ତି । ଜୀରା ନଦୀ ପାରହୋଇ ଅମାପାଲିର ହରିଜନମାନଙ୍କୁ ନେଇ ସେ ଆରମ୍ଭ କଲେ ଖଦୀ କାମ । ଏପଟେ ଖଦୀ କାମ ଓ ସେପଟେ ଟ୍ୟୁସନ୍ ପଢା । ଦୁଇଟି ଯାକ କାମ ଏକା ସଙ୍ଗେ ଚାଲିଲା । ଇତ୍ୟବସରେ ପାକଳ ହୋଇଚାଲିଥାଏ ତାଙ୍କର ଅନୁଭୂତି, ଯାହା

ସଫଳତାର ଚରମ ସୀମା ସ୍ପର୍ଶ କଲା ସମ୍ବଲପୁରୀ ବସ୍ତ୍ରାଳୟ ମାଧ୍ୟମରେ । କୃତାର୍ଥ ଆଚାର୍ଯ୍ୟ ସ୍ପଷ୍ଟ ଭାବରେ ବୁଝିସାରିଥିଲେ ଯେ କୃଷି ପରେ ଅନ୍ନସଂସ୍ଥାନର ଦ୍ୱିତୀୟ ବୃହତ୍ତମ ମାଧ୍ୟମ ହେଉଛି ହସ୍ତତନ୍ତ । ତେଣୁ ସମ୍ବଲପୁରୀ ବସ୍ତ୍ରାଳୟ ମାଧ୍ୟମରେ ମୃତପ୍ରାୟ ହସ୍ତତନ୍ତର ପୁନରୁଦ୍ଧାର ସଙ୍ଗେ ସଙ୍ଗେ ତନ୍ତୀକୁଳକୁ ସୁସଂଗଠିତ କରି ଅନ୍ନସଂସ୍ଥାନର ଏକ ବଳିଷ୍ଠ ମାଧ୍ୟମ ସେ ସୃଷ୍ଟି କରିଯାଇଛନ୍ତି ।

ସମ୍ବଲପୁରୀ ବସ୍ତ୍ରାଳୟ କେବଳ ଏକ ବ୍ୟବସାୟିକ ପ୍ରତିଷ୍ଠାନ ନଥିଲା । ସେ ଥିଲା ଏ ଜାତିର ଅସ୍ମିତାର ପ୍ରତୀକ । ସେ ଥିଲା ଏ ମାଟିର କଳା ନୈପୁଣ୍ୟର ବାଙ୍ମୟ କୋଣାର୍କ । ସେ ବ୍ୟକ୍ତିସତ୍ତାରୁ ସଞ୍ଚରିଯାଇ ଏକ ସାର୍ବଜନୀନ ସତ୍ତାର ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ପ୍ରତିଷ୍ଠିତ ହେଲେ । ସମ୍ବଲପୁରୀ ବସ୍ତ୍ରାଳୟ ବ୍ୟକ୍ତିଗତ ପ୍ରଚେଷ୍ଟା ଓ ସାଧନା ବଳରେ ପ୍ରତିଷ୍ଠିତ ହେଲା କିନ୍ତୁ ତାକୁ ବ୍ୟକ୍ତିଗତ ସମ୍ପତ୍ତି ଭାବରେ ସେ ରଖିଲେ ନାହିଁ । ପରିବାର ବନ୍ଧୁ ବାନ୍ଧବ ସଖା ସହୋଦର ତଥା କର୍ମଚାରୀମାନେ ସୁଦ୍ଧା ତାଙ୍କୁ ମନା କରିବା ସତ୍ତ୍ୱେ ସେ ତାକୁ ସମବାୟ ଅନୁଷ୍ଠାନରେ ପରିଣତ କରିଦେଲେ ।

ସମ୍ବଲପୁରୀ ବସ୍ତ୍ରାଳୟର କର୍ମଚାରୀମାନେ ତାଙ୍କର ଅଧୀନସ୍ଥ କର୍ମଚାରୀ ନଥିଲେ ବରଂ ସେମାନେ ଥିଲେ ଆଚାର୍ଯ୍ୟ ପରିବାରର ପରିବର୍ଦ୍ଧିତ ସଭ୍ୟ । ତେଣୁ ପ୍ରତ୍ୟେକ କର୍ମଚାରୀମାନଙ୍କ ବ୍ୟକ୍ତିଗତ ସୁଖ ସୁବିଧା ସମ୍ପର୍କରେ ସେ ଟିକିନିଖି ଖବର ରଖୁଥିଲେ । ପ୍ରତ୍ୟେକ ବସ୍ତ୍ରର ଗୁଣାତ୍ମକ ମାନ ବଜାୟ ରଖିବା ଥିଲା ବସ୍ତ୍ରାଳୟର ପ୍ରତିଷ୍ଠିତ ନିୟମ । ତେଣୁ ସେ ଗ୍ରାହକମାନଙ୍କୁ ବ୍ୟକ୍ତିଗତ ଭାବରେ ଭେଟୁଥିଲେ । କୌଣସି ଆପତ୍ତି ହେଲେ ତୁରନ୍ତ ହସ୍ତକ୍ଷେପ କରି ସମାଧାନ କରୁଥିଲେ । ୧୯୩୦ରୁ ୧୯୩୪ ସ୍ୱାଧୀନତା ସଂଗ୍ରାମର ପ୍ରତ୍ୟେକ ପର୍ଯ୍ୟାୟରେ ସେ ସଂଗ୍ରାମୀମାନଙ୍କୁ ସହଯୋଗ କରିଆସିଛନ୍ତି । ବ୍ରିଟିଶ ପୋଲିସ ଦ୍ୱାରା ତାଙ୍କ ଘର ମଧ୍ୟ ଖାନ୍‌ତଲାସ ହୋଇ କେଶ୍ ରୁଜୁ ହୋଇଛି । ସେ ନିଜେ ଖଦୀ ପରିଧାନ କରୁଥିଲେ ଏବଂ ଖଦୀ କାମରୁ ହିଁ ତାଙ୍କର ଜୟଯାତ୍ରା ଆରମ୍ଭ ହୋଇଥିଲା କିନ୍ତୁ ପରବର୍ତ୍ତୀ ସମୟରେ ସମୟର ଆହ୍ୱାନକୁ ସ୍ୱୀକାର କରି ସେ ମିଲ୍ ସୂତାକୁ ଗ୍ରହଣ କରିଛନ୍ତି । ତା'ର କାରଣ ସ୍ୱରୂପ ସେ ଯୁକ୍ତି କରିଛନ୍ତି ଯେ ଖଦୀ ସୂତାରେ ସମ୍ବଲପୁରୀ ବାନ୍ଧର ସୌନ୍ଦର୍ଯ୍ୟ ସଠିକ୍ ଭାବରେ ପ୍ରସ୍ଫୁଟିତ ହୋଇପାରିବ ନାହିଁ ଏବଂ ଏ ଅଞ୍ଚଳର ଶିଳ୍ପୀମାନଙ୍କର କଳା ନୈପୁଣ୍ୟ ସଠିକ୍ ଭାବରେ ପ୍ରଦର୍ଶିତ ହୋଇପାରିବ ନାହିଁ । ତେଣୁ ମିଲ୍ ସୂତାକୁ ସେ ସମ୍ବଲପୁରୀ ବସ୍ତ୍ରରେ ପ୍ରୟୋଗ କରିଛନ୍ତି ।

ସମ୍ବଲପୁରୀ ବସ୍ତ୍ରାଳୟ ଆରମ୍ଭ ହୁଏ ୧୯୩୬ ମସିହାରେ । ପ୍ରାରମ୍ଭରେ କେବଳ ଶ୍ରୀ କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ଏକ ସ୍ୱଳ୍ପ ଅଂଶଧନ ଏଥିରେ ବିନିଯୋଗ ହୋଇଥିଲା ଏବଂ ଅତି ଅଳ୍ପ ବୟସରେ କୃଷ୍ଣଚନ୍ଦ୍ରଙ୍କର ଦେହାନ୍ତ ହୋଇଗଲା । କୃଷ୍ଣଚନ୍ଦ୍ରଙ୍କର ନାବାଳକ ପୁତ୍ର ରବୀନ୍ଦ୍ରଙ୍କୁ ନିଜ ଘରେ ରଖି ପୁତ୍ରବତ ପାଳନ କରିଥିଲେ ଡଃ କୃତାର୍ଥ ଆଚାର୍ଯ୍ୟ । ଏପରିକି ବିନିଯୋଗ ହୋଇଥିବା ମୂଳଧନର ସମସ୍ତ ଲାଭାଂଶ ରବୀନ୍ଦ୍ର ପ୍ରଧାନଙ୍କ ନାମରେ ଜମା ରହୁଥିଲା । ରବୀନ୍ଦ୍ର ସାବାଳକ ହେବାପରେ ଅଭିଭାବକର ସମସ୍ତ କର୍ମ ଆଚାର୍ଯ୍ୟ ଦମ୍ପତି ତୁଲେଇ ଥିଲେ । ଆଜି ମଧ୍ୟ ରବୀନ୍ଦ୍ର ପ୍ରଧାନ ଆଚାର୍ଯ୍ୟ ପରିବାରରେ ଏକ ସଦସ୍ୟର ସ୍ଥାନ ରହିଛି ।

ବସ୍ତ୍ରାଳୟରୁ ଉତ୍ପାଦିତ ଶାଢୀମାନଙ୍କର ନାମକରଣରୁ ତାଙ୍କର ଉନ୍ନତ ରୁଚିବୋଧର ପରିଚୟ ପ୍ରଦାନ କରେ । ଏ ମାଟିର ପ୍ରାକୃତିକ ସୌନ୍ଦର୍ଯ୍ୟ ସଙ୍ଗେ ସଙ୍ଗେ ଭାରତୀୟ ସଂସ୍କୃତିକୁ ସେ ମୂର୍ତ୍ତିମନ୍ତ କରୁଥିଲେ ବସ୍ତ୍ର ମାଧ୍ୟମରେ । ସେଥିପାଇଁ ତ ସେ ନାମ ଦେଇଥିଲେ, ଅର୍ଚ୍ଚନା, ଅନୁରାଧା, ଚିତ୍ରୋତ୍ପଳା, ଚନ୍ଦ୍ରିକା, ହିମାଦ୍ରୀ, କଳିଙ୍ଗସୁନ୍ଦରୀ, ଲାବଣ୍ୟବତୀ, ପଞ୍ଚବଟୀ, ପୁଷ୍ପଗୁଚ୍ଛ, ପାରିଜାତ, ସୂର୍ଯ୍ୟକାନ୍ତୀ, ସୌଦାମିନି, ସୁଚିତ୍ରା, ସୁବର୍ଣ୍ଣରେଖା, ସନ୍ଧ୍ୟା–ତାରା ତୈଲୋକ୍ୟସୁନ୍ଦରୀ, ତରଙ୍ଗିଣୀ, ଇନ୍ଦୁମତୀ, ଉତ୍କଳ ଲକ୍ଷ୍ମୀ ଆଦି । ବସ୍ତ୍ର ଦେହରେ କବିତାର ଲାଳିତ୍ୟ ପ୍ରତିଭାତ ହେଉଥିଲା ତାଙ୍କରି ସୃଜନଶୀଳ ହସ୍ତର ପରଶୁ ସ୍ପର୍ଶରେ ।

ଆଗରୁ ଉଲ୍ଲେଖ କରାଯାଇଛି ଯେ ସମ୍ବଲପୁରୀ ବସ୍ତ୍ରାଳୟ ଆରମ୍ଭ ହୋଇଥିଲା ତାଙ୍କରି ବ୍ୟକ୍ତିଗତ ଉଦ୍ୟମ ଓ ମାଲିକାନାରେ । କିନ୍ତୁ ୧୯୫୪–୫୫ରେ ବ୍ୟକ୍ତିଗତ ମାଲିକାନାକୁ ସମାପ୍ତ କରି ତାକୁ ସେ ସମବାୟ ହାତରେ ଟେକି ଦେଲେ । କେହି ତାଙ୍କୁ ଏଥିରେ ବାଧା ଦେଇପାରିଲେ ନାହିଁ । ତାଙ୍କର ପୁତ୍ର ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ ଯେତେବେଳେ ଏ କଥାଟି ପଚାରିଲେ ସେ ସ୍ପଷ୍ଟ ଭାବରେ ଉତ୍ତର ଦେଲେ ଯେ ସମ୍ବଲପୁରୀ ବସ୍ତ୍ରାଳୟ କୃତାର୍ଥ ଆଚାର୍ଯ୍ୟ ତାଙ୍କ ପୈତୃକ ଉତ୍ତରାଧିକାରୀ ସୂତ୍ରରେ ପାଇନଥିଲେ । ଏ ଦେଇଛି ହଜାର ହଜାର ବୁଣାକାରମାନଙ୍କର ତ୍ୟାଗ ଓ ତପସ୍ୟାର ଫଳ । ତେଣୁ ତାକୁ ମୁଁ ସେଇ ବୁଣାକାରମାନଙ୍କ ହାତରେ ଟେକିଦେବି । କଦାପି

ତାକୁ ମୁଁ ବ୍ୟକ୍ତିଗତ ସମ୍ପତ୍ତି ଭାବରେ ରଖିବି ନାହିଁ । ଏଥିରୁ ତାଙ୍କର ବିରଳ ବ୍ୟକ୍ତିତ୍ୱର ପରିଚୟ ମିଳେ ।

ପଦ୍ମଶ୍ରୀ ଡକ୍ଟର କୃତାର୍ଥ ଆଚାର୍ଯ୍ୟଙ୍କର ବ୍ୟକ୍ତିତ୍ୱ ବହୁମୁଖୀ ଥିଲା ଏବଂ ପ୍ରତ୍ୟେକ କାର୍ଯ୍ୟକୁ ସଫଳତାର ସହିତ କରିବାର ବିରଳ ଗୁଣର ସେ ଅଧିକାରୀ ଥିଲେ । ବର୍ତ୍ତମାନର ବହୁରାଷ୍ଟ୍ରୀୟ କମ୍ପାନୀମାନେ ନିଜ କର୍ମଚାରୀମାନଙ୍କର କର୍ମପ୍ରବଣତା ସୃଷ୍ଟି କରିବା ପାଇଁ ଯେଉଁ ପଦକ୍ଷେପମାନ ନେଉଛନ୍ତି, ଆଜିକୁ ପ୍ରାୟ ସାତ ଦଶନ୍ଧି ପୂର୍ବରୁ ଡକ୍ଟର ଆଚାର୍ଯ୍ୟ ତାହା କରିଯାଇଛନ୍ତି । ଏପରିକି କାର୍ଯ୍ୟାଳୟର ସବାତଳ ଲୋକ ପ୍ରତି ମଧ୍ୟ ତାଙ୍କର ସମାନ ଦୃଷ୍ଟି ରହିଥିଲା । ଆଜି ମଧ୍ୟ ତାଙ୍କ ପୂର୍ବତନ କର୍ମଚାରୀମାନେ କୃତଜ୍ଞତାର ସହିତ ତାଙ୍କୁ ସ୍ମରଣ କରିଥାନ୍ତି । ତାଙ୍କର ଅବଦାନ ସମ୍ବଲପୁରୀ ବସ୍ତ୍ରାଳୟ ମଧ୍ୟରେ ସୀମିତ ନଥିଲା । ବରଗଡ ପଞ୍ଚାୟତ ମହାବିଦ୍ୟାଳୟର ପ୍ରତିଷ୍ଠାରେ ତାଙ୍କର ସକ୍ରିୟ ଭୂମିକା ରହିଛି । ତୋରା ସୂତାକଳ, ରାମନଗର ପାୱାରଲୁମର ସେ ଥିଲେ ପ୍ରାଣପ୍ରତିଷ୍ଠାତା । ବରଗଡ ତଥା ସେଇ ଅଞ୍ଚଳର ପ୍ରତ୍ୟେକ ଶିକ୍ଷା ଓ ସାଂସ୍କୃତିକ ପ୍ରତିଷ୍ଠାନର ସେ ଥିଲେ ସକ୍ରିୟ ପୃଷ୍ଠପୋଷକ ।

ଜୀବଦ୍ଦଶାରେ ସେ ବହୁ ଆନୁଷ୍ଠାନିକ ସମ୍ମାନର ଅଧିକାରୀ ହୋଇପାରିଥିଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ୧୯୭୫ ମସିହାରେ ତାଙ୍କୁ ସମ୍ମାନସୂଚକ ଡି.ଲିଟ୍ ଉପାଧି ପ୍ରଦାନ କରିଥିଲା ଏବଂ ଭାରତର ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କ ଦ୍ୱାରା ୧୯୬୫ ମସିହାରେ ପଦ୍ମଶ୍ରୀ ଉପାଧିରେ ସେ ଭୂଷିତ ହୋଇଥିଲେ । କିନ୍ତୁ ଜନମାନସରେ ସେ ଥିଲେ 'କୃତାର୍ଥ ମାଷ୍ଟର' । ଆଜି ମଧ୍ୟ 'ମାଷ୍ଟର ଦୁକାନ୍' ଏକ ଗଭୀର ଆସ୍ଥା ଓ ବିଶ୍ୱାସର ପ୍ରତୀକ ରୂପେ ରହିଆସିଛି । ଏଇ ନାମ କୌଣସି ଅନୁଷ୍ଠାନ ତାଙ୍କୁ ଦେଇନାହିଁ ବରଂ ବିହ୍ୱଳ ଜନସମୂହ ହିଁ ସ୍ୱତଃ ପ୍ରବୃତ୍ତ ଭାବରେ ତାକୁ ଗ୍ରହଣ କରିନେଇଛି, ଯାହା ଆଜି ମଧ୍ୟ କେହି ଅତିକ୍ରମଣ କରିପାରିନାହାନ୍ତି ।

୧୯୭୮ ମସିହା ଅକ୍ଟୋବର, ନଭେମ୍ବର ବେଳକୁ ସେ ବାମ ପାଖ ମାଢିରେ ଯନ୍ତ୍ରଣା ଅନୁଭବ କଲେ । କିନ୍ତୁ ପରିବାରର କେହି ସେ ବିଷୟରେ ଜାଣିପାରିନଥିଲେ । ଡିସେମ୍ବର ୯ତାରିଖରେ ପରିବାରରେ ବିବାହ ଉତ୍ସବ ଚାଲିଥାଏ । ସୁକନ୍ୟା ଡାକ୍ତର ସୁନୀତି କିନ୍ତୁ ବାପାଙ୍କ ଅସୁସ୍ଥତା ବିଷୟ ଜାଣିପାରିଲେ । ବିବାହ ଉତ୍ସବ ସମାପ୍ତ ନହେବା ପର୍ଯ୍ୟନ୍ତ କାହା ଆଗରେ ପ୍ରକାଶ ନକରିବାକୁ ସେ ଝିଅକୁ ପରାମର୍ଶ ଦେଲେ କାରଣ ସମସ୍ତେ ଜ୍ଞାତ ହେଲେ ହୁଏତ ବିବାହ କାର୍ଯ୍ୟ ବନ୍ଦ ହୋଇ ଯାଇପାରେ ଏବଂ ବିବାହ କାର୍ଯ୍ୟ ବନ୍ଦ ହୋଇଗଲେ ଯେଉଁ ଘରୁ ଝିଅ ଆସିବାର ଅଛି ତାଙ୍କର ମାନସିକ ସ୍ଥିତି ନିଶ୍ଚୟ ଦୋହଲି ଯିବ । ବିବାହ ଉତ୍ସବରେ କେହି ସନ୍ଦେହ ମଧ୍ୟ କରିପାରିଲେ ନାହିଁ ଏବଂ ତାହା ସୁରୁଖୁରୁରେ ସମାପ୍ତ ହେଲା । ପରେ ପରେ ତାଙ୍କର ଚିକିତ୍ସା ପାଇଁ ମୁମ୍ବାଇ ନିଆଗଲା । ପ୍ରାୟ ପାଞ୍ଚ ଛଅ ମାସ ଚିକିତ୍ସା କରାଗଲା । ପରିଶେଷରେ ୧୯୭୯ ମସିହା ମଇ ୭ତାରିଖ ଭୋର ୫ଟାରେ ସେଇ ଚଳନ୍ତି କିମ୍ବଦନ୍ତୀ ଇତିହାସ ପାଲଟିଗଲେ ।

ସେଇ ଇତିହାସ କେବଳ ଏକ ସାଧାରଣ ଜୀବନର କାହାଣୀ ନୁହେଁ । ସେଇ ଜୀବନର ପ୍ରତ୍ୟେକ ପୃଷ୍ଠାରେ ରହିଛି ସଂଘର୍ଷ ଓ ସଂଘାତର କାହାଣୀ ଏବଂ ପ୍ରତ୍ୟେକ ପରିଚ୍ଛେଦର ମୁଖବନ୍ଧରେ ଦେଖିବାକୁ ମିଳେ ଗଭୀର ଆତ୍ମବିଶ୍ୱାସ ଓ ସ୍ୱାଭିମାନର ପଦଚିହ୍ନ । ଖୋଜିଲେ ଅବଶ୍ୟ ଆମେ ପାଇଯିବା ତାଙ୍କର ହୃଦୟରେ ସମୁଦ୍ରର ଗଭୀରତା, ମନରେ ଆକାଶର ବିଶାଳତା ଓ ତାଙ୍କରି ସ୍ୱପ୍ନରେ ହିମାଳୟର ଉଚ୍ଚତା ।

ଗୋବିନ୍ଦପାଲି,
ବରଗଡ–୭୬୮୦୨୮

❖ ❖ ❖

# ବଡ଼ମ୍ବାର ସୂର୍ଯ୍ୟଘଡ଼ି

ନିକୁଞ୍ଜ ବିହାରୀ ସାହୁ

ସମୟ ନିରୂପଣ କରିବା ନିମନ୍ତେ ଆଦିମ ମନୁଷ୍ୟ ପାଇଁ ସୂର୍ଯ୍ୟ ଥିଲା ସର୍ବପ୍ରଥମ ପଥପ୍ରଦର୍ଶକ । ପ୍ରତି ସକାଳେ ସୂର୍ଯ୍ୟ ପୂର୍ବ ଦିଗରେ ଉଦୟ ହୋଇ ଧୀରେ ଧୀରେ ମୁଣ୍ଡ ଉପରକୁ ଉଠିଆସେ ଓ କ୍ରମଶଃ ପଶ୍ଚିମ ଦିଗରେ ବୁଡିଗଲେ ରାତ୍ରିର ଘନ ଅନ୍ଧକାର ଛାଇଯାଏ । ସମୟାନୁସାରେ ଆକାଶ ମାର୍ଗରେ ସୂର୍ଯ୍ୟର ଏହି ଗତି ଦ୍ୱାରା କୌଣସି ଗଛ କିମ୍ବା ବସ୍ତୁର ଛାୟା ଉଭୟ 'ଦୈର୍ଘ୍ୟ' ଓ 'ଦିଗ'ରେ କ୍ରମାଗତ ବଦଳୁଥାଏ । ତେଣୁ ସୂର୍ଯ୍ୟ ଦ୍ୱାରା ସୃଷ୍ଟ କୌଣସି ବସ୍ତୁର ଛାୟାକୁ ଲକ୍ଷ୍ୟ କରି ସମୟ ନିର୍ଣ୍ଣୟର ପରିକଳ୍ପନା ଆଦିମ ମନୁଷ୍ୟ ମନରେ ଜାଗ୍ରତ ହେବା ସ୍ୱାଭାବିକ । ଏହି ପରିପ୍ରେକ୍ଷୀରୁ ଜନ୍ମ ନିଏ ସୂର୍ଯ୍ୟଘଡିର ଭିତ୍ତିଭୂମି ।

କୌଣସି ସୂର୍ଯ୍ୟଘଡି ମୁଖ୍ୟତଃ ଦୁଇଟି ଅଂଶ, ଯଥା– ଫଳକ (Dial) ଓ ଅକ୍ଷ(Style)କୁ ନେଇ ଗଠିତ । ଅଂଶାଙ୍କିତ ଏକ ଫଳକ ଉପରେ ପତିତ ଅକ୍ଷ ଛାୟାର ଅବସ୍ଥାନରୁ ସମୟ ଜାଣିହୁଏ । ଫଳକର 'ସଜ୍ଜା' ଅନୁସାରେ ସୂର୍ଯ୍ୟଘଡିଗୁଡିକୁ ବିଷୁବରୈଖୀୟ(Equatorial) ଭୂସମତଳୀୟ (Horizontal) ଓ ଭୂଲମ୍ବୀୟ(Vertical) ମୁଖ୍ୟତଃ ଏହି ତିନି ଭାଗରେ ବିଭକ୍ତ କରାଯାଏ । ଏକ ବିଷୁବରୈଖୀୟ ଫଳକଟି ଆକାଶୀୟ ବିଷୁବବୃତ୍ତର ସମତଳ ସହ ସମାନ୍ତର ଭାବେ ଅବସ୍ଥାପିତ ହୋଇଥାଏ । ଏଥିପାଇଁ ସୂର୍ଯ୍ୟଘଡିର ଫଳକକୁ ଭୂଲମ୍ବ ରେଖାଠାରୁ ସ୍ଥାନୀୟ ଅକ୍ଷାଂଶ ପରିମିତ କୋଣରେ ବିଷୁବ ରେଖା ଆଡକୁ ଆନତ କରିବା ପାଇଁ ପଡେ । ଛାୟାପାତ କରୁଥିବା 'ଅକ୍ଷ' ଫଳକର କେନ୍ଦ୍ର ଦେଇ ଏହାର ସମତଳ ପ୍ରତି ଲମ୍ବ ଭାବରେ ଅତିକ୍ରମ କରୁଥିବା ହେତୁ ଅକ୍ଷଟି ସର୍ବଦା ଧ୍ରୁବତାରା ଦିଗରେ ମୁହଁ କରି ରହେ ।

ଆମ ରାଜ୍ୟରେ କଟକ, କେନ୍ଦ୍ରାପଡା, କୋଣାର୍କ, ଭୁବନେଶ୍ୱର, ଖଣ୍ଡପଡା, ଜୟପୁର ଓ ବଡମ୍ବାଠାରେ ଏବେ ସୁଦ୍ଧା ଲୁପ୍ତପ୍ରାୟ ଅବସ୍ଥାରେ ଅନେକ ଉନ୍ନତ ମାନର ଐତିହାସିକ ସୂର୍ଯ୍ୟଘଡିମାନ ରହିଛି । ଆମେ ଏଠାରେ ବଡମ୍ବାର ତହସିଲ ଅଫିସ୍ ପରିସର ମଧ୍ୟରେ ଅବସ୍ଥିତ ଏହିଭଳି ଏକ ପୁରାତନ ଘଡି ବିଷୟରେ ଆଲୋଚନା କରିବା ।

ପିତ୍ତଳରେ ନିର୍ମିତ ଏହି ଘଡିଟି ବିଷୁବରୈଖୀୟ ଜାତିର । ଏହି ଲେଖକଙ୍କ ମତରେ, କେବଳ ଖଣ୍ଡପଡାକୁ ବାଦ୍ ଦେଲେ ଆମ ରାଜ୍ୟର ଅନ୍ୟ କୌଣସି ସ୍ଥାନରେ ଏହି ଜାତିର ଘଡି ଦେଖିବାକୁ ମିଳେ ନାହିଁ । ଘଡିଟିର ନିର୍ମାଣକାଳ ଅସ୍ପଷ୍ଟ ଥିଲେ ମଧ୍ୟ ଏହାର ଗଠନଶୈଳୀ ଦୃଷ୍ଟିରୁ ଘଡିଟି ଯେ ନିଶ୍ଚିତ ଭାବରେ ପୁରାତନ ଏହା ନିଃସନ୍ଦେହରେ କୁହାଯାଇପାରେ । ଆମ ରାଜ୍ୟର ଅଧିକାଂଶ ସୂର୍ଯ୍ୟଘଡି ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରିଟିଶ ଅମଳରେ ନିର୍ମିତ ହୋଇଥିବାରୁ ବଡମ୍ବାରେ ଏହି ଘଡିଟି ମଧ୍ୟ ସେହି କାଳର ବୋଲି ଧରାଯାଇପାରେ ।

ପ୍ରାୟ ୫ଫୁଟ ଉଚ୍ଚତା ବିଶିଷ୍ଟ ଇଟା ଓ ଚୂନରେ ନିର୍ମିତ ଏକ ସ୍ତମ୍ଭାକୃତି ସୁଦୃଶ୍ୟ ଆଧାରକ୍ଷେତ୍ର ଉପରେ ଅବସ୍ଥାପିତ ପ୍ରାୟ ଦେଢ ଫୁଟ ବ୍ୟାସର ଏକ ଅର୍ଦ୍ଧ ବୃତ୍ତାକାର ଖଣ୍ଡ ଘଡିଟିର ଫଳକ ଅଟେ । ଫଳକରେ ପ୍ରତି ଘଣ୍ଟାର ସମୟକୁ ଚାରୋଟି ଭାଗରେ (ପ୍ରତି ଭାଗର ମୂଲ୍ୟ ୧୫ ମିନିଟ୍) ଓ ପ୍ରତିଟି ଭାଗକୁ ପୁଣି ତିନୋଟି ଅଂଶରେ ବିଭକ୍ତ କରାଯାଇଛି । ତେଣୁ ଘଡିଟି ଅତି କମ୍‌ରେ ୫ମିନିଟ୍ ସମୟର ବ୍ୟବଧାନକୁ ସୂଚିତ କରିପାରେ । ଫଳକଟିକୁ ଏକ ସୁନ୍ଦର ଦ୍ୱିତୀୟା ଚନ୍ଦ୍ରର ଆକାର ଅନୁସାରେ ନିର୍ମାଣ କରାଯାଇ ଥିବାରୁ ଅତୀତରେ ଏହା ଏକ 'ଚନ୍ଦ୍ରଘଡି' ରୂପେ ମଧ୍ୟ ବ୍ୟବହୃତ ହେଉଥିବାର ଅନୁମାନ କରାଯାଏ । ଲେଖକ ଓଡ଼ିଶାର ଅନ୍ୟ ସ୍ଥାନରେ ପ୍ରାଚୀନ ସୂର୍ଯ୍ୟଘଡିମାନ ଦେଖିଥିଲେ ସୁଦ୍ଧା ସୌନ୍ଦର୍ଯ୍ୟଗତ ଦୃଷ୍ଟିରୁ ବଡମ୍ବାସ୍ଥିତ ଏହି ଘଡିଟି ବାସ୍ତବରେ ଅଦ୍ୱିତୀୟ ।

ଦୁର୍ଭାଗ୍ୟବଶତଃ, ଏବେ ଘଡିଟିର କେବଳ ଫଳକଟି ଦେଖିବାକୁ ମିଳୁଥିବାବେଳେ ଏହାର ଅକ୍ଷ ସମ୍ପୂର୍ଣ୍ଣ ଭାଙ୍ଗିଯାଇ ଥିବାରୁ ଆଉ ଛାୟାପାତ ହୋଇପାରୁନାହିଁ । ପୂର୍ବବର୍ଣ୍ଣିତ ପଦ୍ଧତି ଅନୁସାରେ ଫଳକଟିରେ କେବଳ ପିତ୍ତଳର ଏକ ଦଣ୍ଡ ସଂଲଗ୍ନ କରିଦେଲେ ଏହା ଆବଶ୍ୟକୀୟ 'ଅକ୍ଷ' ହୋଇଯିବ ଓ ପୂର୍ବଭଳି ସୁଚାରୁ ରୂପେ ସମୟ ନିର୍ଦ୍ଦେଶ କରିପାରିବ । ଦ୍ୱିତୀୟତଃ, ଘଡିର ପଶ୍ଚିମ ପାର୍ଶ୍ୱରେ ଅନେକ ବଡ ବଡ ଝଙ୍କାଳିଆ ଗଛ ଥିବା ହେତୁ ଅପରାହ୍ନରେ ବିଶେଷକରି ଗ୍ରୀଷ୍ମ ଋତୁରେ (ସୂର୍ଯ୍ୟର ଉତ୍ତରାୟଣ ଗତି ସମୟରେ) ଏହା ଉପରେ ସୂର୍ଯ୍ୟାଲୋକ ପଡୁନଥିବାରୁ ଘଡିଟି କାର୍ଯ୍ୟ କରିପାରୁନାହିଁ । ତୃତୀୟତଃ, ତହସିଲ ଅଫିସକୁ ବିଭିନ୍ନ କାର୍ଯ୍ୟରେ ଆସୁଥିବା ସାଧାରଣ ଲୋକେ ଏହି ଐତିହାସିକ ଘଡିର ମହତ୍ୱ ଉପଲବ୍ଧି କରିପାରୁ ନଥିବାରୁ ଏହାର କାର୍ଯ୍ୟକାରିତା ଉପରେ ଆଧାରିତ ଏକ ସୂଚନା ଫଳକର ବ୍ୟବସ୍ଥା କରିବା ବିଧେୟ ।

ଏକ ସୂର୍ଯ୍ୟଘଡି ସର୍ବଦା ସ୍ଥାନୀୟ ସମୟ(Local Time) ସୂଚନା କରୁଥିବାବେଳେ ଆମେ ବ୍ୟବହାର କରୁଥିବା କଳଘଡିଗୁଡିକ କିନ୍ତୁ ଭାରତୀୟ ମାନକ ସମୟ (Indian Standard Time) ପ୍ରଦାନ କରିଥାନ୍ତି । ତେଣୁ ସୂର୍ଯ୍ୟଘଡିର ସମୟକୁ କଳଘଡି ସଙ୍ଗେ ତୁଳନା କରିବାକୁ ହେଲେ ଦର୍ଶକ ସ୍ଥାନର ଦ୍ରାଘିମା ଓ ଦେଶୀୟ ମାନକ ଦ୍ରାଘିମାର ଅନ୍ତରକୁ ବିଚାରକୁ ନେଇ ସ୍ଥାନୀୟ ସମୟକୁ ଭାରତୀୟ ମାନକ ସମୟରେ ରୂପାନ୍ତରିତ କରିବାକୁ ପଡେ । କାର୍ଯ୍ୟ ପ୍ରଣାଳୀର ବିବିଧତା ହେତୁ ଏହି ରୂପାନ୍ତର ସତ୍ତ୍ୱେ ଉଭୟ ଘଡିର ପାଠ୍ୟାଙ୍କରେ ସାମାନ୍ୟ ଅନ୍ତର ପରିଲକ୍ଷିତ ହୁଏ, ଯାହାର ମୂଲ୍ୟ ପୁଣି ବର୍ଷର ବିଭିନ୍ନ ମାସରେ ଭିନ୍ନ ଭିନ୍ନ ହୋଇଥାଏ । ବର୍ଷର ବିଭିନ୍ନ ସମୟରେ ଏହି ଅନ୍ତରର ମୂଲ୍ୟ ସଂଗ୍ରହ କରି ଏକ ସାରଣୀ ପ୍ରସ୍ତୁତ କରାଯାଏ, ଯାହାକୁ ସମୟ ସମୀକରଣ (Equation of Time) ସାରଣୀ କୁହାଯାଏ । ତେଣୁ କୌଣସି ସୂର୍ଯ୍ୟଘଡିରୁ କଳଘଡି ସଙ୍ଗେ ମିଶିଲା ଭଳି ସମୟ ପାଇବାକୁ ହେଲେ ପୂର୍ବୋକ୍ତ ସାରଣୀ ବ୍ୟବହାର କରି ସୂର୍ଯ୍ୟଘଡିର ପାଠ୍ୟାଙ୍କରେ ବର୍ଷର ମାସ ଅନୁଯାୟୀ କିଛି ସମୟ ସଂସ୍କାର (ଯୋଗ କିମ୍ବା ବିୟୋଗ) କରିବାକୁ ପଡେ । ବଡମ୍ବାର ଏହି ସୂର୍ଯ୍ୟଘଡି ତଥା ଆମ ରାଜ୍ୟର ଅନ୍ୟାନ୍ୟ ସୂର୍ଯ୍ୟଘଡିଗୁଡିକରେ ଏପରି ସମୟ ସମୀକରଣ 'ସାରଣୀ' ସଂଲଗ୍ନ କଲେ ଏହା ଉକ୍ତ ବୈଜ୍ଞାନିକ କୃତିଗୁଡିକର ମହତ୍ୱକୁ ଅଧିକ ଋଦ୍ଧିମନ୍ତ କରିବ ।

ପରିତ୍ୟକ୍ତ ଅବସ୍ଥାରେ ପଡିଥିବା ବଡମ୍ବାଗଡର ସୂର୍ଯ୍ୟଘଡିଟି ବାସ୍ତବରେ ଉଚ୍ଚକୋଟୀର ଏବଂ ଆମ ରାଜ୍ୟର ଗର୍ବ ଓ ଗୌରବ । ଏହା ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଆମର ଗୌରବମୟ ଐତିହ୍ୟ ଓ ପରମ୍ପରାର ମୂକସାକ୍ଷୀ । ଏହାର ଉପଯୁକ୍ତ ମରାମତି କରି ରକ୍ଷଣାବେକ୍ଷଣ ପାଇଁ ସରକାର ତୁରନ୍ତ ପଦକ୍ଷେପ ଗ୍ରହଣ ନକଲେ ଆମ ରାଜ୍ୟର ଅନ୍ୟାନ୍ୟ ବହୁ ପ୍ରାଚୀନ କୀର୍ତ୍ତି ଭଳି ଏହା ମଧ୍ୟ ଦିନେ କାଳର କରାଳ ବକ୍ଷରେ ହଜିଯିବ ।

ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର
ପଣ୍ଡିତ ଜବାହରଲାଲ ନେହରୁ ମାର୍ଗ
ଭୁବନେଶ୍ୱର

❖ ❖ ❖

# ଭୂମିପୁତ୍ର ଭୂୟାଁ ଜାତିର ଗୌରବମୟ ଜୀବନଗାଥା

**ଜୟଶଙ୍କର ନାୟକ**

ଭାରତରେ ପ୍ରାୟ ୪୩୭ ପ୍ରକାର ଆଦିବାସୀ ଅଛନ୍ତି । ସେଥିମଧ୍ୟରୁ ୬୨ ପ୍ରକାର ଆଦିବାସୀ ଆମ ଓଡ଼ିଶାରେ ବସବାସ କରନ୍ତି । ସେମାନଙ୍କ ମଧ୍ୟରୁ ଭୂୟାଁ ଜାତି ଅନ୍ୟତମ। ଓଡ଼ିଶାରେ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତି ପ୍ରସାର ଲାଭ କରିବାର ବହୁ ପୂର୍ବରୁ ଭୂୟାଁ ସମ୍ପ୍ରଦାୟ ବସବାସ କରୁଥିଲେ । ସେମାନଙ୍କର ଏକ ସ୍ୱତନ୍ତ୍ର ସଭ୍ୟତା ଥିଲା । ସବୁ ଆଦିବାସୀମାନଙ୍କ ମଧ୍ୟରେ ଭୂୟାଁ ସମ୍ପ୍ରଦାୟ ପ୍ରାଚୀନତମ ।

ଭୂୟାଁମାନେ ନିଜକୁ ଭୂମିପୁତ୍ର ତଥା ଭୌମ୍ୟ ଜାତିର ବୋଲି ଦାବି କରନ୍ତି । ଭୂୟାଁ ଶବ୍ଦର ଆକ୍ଷରିକ ଅର୍ଥ ଭୂମିପୁତ୍ର । ଭୂମିପୁତ୍ରର ଅର୍ଥ ଏ ଦେଶର ମୂଳ ଅଧିବାସୀମାନଙ୍କୁ କୁହାଯାଏ । ମୂଳ ସଂସ୍କୃତ ଶବ୍ଦ ଭୂମିରୁ 'ଭୂୟାଁ' ଉଦ୍ଭବ । ମହାଭାରତର ଜତୁ ଗୃହରୁ ପାଣ୍ଡବଙ୍କୁ ରକ୍ଷା କରିବା ପାଇଁ ଯେଉଁ ସୁଡଙ୍ଗ ଖୋଳାଯାଇଥିଲା ତାକୁ ଏହିମାନେ ଖୋଳିଥିଲେ । ଭୂମି ଖନନରୁ ବାହାରୁଥିବା ମାଟିକୁ ଆଁ କରିବାରୁ ଏମାନଙ୍କୁ 'ଭୂୟାଁ' କୁହାଗଲା ବୋଲି ଲୋକକଥା ଅଛି । ଭୂମିପୁତ୍ର ଭୂୟାଁ କେନ୍ଦୁଝରରେ ଭଞ୍ଜବଂଶୀୟ ରାଜାଙ୍କୁ ଅଭିଷିକ୍ତ କରାଇ ନିଜେ 'କିଙ୍ଗ–ମେକର' ଭାବେ ପରିଚିତ ହୋଇପାରିଛନ୍ତି । ଓଡ଼ିଶାର କେଉଁଝର, ମୟୂରଭଞ୍ଜ, ସମ୍ବଲପୁର, ସୁନ୍ଦରଗଡ, ଝାରସୁଗୁଡା, ଦେବଗଡ, କୁଚିଣ୍ଡା (ପୁରାତନ ବାମଣ୍ଡା ଦେଶୀୟ ରାଜ୍ୟ) ଢେଙ୍କାନାଳ, ଅନୁଗୋଳ, ପାଲଲହଡା, ବଣେଇଁ, ବଉଦ, ଗାଙ୍ଗପୁର, ବାଲେଶ୍ୱର ଜିଲ୍ଲାର ନୀଳଗିରି କଳାହାଣ୍ଡି ଆଦି ଅଞ୍ଚଳ ତଥା ବିଭିନ୍ନ ଜିଲ୍ଲାରେ ଭୂୟାଁ ସମ୍ପ୍ରଦାୟର ଲୋକମାନେ ବସବାସ କରନ୍ତି । ଓଡ଼ିଶା ବାହାରେ ବଙ୍ଗ, ବିହାର, ଝାରଖଣ୍ଡ, ମଧ୍ୟପ୍ରଦେଶ, ଛତିଶଗଡ, ଆନ୍ଧ୍ରପ୍ରଦେଶ, ଉତ୍ତର ପ୍ରଦେଶ, ଉତ୍ତରାଖଣ୍ଡ, ଆସାମ, ମେଘାଳୟ, ହିମାଚଳ ପ୍ରଦେଶ, ଜାମ୍ମୁ–କାଶ୍ମୀର, ମାନ୍ଦ୍ରାଜ, କେରଳ, ଗୟା, ମହାରାଷ୍ଟ୍ରରେ ମଧ୍ୟ ଏ ଜାତିର ଲୋକମାନେ ବସବାସ କରନ୍ତି । ଓଡ଼ିଶାର ଭୂୟାଁମାନେ ଓଡ଼ିଆ ଭାଷା, ବିହାରର ଭୂୟାଁମାନେ ସାଦ୍ରିଭାଷା ଓ ମଧ୍ୟପ୍ରଦେଶର ଭୂୟାଁମାନେ ହିନ୍ଦୀ ଭାଷାରେ କଥାବାର୍ତ୍ତା କରନ୍ତି । ଓଡ଼ିଶାର ବିଭିନ୍ନ ଗଡଜାତରେ ଭୂୟାଁମାନଙ୍କର ଅବଦାନ ଅତୀତରେ କମ୍ ନୁହେଁ । ଏମାନେ ଏକ ଦୁର୍ଦ୍ଧର୍ଷ, ବୀର, ସାହସୀ, ବୁଦ୍ଧିମାନ ଓ ଯୋଦ୍ଧା ଜାତି ଭାବରେ ନିଜକୁ ପ୍ରମାଣିତ କରିଯାଇଛନ୍ତି । କେନ୍ଦୁଝର ଜିଲ୍ଲାର ଭୂୟାଁ ସର୍ଦ୍ଦାର ବିପ୍ଳବୀରୁ ସନ୍ନ୍ୟାସୀ–ଧରଣୀଧର ନାୟକ, ବିପ୍ଳବୀରୁ ଶହୀଦ ରତ୍ନା ନାୟକ ଓ ସୁନ୍ଦରଗଡ ଜିଲ୍ଲାର ପ୍ରଜା ଆନ୍ଦୋଳନର ବିପ୍ଳବରୁ ହଜାରିବାଗ ମାଦ୍ରୀ କାଲୋଙ୍କ ଭୂମିକା ହେଉଛି ତା'ର ଜ୍ୱଳନ୍ତ ଉଦାହରଣ । ଅତୀତରେ ଏହି ଭୂୟାଁମାନେ ଓଡ଼ିଶାରେ ଦିନେ ସାମ୍ରାଜ୍ୟ ବିସ୍ତାର କରିଥିଲେ ବୋଲି ଐତିହାସିକ ମତ ଦିଅନ୍ତି । କିମ୍ବଦନ୍ତୀ କହେ ଅତୀତରେ ଭୂୟାଁମାନେ ଅତ୍ୟନ୍ତ ବଳଶାଳୀ ଥିଲେ ଓ ଛୋଟନାଗପୁରରେ ରାଜତ୍ୱ କରୁଥିଲେ । ଆସାମ ଯାଏ ତାଙ୍କର ରାଜତ୍ୱ ରହିଥିବା କୁହାଯାଏ । ଭୂୟାଁମାନେ ମଧ୍ୟପ୍ରଦେଶ ଓ ସିଂହଭୂମିର ଦକ୍ଷିଣ ପଶ୍ଚିମ ଆଡୁ ଆସି ଓଡ଼ିଶାରେ ନିଜର ବସତି ସ୍ଥାପନ କରିଥିଲେ । ଏଥିରୁ ସୂଚାଇ ଦିଏ ଭୂୟାଁମାନଙ୍କର ଗୌରବମୟ ଗରିମାର କଥା ।

ଉତ୍କଳର ବହୁ ପ୍ରାଚୀନ କାଳର ନାମ କଳିଙ୍ଗ ଥିଲା । ଏକ ପୌରାଣିକ ବିବରଣୀ ଅନୁସାରେ ଅସୁର ରାଜା ବଳୀଙ୍କର ସ୍ତ୍ରୀ ସୁଦେଷ୍ଣାଙ୍କ ଗର୍ଭରୁ ଆର୍ଯ୍ୟଋଷି ଦୀର୍ଘତମାଙ୍କ ଔରସରେ ଅଙ୍ଗ, ବଙ୍ଗ, କଳିଙ୍ଗ, ପଣ୍ଡ୍ର ଓ ସମ୍ଭୁହ ନାମରେ ପାଞ୍ଚପୁତ୍ର ଜନ୍ମ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ କଳିଙ୍ଗଙ୍କ ନାମାନୁସାରେ କଳିଙ୍ଗ ଭୂମିର ନାମକରଣ ହୋଇଥିଲା । ଭାରତ ଇତିହାସର ଆରମ୍ଭ କାଳରୁ କଳିଙ୍ଗ ଏକ ବହୁ ବିଦିତ ସାଂସ୍କୃତିକ କେନ୍ଦ୍ର ରୂପେ ପରିଚିତ ଥିଲା । ଆର୍ଯ୍ୟୋତ୍ତର କଳିଙ୍ଗ ଭୂମିର କକ୍ଷୀବନ୍ତ ଆର୍ଯ୍ୟ ବୈଦିକ

ସମାଜରେ ପ୍ରତିଷ୍ଠା ଲାଭ କରିଥିଲା । କଳିଙ୍ଗ ରାଣୀଙ୍କର ଦାସୀ ଉସିକ ଗର୍ଭରେ ଦୀର୍ଘତମା ଋଷିଙ୍କ ଔରସରେ କକ୍ଷୀବାନ ଜନ୍ମ ଗ୍ରହଣ କରିଥିଲେ । ଏଣୁ କକ୍ଷୀବାନ ନୀଚବଂଶ ସମ୍ଭୁତ ଏ ବିଷୟ ବାୟୁପୁରାଣ, ମତ୍ସ୍ୟପୁରାଣ ତଥା ମହାଭାରତରେ ସୂଚିତ । ବୌଦ୍ଧ ଯୁଗରେ କଳିଙ୍ଗ ଭୂମିର ପ୍ରସିଦ୍ଧି ବହୁ ବିଦିତ ଥିଲା । ଦନ୍ତପୁର ସେ ଯୁଗର କଳିଙ୍ଗ ବା ମଧ୍ୟ କଳିଙ୍ଗର ରାଜଧାନୀ ଥିଲା । ଫ୍ଲିନିଷ୍ଟ ଭାରତ ଆଗମନ କାଳରେ କଳିଙ୍ଗ ତିନି ଭାଗରେ ବିଭକ୍ତ ହୋଇଥିଲା । ଯଥା– କଳିଙ୍ଗ, ଚୁଡୁ–କଳିଙ୍ଗ ବା ମଧ୍ୟ କଳିଙ୍ଗ ଓ ମଶଖ କଳିଙ୍ଗ । ପରକାଳରେ ଏହି ବିଭାଗକୁ ଘେନି ଉତ୍କଳ ବା ଉଡ୍ର (ଗଙ୍ଗାଠାରୁ ବୈତରଣୀ) କଙ୍ଗୋଦ ବୈତରଣୀରୁ ଦକ୍ଷିଣ ଚିଲିକା ମୁହାଣ ପର୍ଯ୍ୟନ୍ତ କଳିଙ୍ଗ ଭୂମି ନାମରେ ବିଦିତ ଥିଲା । ଓଡ଼ିଶାରେ କଥାକଥିତ ସୂର୍ଯ୍ୟବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । ସେହି ସମୟରେ ଏ ଅଞ୍ଚଳ ଉକ୍ତ ରାଷ୍ଟ୍ର ମଣ୍ଡଳ ରୂପେ ପରିଚିତ । ଏହି କେନ୍ଦୁଝର ସେତେବେଳେ ଜୋହାର ରାଜ୍ୟର ଖିଜିଲିଙ୍ଗ୍ ଓ ପରେ ପମଗରଭ କ୍ଷେତ୍ର ମଣ୍ଡଳ ରୂପେ ବିଦିତ ଥିଲା । ପୁଷ୍ପଗିରି ନାମରେ ସଂସ୍ଥାନ ଥିଲା । ଏ ପୁଷ୍ପଗିରି ବିହାରକୁ ବୋଧହୁଏ ସେତେବେଳେ ଲଳିତଗିରି ଉଦୟଗିରିର ବିଶ୍ୱବିଦ୍ୟାଳୟ ରୂପେ ପରିଚିତ ହେଉଥିଲା । ଭୌମକରମାନଙ୍କ ରାଜତ୍ୱ କାଳରେ ଏହା ଏକ ପ୍ରସିଦ୍ଧ ଶିକ୍ଷାପୀଠରେ ପରିଣତ ହୋଇଥିଲା । ଏହି ଭୌମବଂଶରୁ ଭୂୟାଁମାନଙ୍କର ଜନ୍ମ । ଗଜପତି କପିଳେନ୍ଦ୍ର ଦେବ ଏହି ଭୌମବଂଶରୁ ସମ୍ଭୁତ ହୋଇ ସୂର୍ଯ୍ୟବଂଶ ରାଜତ୍ୱର ପଥପ୍ରଦର୍ଶକ ଥିଲେ । ସେହି ଭୌମବଂଶରୁ ଉତ୍ପନ୍ନ ଜୟ ସିଂଙ୍କ ଦ୍ୱିତୀୟ ପୁତ୍ର ଜ୍ୟୋତି ଭଞ୍ଜ ଓ ପ୍ରଥମ ପୁତ୍ର ଆଦିଭଞ୍ଜ ବୈତରଣୀ ନଦୀ କୂଳରେ ଜ୍ୟୋତିପୁର ତଥା ଆଦିପୁର (ଅଧୁନା ଖିଚିଂ) ପାଖ ମୟୂରଭଞ୍ଜରେ ରାଜା କରାଇଥିଲେ । କିନ୍ତୁ ଭୂୟାଁମାନେ ୯ଖ୍ରୀ.ଅ. ବେଳକୁ ଜୋହାର– ହରିପୁର ଷ୍ଟେଟ୍‌ର ଯମ ଗରଭ କ୍ଷେତ୍ର ମଣ୍ଡଳ(କେନ୍ଦୁଝର)ରେ ବସବାସ କରିସାରିଥିଲେ । ସେହି ଭୂୟାଁମାନଙ୍କୁ ନେଇ ଭଞ୍ଜବଂଶ ଆବିର୍ଭାବ ପୂର୍ବରୁ ଏହି ରାଜ୍ୟରେ ୨୧ଜଣ ରାଜା ରାଜୁତି କରିସାରିଥିଲେ । ଏହି ଚତୁର ଭୂୟାଁମାନେ ଜୟ ସିଂଙ୍କୁ ଗାଦିସୀନ କରାଇ ସାରିଲା ପରେ ଏହି ମଣ୍ଡଳକୁ କେନ୍ଦୁଝରରେ ନାମିତ କରିଥିଲେ । କେନ୍ଦୁଝର ଇତିହାସ (Golden Ramsay ଓ Cobden Ramsay)ତାଙ୍କ ବହିରେ ଦର୍ଶାଇଛନ୍ତି । ୧୧୭୮ ଖ୍ରୀ.ଅରେ ଖିଚିଙ୍ଗକୋଟାର ରାଜା ଆଦିଭଞ୍ଜ ସାନଭାଇ ଜ୍ୟୋତିଭଞ୍ଜଙ୍କୁ ଭୂୟାଁମାନେ ଗୋପନରେ ଚୋରାଇ ଆଣି ବିଭିନ୍ନ ସ୍ଥାନରେ ତାଙ୍କୁ ଲୁଚାଇ ରଖି ଶେଷରେ ଭୂୟାଁପୀଢ ଅନ୍ତର୍ଗତ ବଂଶପାଳରେ ରଖି ରାଜମର୍ଯ୍ୟାଦା ସହ ତାଙ୍କର ଲାଳନପାଳନ କରୁଥିଲେ ।

ଲୋକକଥାରୁ ମଧ୍ୟ ଜଣାଯାଏ ଯେ ଭଞ୍ଜଭୂମି କେନ୍ଦୁଝରରେ ଆଦିମ ବନବାସୀମାନଙ୍କୁ ଭଞ୍ଜବଂଶର ରାଜାମାନେ ଶାସନ କରି ଆସୁଥିଲେ ବରଂ ଭୂୟାଁମାନେ ସ୍ୱଇଚ୍ଛାରେ ଜଣେ ଭଞ୍ଜ ରାଜପୁତ୍ରଙ୍କୁ ଆଣି ନିଜର ଶାସକ କରାଇଲେ ବୋଲି ପ୍ରବାଦ ଅଛି । କେନ୍ଦୁଝର ମୟୂରଭଞ୍ଜର ସୀମାନେଇ ସେତେବେଳେ ଖିଚିଙ୍ଗକୋଟା ରାଜ୍ୟ ଅବସ୍ଥିତ ଥିଲା । ସେହି ଖିଚିଙ୍ଗ– କୋଟା ଆଜିକାଲି ଖିଚିଙ୍ଗ ନାମରେ ପରିଚିତ । ସେହି ଖିଚିଙ୍ଗ୍ କୋଟା ରାଜ୍ୟ ଭିତରେ ଭୂୟାଁମାନଙ୍କ ବସତି ବାଂଶପାଳ ଭୂୟାଁପୀଢ ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା । ଭୂୟାଁବସତି ଅଞ୍ଚଳରୁ ଖିଚିଙ୍ଗ୍ କୋଟାର ଦୂରତ୍ୱ ଅଧିକ ଥିବାରୁ ଭୂୟାଁମାନେ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ । ସେମାନଙ୍କ ବସତିର ସୁରକ୍ଷା ଠିକ୍‌ଭାବେ ହୋଇପାରୁ ନଥିଲା । ଜଣେ ରାଜାଙ୍କର ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରହି ରାଜତନ୍ତ୍ରର ସୁଫଳ ପାଇବା ଆଶାରେ ନିଜର ଏକ ସ୍ୱତନ୍ତ୍ର ରାଜ୍ୟ ସ୍ଥାପନ ପାଇଁ ଯୋଜନା କଲେ । ନିଜ ଭିତରୁ କାହାକୁ ରାଜା ନକରି ଜଣେ ପଡୋଶୀ ରାଜପୁତ୍ରକୁ ଆଣି ସିଂହାସନରେ ଆରୂଢ କରାଇବା ପାଇଁ ସେମାନେ ନିଷ୍ପତ୍ତି ନେଲେ । ଭୂୟାଁମାନଙ୍କ ଚାଙ୍ଗୁ ନୃତ୍ୟ ଗୀତରେ କୁହାଯାଇଛି–

ଚାଙ୍ଗୁ ନୃତ୍ୟ ଆରମ୍ଭିଲା
ଚାଙ୍ଗୁ ବାଇଦ ବଜା
ଜ୍ୟୋତି ଭଞ୍ଜକେ ଚୋରାଇ ନେଲେ
କରୁଆ ଗଡ ରାଜା

ଏହି ଲୋକଗୀତରୁ ଜଣାଯାଏ ଯେ ଭୂୟାଁମାନେ ଜ୍ୟୋତିଭଞ୍ଜଙ୍କୁ ଗୋପନରେ ଚୋରାଇ ନେଇ କରୁଆଗଡରେ ରଖିଥିଲେ । ଅଭିଷେକ ସମୟରେ ଜଣେ ଭୂୟାଁ ଆଣ୍ଠେଇ ପଡି ଘୋଡା ହୋଇ ପିଠି ଉପରେ ବସାଇ ରାଜପୁତ୍ରଙ୍କୁ ସିଂହାସନରେ ବସିବା ପାଇଁ ଅରଣ୍ୟ ଲବ୍ଧ ପଦାର୍ଥ ସାହାଯ୍ୟରେ ରାଜାଭିଷେକ କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ତାଙ୍କ ନିବାସ ସ୍ଥାନରୁ ଆଣି ଅଭିଷେକ ସ୍ଥାନରେ ପହଞ୍ଚିବେ । ଶହ ଶହ ଭୂୟାଁମାନେ ଏକତ୍ରିତ ହୋଇ ଅଭିଷେକ କାର୍ଯ୍ୟ ସମ୍ପନ୍ନ କରିଥାନ୍ତି । ଓଡ଼ିଶାର ପୂର୍ବତନ ଗଡଜାତ ରାଜ୍ୟ କେଉଁଝର ବଣେଇ ଗାଙ୍ଗପୁର, ପାଲଲହଡା ଓ ବାମଣ୍ଡା ସେମାନଙ୍କର ଆଦି ବାସସ୍ଥଳ । ଓଡ଼ିଶାର କେଉଁଝର ରାଜବଂଶ ସହିତ ଭୂୟାଁମାନେ ଆବହମାନ କାଳରୁ ବିଶେଷ ଭାବରେ ସମ୍ପୃକ୍ତ । ଏହି ରାଜ୍ୟରେ ଭୂୟାଁ ସର୍ଦ୍ଦାର ରାଜାଙ୍କୁ ତିଳକ ଦାନ

ନକଲା ଯାଏ ରାଜାଙ୍କର ସିଂହାସନ ଆରୋହଣ ଅସିଦ୍ଧ ହେଉଥିଲା ।

ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ଭୂୟାଁମାନେ ଚାରି ଜାତିରେ ବିଭକ୍ତ ଯଥା– ପରଜା ଭୂୟାଁ, ଦଣ୍ଡସେନା ଭୂୟାଁ, ସାନ୍ତାଳୀ ଭୂୟାଁ ଓ ଖଣ୍ଡାୟତ ଭୂୟାଁ । ଏହି ଭୂୟାଁମାନେ ବାରଗୋଟି ପାଟକରେ ବିଭକ୍ତ ହେବାର ପ୍ରଥା ରହିଛି । ଠାକୁର (ରାଜବଂଶଧର ସାମନ୍ତ), ନାଇକ (ସେନାପତି), ପ୍ରଧାନ (ଗାଁ ମୁଖିଆ), ଛତ୍ରିଆ (ରାଜାଙ୍କର ଛତ୍ରଧାରୀ), କାଲୋ (ଗୁଣି ବା ପୂଜକ), ଦେହୁରୀ (ପୁରୋହିତ) ସାହୁ (ମହାଜନ ଗ୍ରହୀତା) ମାଝି (ଦଳପତି), ବେହେରା (ପରାମର୍ଶ ଦାତା) ଓ ଦଣ୍ଡମେଳା (ପୋଲିସ କର୍ମଚାରୀ) । ଭୂୟାଁମାନେ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ରାଜକୁଳୀ ଭୂୟାଁ ଓ ପାହାଡି ଭୂୟାଁ ବା ମାଲଭୂୟାଁ କୁହାଯାଏ । ରାଜକୁଳୀ ଭୂୟାଁମାନେ ରାଜାଙ୍କର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରି ରାଜକୁଳୀ ଭୂୟାଁ ଭାବରେ ଖ୍ୟାତ । ପାହାଡି ଭୂୟାଁମାନେ ପାହାଡ ଉପରେ ବସବାସ କରୁଥିବାବେଳେ ମାଲଭୂୟାଁମାନେ ସମତଳ ଅଞ୍ଚଳରେ ବାସ କରନ୍ତି । ପାହାଡି ଭୂୟାଁ ଅପଭ୍ରଂଶ ହୋଇ କାଳକ୍ରମେ ପାଉଡିଭୂୟାଁ ଶବ୍ଦର ଉତ୍ପତ୍ତି ହୋଇଛି । ପର୍ବତିଆ ବା ମାଲଭୂୟାଁ ସମ୍ପ୍ରଦାୟ ଲୋକମାନେ ସୁନ୍ଦରଗଡ ଜିଲ୍ଲାର ପାବେଡ ପ୍ରଗଣାରେ ବାସ କରନ୍ତି । ଗାଁଗୁଡିକ ପର୍ବତର ଶିଖର ତଥା ତଳ ଦେଶରେ ଅବସ୍ଥିତ । ପ୍ରତ୍ୟେକ ଗାଁର ମଧ୍ୟଭାଗରେ ଗୋଟିଏ ଲେଖାଏଁ ମଣ୍ଡାଘର ନିର୍ମିତ ହୋଇଥାଏ । ମଣ୍ଡାଘର ସାଧାରଣତଃ କ୍ଲବ୍ ଘର ପରି । କର୍ମକ୍ଳାନ୍ତ ଜୀବନକୁ ସରସ ସୁନ୍ଦର କରିବା ପାଇଁ ନିୟମିତ ସନ୍ଧ୍ୟାରେ ସେଠାରେ ଏକତ୍ରିତ ହୋଇଥାନ୍ତି । ତାହା ତାଙ୍କର ଭାବ ବିନିମୟର ପେଣ୍ଠସ୍ଥଳୀ । ଚା' ସାଙ୍ଗକୁ ଚାଙ୍ଗୁ ବାଦ୍ୟର ତାଳେ ତାଳେ ନାଚ ଗୀତର ଆସର ଜମି ଉଠେ ।

ଦିନ ଥିଲା ବ୍ରିଟିଶ ସମୟରେ ତଥା ରାଜା ମହାରାଜାମାନେ ନିଜର ସ୍ଥିତିକୁ ସୁଦୃଢ କରି ରଖିବା ନିମନ୍ତେ ଭୂୟାଁ ଜାତି ଭିତରେ ବିଭାଜନ ସୃଷ୍ଟି କରି ସେମାନଙ୍କୁ ଦୁର୍ବଳ କରିଦେଲେ । କେନ୍ଦୁଝର ଓ ସୁନ୍ଦରଗଡ ଜିଲ୍ଲା ଜାତି ବିଭାଜନର ଏକ ଜ୍ୱଳନ୍ତ ଉଦାହରଣ । ଅନ୍ୟାନ୍ୟ ଜିଲ୍ଲାରେ ସାଆନ୍ତଭୂୟାଁ, ଖଣ୍ଡାୟତ ଭୂୟାଁ ଓ ପରଜାଭୂୟାଁ ଏହିପରି ତିନିପ୍ରକାର ଗୋଷ୍ଠୀଭୁକ୍ତ ବିକ୍ଷିପ୍ତ ହୋଇ ରହିଛନ୍ତି । କେନ୍ଦୁଝର ଜିଲ୍ଲାରେ ମଧ୍ୟ ଠିକ୍ ସେହିପରି ଯଥା ପାହାଡି ଭୂୟାଁ (ପାଉଡିଭୂୟାଁ), ରାଜକୁଳି ଭୂୟାଁ, ସାଉଁନ୍ତି ଭୂୟାଁ ଏବଂ ରାଉତାଳି(ପବନଭୂୟାଁ) ଏହି ଚାରି ପ୍ରକାର ଭୂୟାଁ କେନ୍ଦୁଝରରେ ଦେଖିବାକୁ ମିଳେ । ଉଲ୍ଲିଖିତ ବିଭାଜନର ଦୂରୀକରଣ ହେଲେ ମଧ୍ୟ ସମସ୍ତେ ଗୋଟିଏ ଭୂୟାଁ ଜାତି ରୂପେ ପରିଚିତ । ଏହି ଭୂୟାଁମାନଙ୍କର ଜାତୀୟ ପତାକା ହେଲା ସବୁଜ କନା ଉପରେ ଦୁଇଟି ଖଣ୍ଡା ମଧ୍ୟରେ ଗୋଟିଏ ଢାଲ । ଏହି ଖଡ୍‌ଗ ଓ ଢାଲ ହେଉଛି ଶକ୍ତିର ପ୍ରତୀକ । ତେଣୁ ଭୂୟାଁ ଜାତିର ସଂଜ୍ଞା ପରିଚୟ ହେଲା ଯଥା ୧) ନାୟକ, ୨) ନାଏକ ୩)ଅମାତ୍ ୪) ଅମାନ୍ତ ୫) ଅଢା ୬) ବିଶ୍ୱାଳ ୭) ଭୂୟାଁ ୮) ଭିତିରିଆ ୯) ବେହେରା ୧୦) ବାଗ ୧୧) ବିଜୁଳି ୧୨) ବଡେକ ୧୩) ଦାସ ୧୪) ଦାସବାବୁ ୧୫) ଦେହୁରୀ ୧୬) ଦଣ୍ଡପାଟ ୧୭) ଦଣ୍ଡସେନା ୧୮) ଦଳେଇ ୧୯) ଦିଗାର ୨୦) ଦଳବେହେରା ୨୧) ଫଦକାର ୨୨) ଫଥକାର ୨୩) ଗିରି ୨୪) ଗୁର୍ଲିଆ ୨୫) ହସ୍ତୀ ୨୬) ଛେଣ୍ଡୁଆର ୨୭) ଝାରକ ୨୮) କାଲୋ ୨୯) କାଳୁ (୩୦) କାର୍ଜି (୩୧) କଟୁଆଳ (୩୨) ଖଣ୍ଡାଏତ୍ ୩୩)ଖାଣ୍ଡେଲ ୩୪) ମଲ୍ଲିକ ୩୫) ପାଣିପାତ୍ର ୩୬) ପଟେଲ ୩୭) ପ୍ରଧାନ ୩୮) ପୁହାଣ ୩୯) ମହାପାତ୍ର ୪୦) ମାଝୀ ୪୧) ରାଜ ୪୨) ରାଉତ ୪୩)ରଣ (୪୪) ସା ୪୫) ସାହୁ ୪୬) ସରଳିଆ ୪୭) ସାମନ୍ତ ୪୮) ସେନାପତି ୪୯) ସାମନ୍ତରାୟ ୫୦) ସିଂହ ୫୧) ତେନ୍ତୁଆଳ ୫୨) ଠାକୁର ୫୩) କୁଅଁର ୫୪) ମହାନାଏକ ୫୫) ରାଇ ୫୬) ନାଳ ୫୭) ବାଘ ୫୮) ପାଟଭକ୍ତ ୫୯) ବଡନାଏକ ୬୦) ଗଡ ନାୟକ ୬୧) ବାଗ ସିଂ ୬୨) ରଣଜିତ୍ ୬୩) ପାଣି ୬୪) ରାୟ ୬୫) ପୁରୁ ୬୬) ଯୁରା ୬୭) ବେହେରୀ ୬୮) ମନ୍ତ୍ରୀ ୬୯) ଚୌଧୁରୀ ୭୦) ଗଡେଇ ୭୧) ଗୁରୁ ଏବଂ ଆହୁରି ଅନେକ । ଏହା ମୟୂରଭଞ୍ଜ ଜିଲ୍ଲା ଗେଜେଟିୟରୁ ସଂଗୃହୀତ କରାଯାଇଛି ।

ଏହି ଭୂୟାଁ ଆଦିବାସୀମାନଙ୍କର ବୈଚିତ୍ର୍ୟମୟ ଜୀବନଯାପନ ଅନୁଧ୍ୟାନ କରିବା ଯେପରି ଆନନ୍ଦ ଦାୟକ ସେହିପରି ମହତ୍ତ୍ୱପୂର୍ଣ୍ଣ । ଏମାନେ ଆଦିବାସୀ ସଂପ୍ରଦାୟ ହେଲେ ମଧ୍ୟ ହିନ୍ଦୁମାନଙ୍କ ଭଳି ବିଭିନ୍ନ ପର୍ବପର୍ବାଣି ପାଳନ କରନ୍ତି । କାଳକ୍ରମେ ଭୂୟାଁମାନେ ହିନ୍ଦୁ ହେଲେ । ଏମାନଙ୍କ ଭାଷା ସ୍ୱତନ୍ତ୍ର ନୁହେଁ । ପ୍ରଥମେ ଏମାନେ ପ୍ରକୃତି ପୂଜା କରୁଥିଲେ । ଏମାନେ ବଣ ଦେବୀଠାକୁରାଣୀ ତଥା ଧର୍ମ ଦେବତା, ସୂର୍ଯ୍ୟଦେବତା ଓ ଧରିତ୍ରୀମାତାଙ୍କୁ ପୂଜା କରନ୍ତି । ସେମାନଙ୍କର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମା ଦୁର୍ଗା । ଖ୍ରୀଷ୍ଟପୂର୍ବ ସମୟରୁ ଏମାନେ ବୌଦ୍ଧ ଧର୍ମାବଲମ୍ବୀ ଥିଲେ ଏବଂ ପରେ ଏମାନେ ଶକ୍ତି ଉପାସକ ହେଲେ । ଦଳେଇ ଲାମା ତାଙ୍କର 'ଲାମାଇଜିମ'ରେ କେନ୍ଦୁଝର ଭୂୟାଁମାନଙ୍କ କଥା ସୂଚାଇ ଥିଲେ ।

ବୌଦ୍ଧ ଧର୍ମର ପ୍ରବର୍ତ୍ତକ ବୁଦ୍ଧଦେବଙ୍କର ପ୍ରଥମ ଓଡ଼ିଆ ଦୁଇଜଣ ଶିଷ୍ୟ ତପସୁ ଓ ଭଲ୍ଲୁକ ଥିଲେ ଭୂୟାଁ । ବୁଦ୍ଧଙ୍କର ପଞ୍ଚଶିଷ୍ୟ ପଦ୍ମସମ୍ଭବ ଅନେକ ଦିନ କେନ୍ଦୁଝରରେ ରହି ଅନେକଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲେ । କେନ୍ଦୁଝରରେ ସ୍ୱର୍ଗତ ରାଜା ଲକ୍ଷ୍ମୀନାରାୟଣ ଭଞ୍ଜଙ୍କ ସମୟରେ ଏହି ଭୂୟାଁମାନେ ବୀରତ୍ୱ ସହକାରେ ଯୁଦ୍ଧ କରି ମରହଟ୍ଟାମାନଙ୍କୁ ମୁକାବିଲା କରିଥିବାର ପ୍ରମାଣ ମଧ୍ୟ ଅଛି । ମୋଗଲମାନଙ୍କ ରାଜତ୍ୱ ସମୟରେ ଏମାନେ ଜିଜିୟା କର ଦେଇ ନୟାନ୍ତ ହୋଇଯାଇଛନ୍ତି । ୧୮୯୮ ଖ୍ରୀଷ୍ଟାବ୍ଦରେ ଔପନ୍ୟାସିକ ଗୋପାଳ ବଲ୍ଲଭ ଦାସଙ୍କ ରଚିତ ଭୀମାଭୂୟାଁ ଉପନ୍ୟାସରେ ଅବହେଳିତ ଭୂୟାଁ ଆଦିବାସୀ ଜୀବନ ଓ ଏକ ତାଡନାମୂଳକ ପ୍ରେମ କାହାଣୀ ଅବତାରଣା କରାଯାଇଛି । ଆଦିବାସୀ ଭୀମାର କର୍ତ୍ତବ୍ୟ ପରାୟଣତା ଓ ବୀରତ୍ୱ ତଥା ପିତାଙ୍କ ପ୍ରାଣ ରକ୍ଷା ଯୋଗୁଁ ରାଜା ହରିଚନ୍ଦନଙ୍କ କନ୍ୟା ତା ପ୍ରତି ପ୍ରେମାସକ୍ତ ହୋଇଛି କିନ୍ତୁ ରାଜା ଏହା ଜାଣିବା ପରେ ଦୁଃସାହସୀ ଯୁବକ ଭୀମାକୁ ପ୍ରାଣଦଣ୍ଡ ଆଦେଶ ଦେଇଛନ୍ତି । ଅବଶ୍ୟ ରାଜଜେମାଙ୍କ ହସ୍ତକ୍ଷେପ ଫଳରେ ମୃତ୍ୟୁଦଣ୍ଡ ଖାରଜ ହୋଇଛି ।

ଭୂମିପୁତ୍ର ଭୂୟାଁମାନେ ପୃଥିବୀକୁ ମାତା ରୂପେ ଆରାଧନା କରନ୍ତି । ମାତୃଭୂମିର ରକ୍ଷା ପାଇଁ ଏମାନେ ପ୍ରାଣପାତଃ କରିବାକୁ ମଧ୍ୟ ପଛାନ୍ତି ନାହିଁ । ଅନ୍ୟାୟ ବିରୋଧରେ ସଂଗ୍ରାମ ପାଇଁ ଏମାନେ ସଦା ତତ୍ପର ହୋଇ ବାହାରନ୍ତି । ଭୂୟାଁମାନେ ଆଦିବାସୀ ଶ୍ରେଣୀଭୁକ୍ତ ହେଲେ ହେଁ ଚାଷ ହେଉଛି ଏମାନଙ୍କର ମୁଖ୍ୟ ଜୀବିକା । ଧାନ, ଗହମ, ମକ୍କା, କାକୁଡି, ବାଜରା ଇତ୍ୟାଦି ଚାଷ କରିବା ସଙ୍ଗେ ସଙ୍ଗେ ଜଙ୍ଗଲ ଜାତ ଦ୍ରବ୍ୟ ପୋଡୁ ଚାଷ ମଧ୍ୟ ଏମାନେ କରନ୍ତି । ଗୋଟିଏ ସ୍ଥାନ ତିନି/ଚାରିବର୍ଷ ଚାଷ କଲାପରେ ନୂତନ ସ୍ଥାନରେ ଜଙ୍ଗଲ ପୋଡି କ୍ଷେତ୍ର ପ୍ରସ୍ତୁତ କରନ୍ତି । ଅରଣ୍ୟ ଜାତ ଫଳମୂଳ ସଂଗ୍ରହ କରି ନିଜର ଆହାର ରୂପେ ବ୍ୟବହାର କରନ୍ତି । ଏମାନେ ଶିକାର ପ୍ରିୟ । ଜଙ୍ଗଲକୁ ଗଲାବେଳେ ଏମାନଙ୍କ କାନ୍ଧରେ ଥାଏ ଧନୁ, ତୀର ଓ ଟାଙ୍ଗିଆ । ଏହି ତୀର ଫଳକରେ ଏମାନେ ବିଷ ଦେଇ ଶତ୍ରୁମାନଙ୍କୁ ନିହତ କରନ୍ତି । ଧାନ, ଗହମ, ମାଣ୍ଡିଆ ଇତ୍ୟାଦି ଉତ୍ପାଦନ ପାଇଁ ପଣ୍ଡା, ବଳଦ ଯୋଡି ହଳ କରନ୍ତି । ଭୂୟାଁମାନେ ଯେଉଁ ଜମିରେ ଚାଷ କରନ୍ତି ତାହା ଯଦି ଉତ୍ପାଦନ ଶକ୍ତି ହ୍ରାସ ପାଏ, ତା'ହେଲେ ସେମାନେ ନୂତନ ସନ୍ଧାନ ମଧ୍ୟ କରନ୍ତି । ପ୍ରାୟ ପ୍ରତି କୋଡିଏ ବର୍ଷରେ ଚାଷ ଉଦ୍ଦେଶ୍ୟରେ ଭୂୟାଁମାନେ ନିଜର ବସତି ପରିବର୍ତ୍ତନ କରୁଥିଲେ ଏବଂ ଏମାନେ ଯାଯାବର କୃଷକ ଥିଲେ । ଏବେ ଅବଶ୍ୟ ଭୂୟାଁମାନେ ସ୍ଥାୟୀଭାବେ ଗୋଟିଏ ସ୍ଥାନରେ ରହିବାକୁ ପସନ୍ଦ କରୁଛନ୍ତି ।

କେନ୍ଦୁଝର, ମୟୂରଭଞ୍ଜ, ସୁନ୍ଦରଗଡ ଜିଲ୍ଲା ହେଉଛି ଭୂୟାଁମାନଙ୍କର ଆଦିବାସ ସ୍ଥାନ । କାଳକ୍ରମେ ସେମାନଙ୍କର ବଂଶବୃଦ୍ଧି ହେବାରୁ କେତେକ ନିକଟବର୍ତ୍ତୀ ଜିଲ୍ଲାମାନଙ୍କୁ ଯାଇ ବସତି ସ୍ଥାପନ କଲେ ଓ ସେମାନଙ୍କର ପୈତୃକ ସ୍ୱଭାବ ଛାଡିବା ପାଇଁ ବାଧ୍ୟ ହେଲେ । ସେମାନଙ୍କ ସ୍ୱଭାବରେ କେତେକ ବିଶେଷତ୍ୱ ଅଛି ଯାହା ଓଡ଼ିଶାର କରଦ ରାଜ୍ୟମାନଙ୍କରେ ବାସ କରୁଥିବା ଅନ୍ୟାନ୍ୟ ଆଦିମ ଜାତିମାନଙ୍କଠାରେ ପରିଲକ୍ଷିତ ହୁଏନାହିଁ । ଭୂୟାଁମାନେ ବନ୍ଧୁମାନଙ୍କ ପ୍ରତି ଅତ୍ୟନ୍ତ ବିଶ୍ୱାସୀ, ଅତିଥି ସେବାରେ ସର୍ବଦା ତତ୍ପର । ବିଶ୍ୱସ୍ତ ଓ ସୌଜନ୍ୟ ସେମାନଙ୍କର ଦୁଇଗୋଟି ପ୍ରଧାନ ଗୁଣ । ପ୍ରତ୍ୟେକ ଆଗନ୍ତୁକ ପ୍ରତି ନିମନ୍ତ୍ରିତ ଅତିଥି ତୁଲ୍ୟ ବ୍ୟବହାର କରନ୍ତି । ଯଦି କୌଣସି ରାଜକର୍ମଚାରୀ କିମ୍ବା କ୍ଷମତାଶାଳୀ ବ୍ୟକ୍ତି ହୋଇଥାଏ, ତାହେଲେ ଗ୍ରାମର ସ୍ତ୍ରୀ ଲୋକମାନେ ତାକୁ ସମ୍ମାନ ପ୍ରଦର୍ଶନ କରିବା ଅଭିପ୍ରାୟରେ ଦଳବଦ୍ଧ ହୋଇ ହଳଦୀପାଣି ଓ ଖଣ୍ଡିଏ କାଠ ଆସନ (ପିଢ଼ା) ପରେ ପାଦ ଧୋଇ ଆଣ୍ଠୁମାଡି ବସି ହାତ ଭୂମିରେ ରଖି ନମସ୍କାର କରନ୍ତି । ତା'ପରେ ବିନୀତ ଭାବରେ କୁହନ୍ତି ଆମ୍ଭେମାନେ ଏପରି ଅବସ୍ଥାରେ ଅଛୁ । ଆମର ଯାହା ଅଛି ସେଥିରୁ ଅଂଶ ଗ୍ରହଣ କରନ୍ତୁ, ଏପରି କହି ତାଙ୍କୁ ମଣ୍ଡପ ଘର ବା କ୍ଲବ ଘର ଆସ୍ଥାନ ଦେଇ ଅଭ୍ୟର୍ଥନା ଜଣାନ୍ତି । ପ୍ରତ୍ୟେକ ଗାଁ ମଧ୍ୟ ଭାଗରେ ଗୋଟିଏ ଲେଖାଏଁ ମଣ୍ଡାଘର ବା କ୍ଲବ୍ ଘର ନିର୍ମିତ ହୋଇଥାଏ । ମଣ୍ଡାଘର ସାଧାରଣତଃ କ୍ଲବ ଘର ପରି, କର୍ମକ୍ଳାନ୍ତ ଜୀବନକୁ ସରସ ସୁନ୍ଦର କରିବା ପାଇଁ ନିୟମିତ ସନ୍ଧ୍ୟାରେ ସେଠାରେ ଏକତ୍ରିତ ହୋଇଥାନ୍ତି । ତାହା ତାଙ୍କର ଭାବ ବିନିମୟର ପେଣ୍ଠସ୍ଥଳୀ । ଚାଙ୍ଗୁ ବାଜା ତାଳେ ତାଳେ ନାଚ ଗୀତର ଆସର ଜମିଉଠେ । ଚାଙ୍ଗୁ ଓ ଭାଲୁକୁଣୀ ନାଚ ଏମାନଙ୍କର ମଜ୍ଜାଗତ । ଏହା ଏମାନଙ୍କର ଲୋକନୃତ୍ୟ ହିସାବରେ ଗଣ୍ୟ । ଦୋଳି ଗୀତ ଭୂୟାଁମାନଙ୍କର ଲୋକଗୀତ ହିସାବରେ ଗ୍ରହଣ କରାଯାଇଛି । ପ୍ରତି ଗ୍ରାମରେ ଧାଙ୍ଗଡା ଘର ଓ ମଣ୍ଡପ ଘର ରହିଥାଏ । ରଜ ପର୍ବରେ ଭୁୟାଁରମଣୀମାନେ ଗୀତ ବୋଲିବାରେ ସିଦ୍ଧହସ୍ତା । ଶାସ୍ତ୍ର ମତେ ବିବାହ ବିଭିନ୍ନ ପ୍ରକାର । ଯଥା ୧) ଗାନ୍ଧର୍ବ ବିବାହ ୨) ରୁକ୍ମିଣୀ ବିବାହ ୩) ସ୍ୱୟଂବର ବିବାହ ୪) ସୁଭଦ୍ରା ପରିଣୟ ୫) ବୈଦିକ ବିବାହ ୬) ରୌଷିକ ବିବାହ ୭) ଅନାର୍ଯ୍ୟ ବିବାହ ୮) ପ୍ରଜାପତି ବିବାହ । ବିବାହର ରୀତିନୀତି ସ୍ଥାନ, କାଳ, ପାତ୍ର ଭେଦରେ ପରିବର୍ତ୍ତନଶୀଳ । ଏଣୁ ଆଦିମ ଅଧିବାସୀମାନଙ୍କ କ୍ଷେତ୍ରରେ ଏ ରୀତିନୀତି କ୍ଷେତ୍ରରେ ଅନେକ ପରିବର୍ତ୍ତନ, ଅନେକ ଅନୁସରଣ, ଅନେକ ବୈଚିତ୍ର୍ୟମୟ ଲକ୍ଷ୍ୟ କରାଯାଏ । ଏହି ବିଭିନ୍ନ ତଥ୍ୟକୁ ବିବାହର ଗୋଟିଏ 'ଶୈଳୀ'

କହିଲେ ଅତ୍ୟୁକ୍ତି ହେବନାହିଁ । ଏ ଶୈଳୀ ସମ୍ପୂର୍ଣ୍ଣ ମନୁଷ୍ୟକୃତ ସମାଜ ଦ୍ୱାରା ସୃଷ୍ଟି । ବୈଦିକ ଓ ପ୍ରଜାପତ୍ୟ ରୀତିକୁ ସଭ୍ୟ ସମାଜ ଜଗତ ଆଦରି ନେଇଥିବା ବେଳେ ପ୍ରକୃତିକୁ ଆଦରି ନେଇଥିବା ଆଦିମ ଅଧିବାସୀମାନଙ୍କର ଗହଣରେ ନିମ୍ନୋକ୍ତ ପ୍ରକାରର ବିବାହ ଦେଖାଯାଏ । ଏହି ସମସ୍ତ ବିବାହ ପଦ୍ଧତି ବେଶ୍ ଚମକପ୍ରଦ ଓ କୌତୁହଳପୂର୍ଣ୍ଣ । ସେହି ବିବାହ ପଦ୍ଧତିଗୁଡ଼ିକ ହେଲା ଯଥା– ୧) ଉଧିଳିଆ (ଦୂରକୁ) ୨) କନିଆଁ ଘିଚା (ଅପହରଣ) ୩) ବର ଘରେ ବିବାହ ୪) ଘନକା ବିବାହ (ଘର ଜ୍ୱାଇଁ) ୫) ବରଯାତ୍ରା ବିବାହ (ବରକନ୍ୟା ପିତାଙ୍କ ଘରେ ବିବାହ) ୬) ପରଶା ମୁଡି ବିବାହ ବା ଧରାପରା ବିବାହ (ଯିଏ ଯାହାକୁ ରସେ ବା ଭଲ ପାଇବା) ୭) ଚାଉଳ ଟିକା ବିବାହ (ସମାଜ ଚାଉଳ ପୁଞ୍ଜାଏ ମାଧ୍ୟମରେ ଆଶୀର୍ବାଦ ଦିଆଯାଏ) ୮) କୁଟେନ୍ ସାଇ ବିବାହ (ଢିଙ୍କିଶାଳରେ ବର କନ୍ୟାକୁ ଆଶୀର୍ବାଦ) ୯) ବାଲ୍ୟ ବିବାହ (ବାଲ୍ୟ ବିବାହ) ୧୦) ମାଙ୍ଗି ବିବାହ (ପଣ ବିବାହ) ୧୧) ଫୁଲ ଖୋସି ବିବାହ ୧୨) ସିନ୍ଦୂର ଘୋସା ବିବାହ ୧୩) ବିଧବା ବିବାହ ଆଦି ବିବାହ ରୀତିନୀତି ଭୂୟାଁ ସମାଜରେ ରହିଛି । ଯେତେବେଳେ ଧାଙ୍ଗଡ଼ା ଧାଙ୍ଗିଡ଼ି (ଯୁବକ ଯୁବତୀ) ପରସ୍ପର ପ୍ରତି ଆକୃଷ୍ଟ ହୋଇପଡନ୍ତି, ସେମାନେ ସେତେବେଳେ ପରସ୍ପର ନିକଟତର ହେବା ପାଇଁ ସ୍ୱାମୀ ସ୍ତ୍ରୀ ରୂପରେ ଜୀବନକୁ ଅତିବାହିତ କରିବା ପାଇଁ ଶପଥ ନେଇଥାନ୍ତି । ସମାଜରେ ସମସ୍ତ ବାଧା–ବନ୍ଧନ କିମ୍ବା ଆର୍ଥିକ ଦୁରବସ୍ଥାର ପ୍ରାଚୀରକୁ ଡେଇଁବା ପାଇଁ ଜ୍ଞାତ ବା ଅଜ୍ଞାତ ସ୍ଥାନରୁ ତାର ଚିର ଆକାଂକ୍ଷିତ ପ୍ରେମିକାକୁ ଘିଚି ବା ଅପହରଣ କରିନିଏ । ଯେପରି ପୃଥିବୀରାଜ ଚୌହାନ ଅଶ୍ୱପୃଷ୍ଠରେ ସଂଯୁକ୍ତାଙ୍କୁ ନେଲାପରି । ତା'ପରେ ସେହି ଘିଚା ବା ଅପହରଣକୁ ଏକ ଅନୁମୋଦନ ମିଳିଥାଏ । ମହାଭାରତ ଯୁଗରେ ଅର୍ଜ୍ଜୁନ ଓ ସୁଭଦ୍ରାଙ୍କ କାହାଣୀ ଭଳି ଏହି ବୀର ଓ ଘିଚା କନ୍ୟାମାନଙ୍କର କାହାଣୀ ରହିଛି । କଥାରେ ଅଛି ଯିଏ ଯାହାକୁ ରସେ ତାକୁ ସେ କିଆଫୁଲ ପରି ବାସେ । ଯେତେବେଳେ ଜଣେ ଯୁବତୀ ଭଲ ପାଇବ ଜଣେ ଯୁବକକୁ ସେ ଖୁସିରେ ଗୋପନରେ ସମସ୍ତଙ୍କ ଅଲକ୍ଷ୍ୟରେ ଚାଲିଯାଏ ତାର ପ୍ରେମିକର ଗୃହକୁ । ସେଠାରେ ସେ ପାଏ ତାର ପ୍ରେମିକ ଦ୍ୱାରା ପତ୍ନୀର ମର୍ଯ୍ୟାଦା । ଏହି ଘଟଣା ଠିକ୍ ଘଟେ 'ରୁକ୍ମିଣୀର ପରିଣୟ' ପରି । ରୁକ୍ମିଣୀର ହୃଦୟର ଦେବତା ଶ୍ରୀକୃଷ୍ଣ । ସମୟର ଗତିଚକ୍ର ପରିବର୍ତ୍ତନ ସହିତ ଭୂୟାଁମାନେ ସଭ୍ୟ ସମାଜର ଅଂଶବିଶେଷ ହୋଇପଡିଲେଣି । ସଭ୍ୟତାର ବିକାଶ ସହିତ ଭୂୟାଁଙ୍କ ଆଚାର ବିଚାରରେ ବହୁ ପରିବର୍ତ୍ତନ ଘଟିଛି । ବର ନିଜର ସାହି, ଭାଇ, କୁଟୁମ୍ବମାନଙ୍କୁ ଧରି ବାଜାବାଲାମାନଙ୍କର ବାଦ୍ୟର ତାଳେ ତାଳେ ଗମନ କରିଥାଏ କନ୍ୟାର ଘର ଅଭିମୁଖେ । କନ୍ୟାପକ୍ଷ ବର ଓ ବରଯାତ୍ରୀମାନଙ୍କୁ ଆତିଥ୍ୟ ପ୍ରଦାନ କରନ୍ତି । ବର କନ୍ୟା ପିତାଙ୍କ ଘରେ ବିବାହ କରିବା ପରେ କନ୍ୟାକୁ ଧରି ବର ଓ ବରଯାତ୍ରୀ ଫେରି ଆସନ୍ତି ବରର ଘରକୁ ।

ଭୂୟାଁମାନେ ଆଗକୁ ଭ୍ରମଣଶୀଳ ଜାତିଥିଲେ । ତେଣୁ ଆତ୍ମରକ୍ଷା ପାଇଁ ସେମାନେ ମୁଖ୍ୟତଃ ଧନୁ, ତୀର ଓ ଟାଙ୍ଗିଆ ବ୍ୟବହାର କରୁଥିଲେ । ଧନୁରଗୁଣ ବାଉଁଶ ପାତିଆରେ ନିର୍ମିତ ହୋଇଥାଏ । ବିଟା ଓ ତୀର ପାଇଁ ବାଉଁଶକଣି ବ୍ୟବହାର କରାଯାଏ । ଗୁଣର ଶେଷଭାଗରେ ଦୁଇଗୋଟି ପଶୁ ଚମଡାର ଫାଶ, ଝୋଟ, କଣି କିମ୍ବା ଶୀଆଡି ଦଉଡିରେ ଦୃଢଭାବରେ ଗଣ୍ଠି କରାଯାଇ ଧନୁହୁକ ତିଆରି ହୋଇଥାଏ । ଛୋଟ ଛୋଟ ପଶୁପକ୍ଷୀ ଶିକାର ପାଇଁ ବାଉଁଶର ଗଣ୍ଠିରେ ନିର୍ମିତ ବିଟା ବ୍ୟବହାର କରାଯାଏ । ପଶୁଙ୍କୁ ପିଟିବା ପାଇଁ କିମ୍ବା କାଟିବା ପାଇଁ ସେମାନେ ଲୁହାର ଟାଙ୍ଗିଆ ବ୍ୟବହାର କରନ୍ତି । ଧନୁ, ତୀର ଓ ଟାଙ୍ଗିଆ ଏହି ତିନି ଅସ୍ତ୍ର ନ ଧରିଲେ ଭୂୟାଁମାନେ ଜଙ୍ଗଲକୁ ଯାଆନ୍ତି ନାହିଁ ।

ମଣ୍ଡପରେ ନାଚ ଗୀତରେ ବେଳେବେଳେ ଅନ୍ୟ ଗ୍ରାମର ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ ବା ଯୁବକ–ଯୁବତୀମାନେ ଯୋଗ ଦିଅନ୍ତି । ସେହିଠାରେ ଧାଙ୍ଗଡ଼ା ନିଜର ମନ ମୁତାବକ ଧାଙ୍ଗିଡ଼ି ପସନ୍ଦ କରି ତାକୁ ଟାଣି ନେଇ ଗୁପ୍ତ ସ୍ଥାନରେ କିଛି ଦିନ ରଖିବା ପରେ ବିବାହ କରନ୍ତି । ଭୂୟାଁ ପ୍ରଥାନୁସାରେ ସ୍ତ୍ରୀ ବ୍ୟଭିଚାର ଦୋଷରେ ଅଭିଯୁକ୍ତ ହୋଇ ପ୍ରମାଣିତ ହେଲେ ସ୍ୱାମୀ ତାକୁ ପରିତ୍ୟାଗ କରେ । ବେଳେ ବେଳେ ଏଭଳି ପରିତ୍ୟକ୍ତା ସ୍ତ୍ରୀ ସ୍ୱାମୀ ଘରେ ଦାସୀ ହୋଇ ଅବଶିଷ୍ଟ ଜୀବନଯାପନ କରେ । ବିଧବା ବିବାହ ପ୍ରଥା ମଧ୍ୟ ଭୂୟାଁ ସମାଜରେ ରହିଛି । ସାନ ଭାଇ ତାର ବଡ ଭାଇର ବିଧବା ପତ୍ନୀକୁ ପତ୍ନୀରୂପେ ଗ୍ରହଣ କରିବା ପ୍ରଥା ଏ ସମାଜରେ ପ୍ରଚଳିତ ଅଛି । ଗୀତ ମାଧ୍ୟମରେ ଉତ୍ତର ଓ ପ୍ରତ୍ୟୁତ୍ତର ଦେଇ ଆପଣା ମନଗତଭାବ ବ୍ୟକ୍ତ କରନ୍ତି ।

ଏମାନେ ମୁଖ୍ୟତଃ ପ୍ରକୃତି ଉପାସକ । ପୃଥିବୀ ଦେବୀ ଏମାନଙ୍କ ପ୍ରଥମ ଆରାଧ୍ୟା ଅଟେ । ପରେ ଶସ୍ୟ ଦେବତାଙ୍କ ଉପାସନା କରନ୍ତି । ବଡ ବଡ ଶାଳଗଛ ତଳେ ପଥର ଖଣ୍ଡ କିମ୍ବା କାଠଖଣ୍ଡ ରଖି ସେଥିରେ ସିନ୍ଦୂର ଲେପି ସେମାନେ ଦେବତା ରୂପେ ପୂଜା କରନ୍ତି । ବାଘ ଚମଡା ଓ ଉଇ ହୁଙ୍କା ମାଟି ଧରି ଏମାନେ ସତ୍ୟପାଠ କରନ୍ତି । ମାଘ ମାସରେ ମାଘି ପର୍ବ ହେଲା ଏମାନଙ୍କ ବଡ ପର୍ବ । ମନଗଢା ଗୀତ ସାଙ୍ଗକୁ ନୃତ୍ୟ ଆଦିରେ

ଏମାନେ ମାଘମାସକୁ ବେଶ୍ ଉପଭୋଗ କରନ୍ତି । ଫସଲ ଅମଳ ସମୟରେ ଏମାନଙ୍କ କରମା ପର୍ବ ପାଳିତ ହୁଏ । କୁରୁମା ଡାଳକୁ ଆଣି ରାଜାରାଣୀ କରି ସେମାନେ ଏହି ଉତ୍ସବ ପାଳନ କରିଥାଆନ୍ତି । ଏହାଛଡା ଗହ୍ମା ପୁନେଇଁ ସମୟରେ ପାରିଧି ଉତ୍ସବ ମଧ୍ୟ ପାଳନ କରନ୍ତି ।

ଭୂୟାଁମାନେ ଓଡ଼ିଆ ଭାଷାରେ କଥା ହୁଅନ୍ତି । ଉଚ୍ଚାରଣ ଦୋଷରୁ ଓଡ଼ିଆ ଭାଷା କହିବା ସମୟରେ ତାହା ଓଡ଼ିଆ ଭାଷାର ଅନ୍ତର୍ଗତ ବୋଲି ଜଣାପଡେ ନାହିଁ । ଏମାନଙ୍କ ଭାଷା ସ୍ୱତନ୍ତ୍ର ନୁହେଁ । ଏମାନେ ବାଘ, ସର୍ପ ଓ ପକ୍ଷୀ ଗତିର ଅନୁକରଣରେ ନୃତ୍ୟ କରନ୍ତି । ଅବସର ସମୟରେ ଛଉ ନାଚ, ବାଘ ନାଚ, ସର୍ପ ନାଚ ଆଦି ନାଚ କରନ୍ତି । ଭୂୟାଁ ସମାଜରେ କେହି ଜଣେ ମରିଗଲେ ତାହାକୁ ଗଭୀର ଗାତ କରି ପୋତି ଦିଅନ୍ତି । ସେ ଗାତ ଉପରେ ବିଭିନ୍ନ କଣ୍ଟା ଓ ବଡ ପଥର ଘୋଡାଇ ଦିଅନ୍ତି । କାରଣ କୌଣସି ବନ୍ୟଜନ୍ତୁ ତାହା ବାହାର କରିପାରିବେ ନାହିଁ । ମରିବାର ଦଶଦିନ ପରେ ପୁରୁଷମାନେ ନିଶଦାଢି କାଟି ପକାନ୍ତି ଏବଂ ଲଣ୍ଡା ମଧ୍ୟ ହୁଅନ୍ତି । ମହିଳାମାନେ ନଖ କାଟି ଲୁଗାପଟା ଧୋଇ ଘରକୁ ଆସି କର୍ମକାଣ୍ଡ କରି ଭୋଜିଭାତ କରି ଖାଆନ୍ତି । ତା ସହିତ ନିମନ୍ତ୍ରିତ ଗ୍ରାମବାସୀମାନଙ୍କୁ ମଧ୍ୟ ଦିଅନ୍ତି । ଭୂୟାଁମାନେ ଗ୍ରାମ ନିକଟସ୍ଥ ପାହାଡକୁ ସାଧାରଣତଃ ପୂଜା କରିଥାନ୍ତି । କୁକୁଡା ଓ ଅରୁଆ ଚାଉଳ ପ୍ରଭୃତି ଦେଇ ପୂଜା କରିଥାନ୍ତି । ପ୍ରଥମେ ପୃଥିବୀ ମାତା, ଧର୍ମ ଦେବତା, ସୂର୍ଯ୍ୟଦେବତା ଓ ଧରିତ୍ରୀମାତାଙ୍କୁ ପୂଜା କରନ୍ତି । ଶସ୍ୟ ଦେବତା, ଗ୍ରାମ ଦେବତା, ଜଳ ଦେବତା, ଅରଣ୍ୟ ଦେବତା, ବୃଷ୍ଟି ଦେବତା ଓ ପାରିଧି ଦେବତା ପ୍ରଭୃତିଙ୍କୁ ପୂଜା କରନ୍ତି । ସଭ୍ୟତାର ବିକାଶ ସହିତ ଭୂୟାଁମାନଙ୍କ ଆଚାର ବ୍ୟବହାରରେ ବହୁ ପରିବର୍ତ୍ତନ ଘଟିଛି । ସମୟର ଗତିଚକ୍ର ପରିବର୍ତ୍ତନ ସହିତ ଭୂୟାଁମାନେ ସଭ୍ୟ ସମାଜର ଅଂଶବିଶେଷ ହୋଇପଡିଲେଣି । ସେମାନଙ୍କ ସ୍ୱାଧୀନତା ଉପରେ ହସ୍ତକ୍ଷେପ କଲେ ସେମାନେ ବିଦ୍ରୋହ କରନ୍ତି ।

ମହାପୁରୁଷ, ବିପ୍ଳବୀଙ୍କର ସ୍ମୃତିରକ୍ଷା ପାଇଁ ତଥା ଉପଯୁକ୍ତ ସମ୍ମାନ ଦେବା ପାଇଁ ପୂଜ୍ୟପୂଜା, ପ୍ରତିଭା ପୂଜା ଜାତିକୁ ବଡ କରେ । ଯେଉଁ ଜାତି ପୂଜ୍ୟପୂଜା, ପ୍ରତିଭା ପୂଜା କରି ଶିଖିନି, ସେ ଜାତି କେବେ ବଡ ହୋଇପାରିନାହିଁ । ଇତିହାସ ତାହାର ପ୍ରମାଣ ଦେଇଛି । ବିଳମ୍ବରେ ହେଲେ ମଧ୍ୟ ଓଡ଼ିଶା ସରକାର ଓ ସଂସ୍କୃତି ବିଭାଗ ବିପ୍ଳବୀରୁ–ଶହୀଦ୍–ରତ୍ନ ନାୟକ ଫାଶୀ ପାଇବା ପରେ ମଧ୍ୟ ତାଙ୍କର ଆଦର୍ଶ, ତାଙ୍କ ତ୍ୟାଗ, ତାଙ୍କ ବାଣୀ ତଥା ତାଙ୍କ ସ୍ୱାଭିମାନ ପାଇଁ ଏବଂ ଓଡ଼ିଶାର ଗର୍ବ ଓ ଗୌରବ ପାଇଁ ଭୂୟାଁ ଜାତିର ପ୍ରଥମ ଜାଗ୍ରତ ପ୍ରହରୀ ଭାବେ ପଥପ୍ରଦର୍ଶକ ହୋଇରହିବେ, ବିପ୍ଳବୀରୁ ସନ୍ନ୍ୟାସୀ– ଧରଣୀଧର ନାୟକ ତଥା ସୁନ୍ଦରଗଡ ଜିଲ୍ଲାର ପ୍ରଜା ଆନ୍ଦୋଳନର ବିପ୍ଳବୀରୁ ହଜାରିବାଗ– ମାଦ୍ରୀ କାଲୋ ଏହି ତିନିଜଣଙ୍କର ରାଜଧାନୀ ଭୁବନେଶ୍ୱରର ପ୍ରମୁଖ ସ୍ଥାନରେ କିମ୍ବା ଆଦିବାସୀ ପଡିଆରେ ଏହି ବରପୁତ୍ରମାନଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରି ପୂଜ୍ୟପୂଜାର ଏକ ନୂତନ ଅଧ୍ୟାୟ ସୃଷ୍ଟି କଲେ ନିଖିଳ ଭାରତ ଭୂୟାଁ ସାଂସ୍କୃତିକ ସମିତି ଭୁବନେଶ୍ୱର ଚିର କୃତଜ୍ଞ ହୋଇରହିବ ।

କୂଅ ମାପିବା ପୂର୍ବରୁ ଦଉଡି ବଡ ହେବା ଆବଶ୍ୟକ । ଅର୍ଥାତ୍ ଭୂୟାଁ ଜାତି ବିଷୟରେ ସମୀକ୍ଷା କରିବା ପୂର୍ବରୁ ବ୍ୟାପକ ଜ୍ଞାନର ଆବଶ୍ୟକତା ରହିଛି । ଯେଉଁ ଜାତିର ଐତିହ୍ୟ, ସଂସ୍କୃତି, ପରମ୍ପରା ଯେତେ ମହାନ, ସେ ଜାତିର ଭବିଷ୍ୟତ ସେତେ ଉଜ୍ଜ୍ୱଳମୟ । ଏହି ଭୂୟାଁ ଜାତିର ଦେଶପ୍ରେମ, ଜାତୀୟତା ମନୋଭାବ ଏମାନଙ୍କୁ ବଡ କରିପାରିଛି । ସେଥିପାଇଁ ଏମାନଙ୍କର ବୀରତ୍ୱ ସବୁ ସମୟରେ ପ୍ରଶଂସନୀୟ, ଏଥିରେ ସନ୍ଦେହ ନାହିଁ ।

ସଭାପତି
ନିଖିଳଭାରତ ଭୂୟାଁ ସାଂସ୍କୃତିକ ସମିତି
ଏଚ୍.ଆଇ.ଜି–୯୧, ଫେଜ୍–୧, କାନନବିହାର
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

❖ ❖ ❖

# ପ୍ରାଚୀନଦୀ ଇତିହାସର ଏକ ଅନାଲୋଚିତ ଅଧ୍ୟାୟ

**ଦ୍ୱିଜବର ନାୟକ**

ଅତୀତର ସତ୍ୟ ଘଟଣା ସବୁକୁ ନେଇ ଇତିହାସର ସୃଷ୍ଟି ହୋଇଥିଲେ ବି ଏହାକୁ ବୁଦ୍ଧିମନ୍ତ ଏବଂ ଜୀବନ୍ତ କରିବା ନେଇ ସତ୍ୟ ଏବଂ ନିର୍ଭୁଲ ତଥ୍ୟ ଉଭୟର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସତ୍ୟ ଓ ତଥ୍ୟର ସମନ୍ୱୟ ଘଟିଲେ ଇତିହାସ ସରସ, ସୁନ୍ଦର ଓ ପରିପୂର୍ଣ୍ଣ ହୋଇଥାଏ । ତଥ୍ୟର ଅଭାବରେ ଇତିହାସ ଜୀର୍ଣ୍ଣଶୀର୍ଣ୍ଣ ଏବଂ ଦୁର୍ବଳ ହୋଇପଡେ । ଏହିପରି ଏକ ଜରାଜୀର୍ଣ୍ଣ ଇତିହାସର ସଂକେତ ମିଳେ ଉତ୍କଳର ପ୍ରାଚୀନତମ ନଦୀ, ପ୍ରାଚୀ ନଦୀର ଐତିହାସିକ ବିଭବର ଭାଗ୍ୟପଟରେ । ଉତ୍କଳୀୟ ସଭ୍ୟତା ବିଶ୍ୱ ସଭ୍ୟତାର ଏକ ପ୍ରାଚୀନ ସଭ୍ୟତା ଏବଂ ତହିଁ ମଧ୍ୟସ୍ଥ ପ୍ରାଚୀ ନଦୀ ଏବଂ ଏହାର ଅବବାହିକାରେ ଗଢି ଉଠିଥିବା ସଭ୍ୟତା ଏକ ପ୍ରାଚୀନତମ ସ୍ମାରକୀ । ଓଡ଼ିଆ ସାହିତ୍ୟର ଇତିହାସ ଅନୁଶୀଳନ କଲେ ଜଣାଯାଏ, ଓଡ଼ିଆ ଭାଷାର ଅୟମାରମ୍ଭ ଘଟିଥିଲା ଉକ୍ତ ନଦୀ କୂଳରେ ଗଢିଉଠିଥିବା ମଧ୍ୟଯୁଗୀୟ ନାଥ ସଭ୍ୟତାର ସାହିତ୍ୟ ଏବଂ ସଂସ୍କୃତିରୁ । ଅଥଚ ଏଭଳି ଏକ ପ୍ରାଚୀନ ଐତିହାସିକ ବିଭବ ସମ୍ପର୍କରେ ଐତିହାସିକ, ଗବେଷକ, ସାରସ୍ୱତ ପ୍ରତିଭା କିମ୍ବା ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ ସେପରି କୌଣସି ବିଧିବଦ୍ଧ ଉଦ୍ୟମ କରାଯାଇନାହିଁ । ହୁଏତ ଓଡ଼ିଶା ବ୍ୟତୀତ ଅନ୍ୟ ରାଜ୍ୟରେ ଏପରି ଏକ ସଭ୍ୟତାର ସଙ୍କେତ ମିଳିଥିଲେ, ତାହା ଆଜି କେଉଁ ସ୍ତରରେ ଯାଇ ପହଞ୍ଚି ସାରନ୍ତାଣି ତାହା ଚିନ୍ତା କରିହୁଏ ନାହିଁ । ଏଇଥିପାଇଁ ବୋଧହୁଏ କବିବର ମ୍ରିୟମାଣ ହୋଇ ଗାଇ ଉଠିଛନ୍ତି–

> ‘ସ୍ୱରୂପା ଅଂଶୁପା ଲୋକେ ଅଗୋଚର
> ପୂଜାସ୍ପଦ ହେଲା ଗୋଷ୍ପଦ ପୁଷ୍କର’

ବାସ୍ତବିକ ଓଡ଼ିଆ ସାହିତ୍ୟ ଆଉ ସଂସ୍କୃତିର ଭାଗ୍ୟପଟରେ ଏହା ଏକ ବିଡମ୍ବନା ବ୍ୟତୀତ ଆଉ କିଛି ହୋଇନପାରେ । ଉତ୍କଳୀୟ ସଭ୍ୟତାର ପ୍ରାଚୀନ ସଂକେତର ପ୍ରତୀକ ଏହି ‘ପ୍ରାଚୀ ନଦୀ’ ସମ୍ପର୍କରେ ଏପର୍ଯ୍ୟନ୍ତ କୌଣସି ନିର୍ଭୁଲ ଏବଂ ପୂର୍ଣ୍ଣ ବିବରଣୀ ସଂଗୃହୀତ ହୋଇପାରିନାହିଁ । ଆହୁରି କ୍ଷୋଭର ବିଷୟ ପ୍ରାଚୀ ନଦୀର ବିସ୍ତୃତ ପରିସର ସମ୍ପର୍କରେ ଆମ ରାଜ୍ୟର କୌଣସି ଐତିହାସିକ, ଗବେଷକ କିମ୍ବା ପ୍ରତ୍ନତାତ୍ତ୍ୱିକଙ୍କର ପ୍ରତ୍ୟକ୍ଷ ଅନୁଭୂତି ଏପର୍ଯ୍ୟନ୍ତ ସୃଷ୍ଟି ହୋଇପାରିନାହିଁ । ଏହାଫଳରେ ବହୁ ତଥ୍ୟ ଓ ସତ୍ୟ ଇତିହାସ ପୃଷ୍ଠାରେ ଏବେବି ଆତ୍ମପ୍ରକାଶ କରିବାକୁ ସମର୍ଥ ହୋଇପାରିନାହାନ୍ତି । ସମ୍ରାଟ ଖାରବେଳଙ୍କ ଶାସନ ସମୟର ତାମ୍ରଶାସନ ଖୋଦିତ ଏକ ଦୁର୍ଲ୍ଲଭ ସତ୍ୟର ଅବତାରଣା କରି ଏକ ଅଭିନବ ତଥ୍ୟ ପ୍ରଦାନ କରିବାର ପ୍ରୟାସ ହିଁ ଏହି ନିବନ୍ଧର ମୌଳିକ ଲକ୍ଷ୍ୟ ।

କଟକରୁ ଫୁଲନଖରା ଦେଇ କାକଟପୁର ଅଭିମୁଖରେ ଲମ୍ବି ଯାଇଥିବା ରାଜପଥର ମଧ୍ୟଭାଗରେ ପର୍ଯ୍ୟଟକମାନଙ୍କର ଅବହେଳିତ ଦୃଷ୍ଟି ଅନ୍ତରାଳରେ ରହି ଯାଉଥିବା ପୁରାତନ ଐତିହାସିକ ପ୍ରାଚୀ ନଦୀର ତଟବର୍ତ୍ତୀ ସ୍ଥାନର ନାମ ନିଆଳି ଏବଂ ସେଠାରୁ ଅଙ୍କାବଙ୍କା ଲାଲ୍‌ମାଟି ଗୋଡ଼ିର ଦୀର୍ଘ ସାତ କିଲୋମିଟର ପରେ ଅବସ୍ଥିତ ଏକ ଐତିହାସିକ ଜନବସତି ‘ପୋଖରିଗାଁ ଗ୍ରାମ ପଞ୍ଚାୟତ’ । ମୁଖ୍ୟ ଗ୍ରାମଟିର ନାମ ପୋଖରି ଗାଁ । ଇତିହାସ ପୃଷ୍ଠାର ଅଜ୍ଞାତ ଅଧ୍ୟାୟ ମଧ୍ୟରେ ଯେଉଁ କେତେକ ପ୍ରାଚୀନ ଐତିହାସିକ ପୀଠ ନିଜର ଆତ୍ମସତ୍ତା ହରାଇ ବସିଛନ୍ତି, ସେମାନଙ୍କ ମଧ୍ୟରୁ ଏ ଗ୍ରାମଟି ଅନ୍ୟତମ । ୧୯୬୦ ମସିହା ପର୍ଯ୍ୟନ୍ତ କୌଣସି ଗମନାଗମନ ନଥିବା ଏହି ଗ୍ରାମଟି ଯେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର କେତେକ ଐତିହାସିକ କୀର୍ତ୍ତିକୁ ବହନ କରି ରଖି ଆସିଛି ଏହା ଆଜି ହୁଏତ କେହି ବିଶ୍ୱାସ କରିପାରିବେ ନାହିଁ । ୧୯୫୫ ମସିହାର କରାଳ

ବନ୍ୟାରେ ଆକ୍ରାନ୍ତ ଏହି ଗ୍ରାମଟି ତତ୍କାଳୀନ ରାଜନୈତିକ ନେତାମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପରେ ଏହି ଗ୍ରାମରେ ଥିବା ଏକ ଭଗ୍ନ ପ୍ରାଚୀର ଶିବ ମନ୍ଦିର ଲୋକଲୋଚନକୁ ଆସିପାରିଥିଲା । ସେପର୍ଯ୍ୟନ୍ତ କୁଶିକ୍ଷାର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ରହିଥିବା କୃଷି ପ୍ରଧାନ ଏହି ବିରାଟ ଗ୍ରାମଟି ଏହି ପ୍ରାଚୀନ ଶୈବପୀଠ ସମ୍ବନ୍ଧରେ କୌଣସି ଗୁରୁତ୍ୱ ଅନୁଭବ କରୁନଥିଲା । ପାରମ୍ପରିକ ରୀତିରେ ବାପ ଅଜାଙ୍କ ଅମଳରୁ ପୂଜିତ ହୋଇ ଆସୁଥିବା ଶିବ ମନ୍ଦିରଟି ଯେ ଏକ ଐତିହାସିକ ସ୍ମୃତି ବହନ କରିଛି, ତାହା ସେସମୟରେ କାହିଁକି ଆଜି ପର୍ଯ୍ୟନ୍ତ ବି ଗ୍ରାମବାସୀମାନେ ସେ ସମ୍ପର୍କରେ କୌଣସି ଅନୁସନ୍ଧାନ କରିବାର ଆବଶ୍ୟକତା ଅନୁଭବ କରିନାହାନ୍ତି । ପ୍ରାଚୀ ନଦୀର ଐତିହାସିକ ବୈଶିଷ୍ଟ୍ୟ ଅନୁସନ୍ଧାନ କରୁଥିବା ଗବେଷକ, ଲେଖକଙ୍କ ଦୃଷ୍ଟି ମଧ୍ୟ ଏହି ପ୍ରାଚୀନ ଐତିହାସିକ ସ୍ମୃତିଠାରୁ ଦୂରେଇ ରହି ଆସିଅଛି । ଏହି ଐତିହାସିକ ଶିବ ମନ୍ଦିରଟି ହେଉଛି ଶ୍ରୀ ପିଙ୍ଗଳେଶ୍ୱର ମନ୍ଦିର । ଶୂଦ୍ରମୁନି ସାରଳା ଦାସଙ୍କ କୃତ ମହାଭାରତର ମୂଷଳୀ ପର୍ବରେ 'ସାଗରାସୁର ବଧ ଓ ଅଷ୍ଟଶମ୍ଭୁଙ୍କ ଉତ୍ପତ୍ତି' ସମ୍ପର୍କିତ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି–

'ଅଶୀ ସହସ୍ର ଗର୍ନ୍ଧବ ଭୂମି ଖୋଜି ଖୋଜି
କେଶବ ଲାଞ୍ଜ ଛିଣ୍ଡିଲା କୋଦାଳ ଯେ ବାଜି
ପୃଷ୍ଠଭାଗ ହୋଇକରି ଛିଡିଲା ଲାଙ୍ଗୁଳ
ଅଷ୍ଟଶମ୍ଭୁ ହୋଇଲେ ସେ ପ୍ରାଚୀ ନଦୀକୂଳ
ଗୋକୁଳେଶ୍ୱର, ପିଙ୍ଗଳେଶ୍ୱର, ଦୂରେଶ୍ୱର
ଗ୍ରାମେଶ୍ୱର, ମନେଶ୍ୱର, ସେ ନାଟକେଶ୍ୱର
ସ୍ୱପ୍ନେଶ୍ୱର, ରୁଦ୍ରେଶ୍ୱର ଏହି ଅଷ୍ଟଶିବ
ୟାଙ୍କ ଦର୍ଶନେ ମିଳଇ ବହୁଫଳ ଶୁଭ.. ।

ପ୍ରକାଶ ଥାଉକି ଏହି ଅଷ୍ଟଶମ୍ଭୁଙ୍କ ମଧ୍ୟରୁ ବର୍ତ୍ତମାନ ପ୍ରାଚୀ ନଦୀ କୂଳରେ ମୂଳନାମ ସହିତ କେବଳ ପିଙ୍ଗଳେଶ୍ୱରଙ୍କ ମନ୍ଦିର ହିଁ ଦେଖିବାକୁ ମିଳେ । ପ୍ରାଚୀ ନଦୀ କୂଳରେ ପରବର୍ତ୍ତୀ ସମୟରେ ଗଢି ଉଠିଥିବା ଦ୍ୱାଦଶ ଶମ୍ଭୁଙ୍କ ମନ୍ଦିରଗୁଡିକ ତୁଳନାରେ ଅଷ୍ଟଶମ୍ଭୁଙ୍କ ମନ୍ଦିର ଅଧିକ ପ୍ରାଚୀନ । ଗ୍ରାମର କେତେକ ଶିକ୍ଷିତ ଯୁବକ ୧୯୬୦ ମସିହା ବେଳକୁ ମନ୍ଦିରଟିର ଗୁରୁତ୍ୱ ଉପଲବ୍ଧି କରି ଏହାର ରକ୍ଷଣାବେକ୍ଷଣ ନିମିତ୍ତ କେତେକ ଆଖିଦୃଶିଆ ପଦକ୍ଷେପମାନ ନେଇଥିଲେ ବି ଏହାର ଐତିହାସିକତାକୁ ସାବ୍ୟସ୍ତ କରିବା ପାଇଁ କିଛି ପଦକ୍ଷେପ ନେଇ ପାରିନଥିଲେ । ସମ୍ଭବତଃ ଜଗନ୍ନାଥଙ୍କ ନବକଳେବର ସମୟରେ ନିକଟସ୍ଥ କାନପୁର ମୌଜାରୁ ଦାରୁ ଠାବ ପରେ ଶ୍ରୀମନ୍ଦିରର ସେବାୟତମାନେ କାକଟପୁର ମଙ୍ଗଳାଙ୍କଠାରୁ ଆଜ୍ଞାମାଳ ଆଣି କୌଣସି ଶିବମନ୍ଦିର ଦର୍ଶନ ପାଇଁ ଆଗ୍ରହ ପ୍ରକାଶ କରିବା ପରେ ଏହି ଦୁର୍ଲ୍ଲଭ ମନ୍ଦିରଟିର ସନ୍ଧାନ ପାଇଥିଲେ ଏବଂ ସେହିମାନଙ୍କଠାରୁ ଜଣାଗଲା ଯେ ସାରଳା ଦାସଙ୍କ ମୂଷଳୀ ପର୍ବରେ ଅଷ୍ଟଶମ୍ଭୁ ବର୍ଣ୍ଣନା ମଧ୍ୟରେ ଉକ୍ତ ମନ୍ଦିରର ବର୍ଣ୍ଣନା ରହିଛି । ଏହାପରେ ଏ ସମ୍ପର୍କରେ ଆଜି ପର୍ଯ୍ୟନ୍ତ କେହି ଆଉ କୌଣସି ଅନୁସନ୍ଧାନ କରିବାକୁ ଆଗ୍ରହୀ ହୋଇନାହାନ୍ତି ।

ନିକଟରେ ଓଡ଼ିଆ ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ପ୍ରକାଶିତ ଡକ୍ଟର ରାଧାଚରଣ ପଣ୍ଡାଙ୍କ ଲିଖିତ 'ପ୍ରାଚୀ ନଦୀର ଐତିହାସିକ ବିଭବ' ପୁସ୍ତକ ମୋ ଦୃଷ୍ଟିକୁ ଆସିଲା । ଅବଶ୍ୟ ପରିତାପର ବିଷୟ ଡକ୍ଟର ପଣ୍ଡା ମହୋଦୟ ତାଙ୍କର ଉକ୍ତ ପୁସ୍ତକରେ ଅଷ୍ଟଶମ୍ଭୁ କିମ୍ବା ଦ୍ୱାଦଶ ଶମ୍ଭୁର ବିସ୍ତୃତ ବର୍ଣ୍ଣନା ମଧ୍ୟରେ ଏହି ମନ୍ଦିରଟିର କୌଣସି ସଙ୍କେତ ରଖିନାହାନ୍ତି । ଅଥଚ ତାଙ୍କ ପୁସ୍ତକର ୫୯ ପୃଷ୍ଠାରେ 'ଖାରବେଳଙ୍କର ଦେବଗ୍ରାମ ଲିପିର ରାଜବଂଶ' ଶୀର୍ଷକ ଅଧ୍ୟାୟରୁ ପଢିବାକୁ ମିଳିଲା, ଏଥିରେ ଉଲ୍ଲେଖ ରହିଛି ଯେ ସେ ପୁରୀ ଜିଲ୍ଲା କାକଟପୁର ଥାନାର କୁଆପଦା ଗ୍ରାମରୁ ଯେଉଁ ତାମ୍ରଶାସନଟି ପାଇଥିଲେ ସେଥିରୁ ଜଣାଯାଏ ଜଣେ ପ୍ରବଳ ପ୍ରତାପୀ ରାଜା ସ୍ଥାନୀୟ କେତେକ ବ୍ରାହ୍ମଣଙ୍କୁ 'ଦେବଗ୍ରାମ' ନାମକ ଗ୍ରାମ ଦାନ କରିଥିଲେ । ସେହି ଗ୍ରାମର ଚତୁଃସୀମା ବା ସରହଦ ସେଥିରେ ବର୍ଣ୍ଣିତ ଅଛି, 'କନ୍ଦଳ ନଦୀସ୍ୟ ତୀରା...' । ଏହି ଗ୍ରାମଟି କନ୍ଦଳ ନଦୀକୂଳରେ ରହିଥିବା ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ । ଯେଉଁ ଦେବଗ୍ରାମ କଥା ତାମ୍ରଶାସନରେ ବର୍ଣ୍ଣିତ ହୋଇଛି ତାହାର ସଂକେତ ବର୍ତ୍ତମାନର କନ୍ଦଳ ନଦୀ ତୀରବର୍ତ୍ତୀ ପୋଖରୀ ଗ୍ରାମ ଓ ନିକଟସ୍ଥ କେତେକ ଗ୍ରାମମାନଙ୍କରେ ରହିଥିବା ଜଣାଯାଏ । ଏହି ଗ୍ରାମରେ ଥିବା ଅତି ପ୍ରାଚୀନ ଶୈବପୀଠ ଶ୍ରୀ ପିଙ୍ଗଳେଶ୍ୱର ମନ୍ଦିର ସାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ଏହା କୌଣସି ଐତିହାସିକ ଗବେଷକ କିମ୍ବା ପ୍ରତ୍ନତାତ୍ତ୍ୱିକଙ୍କ ଦୃଷ୍ଟିରେ ପଡିନଥିବା ଅତ୍ୟନ୍ତ କ୍ଷୋଭର ବିଷୟ । ଖାରବେଳଙ୍କ ସମୟର ଏହି ତାମ୍ରଶାସନକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଏହି ଗ୍ରାମଟି ପ୍ରଥମେ ଦେବଗ୍ରାମର ପୋଖରୀ ଥିଲା । ଏହି ପୋଖରୀର ଉତ୍ତରପାର୍ଶ୍ୱରେ ଥିବା କାନପୁର, ଗୋଲସରା ଗ୍ରାମ ଦୁଇଟି ମୂଳ ଦେବଗ୍ରାମ ରୂପେ ବିବେଚିତ ହେଉଥିଲା । ଏହାର ସଂକେତ ସ୍ୱରୂପ ଏ ଦୁଇ ଗ୍ରାମର ଜମିବାଡି ଖତିଆନାରେ ଆଜି ମଧ୍ୟ ଦେ ଗାଁ'ର ଉଲ୍ଲେଖ ରହିଥିବା ତାତ୍ପର୍ଯ୍ୟପୂର୍ଣ୍ଣ । ଦେବଗ୍ରାମଟି

କାଳକ୍ରମେ ଦେ ଗାଁ ବୋଲି ଲୋକମୁଖରେ ପ୍ରଚଳିତ ହୋଇଥିବା ବିଶ୍ୱାସ କରାଯାଏ । ପୋଖରୀ ଗ୍ରାମର ଦକ୍ଷିଣ ପାର୍ଶ୍ୱରେ ଶ୍ରୀ ପିଙ୍ଗଳେଶ୍ୱରଙ୍କ ମନ୍ଦିରକୁ ଲାଗି ଏକ ବିରାଟ ଭୂଖଣ୍ଡର ନାମ ମଧ୍ୟ ଏପର୍ଯ୍ୟନ୍ତ ଦେ ପୋଖରୀ ନାମରେ ନାମିତ ହୋଇଆସୁଛି । ଏହି ଗ୍ରାମର ପୂର୍ବ ପାର୍ଶ୍ୱରେ ରାଣୀପଡା ବୋଲି ଏକ କ୍ଷୁଦ୍ରଗ୍ରାମ ଏପର୍ଯ୍ୟନ୍ତ ରହିଛି । ଏଥିରୁ ଅନୁଭୂତ ହୁଏ ଏ ଅଞ୍ଚଳଟି ଏକ ପ୍ରାଚୀନ ଶାସନସ୍ଥଳୀ ଥିଲା ଏବଂ ମଧ୍ୟବର୍ତ୍ତୀ ସ୍ଥାନଟି କାଳକ୍ରମେ ପୋତିହୋଇ ପରେ ଏକ ଗ୍ରାମରେ ପରିଣତ ହୋଇଛି । ଏଣୁ ଏହାର ନାମ ପୋଖରି ଗ୍ରାମ ହୋଇଛି । ପିଙ୍ଗଳେଶ୍ୱରଙ୍କ ମନ୍ଦିରର ଅଦୂରରେ ଥିବା ପଥରତଡା ନାମକ ସ୍ଥାନରେ କେଉଁ ଅନାଦି କାଳରେ ବହୁ ପଥର ଏକିଭୂତ ହୋଇ ଏକ ସ୍ତୂପ ସୃଷ୍ଟି କରିଥିଲା । ଏହା ସମ୍ଭବତଃ ପୋଖରୀ କୂଳସ୍ଥ ଏକ ତୁଠ ହୋଇଥିବା ଅନୁମାନ କରାଯାଏ । କିନ୍ତୁ ବର୍ତ୍ତମାନ ଏହି ପ୍ରସ୍ତର ସ୍ତୂପ ପ୍ରାୟ ନିଶ୍ଚିହ୍ନ ହୋଇପଡିଲାଣି । ଏ ଗ୍ରାମର ଉତ୍ତରପୂର୍ବରେ 'ଗଣ୍ଡକୂଳ' ନାମକ ସ୍ଥାନ ଏବଂ ପଶ୍ଚିମରେ ବଗଲ ସାହି ଏବଂ ବଗଲୋ ଗଡ ଦୁଇଟି ଗ୍ରାମ ରହିଥିବାରୁ ଏହା ନିଶ୍ଚିତ ପ୍ରାଚୀନ କାଳରେ ଦେବ–ପୋଖରୀ ଥିବା ଅନୁମିତ ହୁଏ । ଉକ୍ତ ଗ୍ରାମରେ ଥିବା ପୁରାଣ ବର୍ଣ୍ଣିତ ଶିବ ମନ୍ଦିରଟି ବହୁ ପ୍ରାଚୀନ । ଏହାକୁ ପାରମ୍ପରିକ କ୍ରମେ ଏହି ଗ୍ରାମର ବ୍ରାହ୍ମଣମାନେ ବହୁକାଳରୁ ପୂଜା କରିଆସୁଛନ୍ତି । ଏହା ପ୍ରସ୍ତର ପରିବର୍ତ୍ତେ ଏକ ପ୍ରକାର ପ୍ରଶସ୍ତ ଇଟାରେ ନିର୍ମିତ । ଏହା ଖାରବେଳଙ୍କ ସମୟର ଇଟା ହୋଇଥିବା ଅନୁମିତ ହୁଏ । ଏଥିରେ ସିମେଣ୍ଟ ପରିବର୍ତ୍ତେ ଚୂନ ଓ ଅଠାର ବ୍ୟବହାର କରାଯାଇଛି । ୧୯୫୦ ମସିହା ପରେ ଏହି ପ୍ରାଚୀନ ମନ୍ଦିରଟି ଗ୍ରାମର କେତେକ ଉଦ୍ୟମୀ ଶିକ୍ଷିତ ଯୁବକଙ୍କ ଦୃଷ୍ଟି ଆକର୍ଷଣ କରିବା ଫଳରେ ମନ୍ଦିରର ରକ୍ଷଣାବେକ୍ଷଣ ଓ ପୁନଃ ନିର୍ମାଣ ପାଇଁ ଯୋଜନାବଦ୍ଧ ଉଦ୍ୟମ କରାଯାଇ ୧୯୬୦ ମସିହାରେ ଏହାର ଭଗ୍ନ ପ୍ରାଚୀନ ବକ୍ଷକୁ ନୂତନ ରୂପରେ ପରିଣତ କରି ଦିଆଯାଇଛି । ଏବେ ମାତ୍ର ପ୍ରାଚୀନ କାରିଗରୀର ସଙ୍କେତ ସ୍ୱରୂପ ମନ୍ଦିରର ନବଗ୍ରହ, ସୂର୍ଯ୍ୟଦେବତା ଏବଂ ପାର୍ବତୀଙ୍କ ମୂର୍ତ୍ତିଭଳି କେତେକ ପ୍ରାଚୀନ କୀର୍ତ୍ତିରାଜି ଦେଖିବାକୁ ମିଳୁଛି ।

ଏଣୁ ଏହି ଗ୍ରାମ ସହିତ ନିକଟସ୍ଥ ଜନବସତି ଯେ ଖାରବେଳଙ୍କ ଶାସନର ତାମ୍ର ଶାସନ ଲିଖିତ 'ଦେବଗ୍ରାମ', ଏହା ନିଃସନ୍ଦେହରେ କୁହାଯାଇପାରେ । ଏହାର ଐତିହାସିକତା କିମ୍ବା ପ୍ରାଚୀନତାର ଉନ୍ମେଷ ପାଇଁ ପ୍ରଶାସନିକ ସ୍ତରରେ ଉଦ୍ୟମ ହେବା ସଙ୍ଗେ ସଙ୍ଗେ ରାଜ୍ୟର ଐତିହାସିକ ଏବଂ ଗବେଷକମାନଙ୍କର ସଦୟ ଦୃଷ୍ଟି ଏହି ପ୍ରାଚୀନ ଶୈବପୀଠ ତଥା ଐତିହାସିକ ସ୍ଥଳୀ ଉପରେ ପଡିବା ଆବଶ୍ୟକ ।

ମର୍କତନଗର, କଟକ–୧୪

❖ ❖ ❖

# ଅଭୁଲା ସ୍ମୃତି

ସରୋଜ ବନ୍ଧୁ ଦାଶ

ଗତାନୁଗତିକ କ୍ରମରେ ଦିନ ପରେ ରାତି ହୁଏ । କିନ୍ତୁ କିଛି ଘଟଣା ସ୍ମୃତି ହୋଇ ରହିଯାଏ ଆଙ୍କି ହୋଇ ମାନସ ପଟରେ । ଏମିତି ଏକ ବ୍ୟକ୍ତିତ୍ୱ ଥିଲେ ସ୍ୱର୍ଗତ ବିଜୁ ପଟ୍ଟନାୟକ । ସେଦିନ ଯାଇଛି ଚାଲି ତଥାପି ଭୁଲି ହୁଏନା ସେ ଅଭୁଲା ସ୍ମୃତି ।



ସମୟ ଜନ୍ମ ଦିଏ କିଛି ଯୋଗଜନ୍ମା ମନୀଷୀମାନଙ୍କୁ, ଯିଏ ନିଜର ସମସ୍ତ ସମୟ ଦିଅନ୍ତି ନିଜ ପାଇଁ ନୁହେଁ ପରନ୍ତୁ ନିଜ ଜନ୍ମଭୂମିର ସର୍ବାଙ୍ଗୀନ ଉନ୍ନତି ପାଇଁ । ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପ୍ରାଣସ୍ପର୍ଶୀ ଆହ୍ୱାନରେ ଚୁମ୍ବକର ଆକର୍ଷଣ ପରି ଆକର୍ଷିତ ହୋଇ ପରାଧୀନ ଦେଶମାତୃକାକୁ ଅତ୍ୟାଚାରୀ ବ୍ରିଟିଶମାନଙ୍କ କବଳରୁ ମୁକ୍ତ କରିବା ପାଇଁ ନିଜର ଭବିଷ୍ୟତ, ନିଜ ପରିବାରର ସମସ୍ତ ସୁଖ ସୁବିଧାକୁ ଜଳାଞ୍ଜଳି ଦେଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ ଅନେକ ଦେଶଭକ୍ତ ।

ପୁରୁଷ ସିଂହ କଳିଙ୍ଗବୀର ବିଜୁବାବୁ ସେଥିରୁ ବାଦ୍ ଯାଇଥାନ୍ତେ କେମିତି ? ବୈମାନିକ ହୋଇ ବିହଙ୍ଗ ପରି ଆକାଶରେ ଉଡିବା ନିଶାରେ ସେ ରୟାଲ୍ ବ୍ରିଟିଶ୍ ଏୟାର ଫୋର୍ସରେ ଯୋଗ ଦେଇଥିଲେ । ଯାହାର ରକ୍ତରେ ଦେଶପ୍ରେମ ଟକ୍‌ମକ୍ ହୋଇ ଫୁଟେ, ସେ କ'ଣ ବିଦେଶୀ ପାଖରେ ଗୋଲାମୀ କରିପାରିଥାନ୍ତେ ? କେତେଦିନ ବା ମହାପରାକ୍ରମୀ ସିଂହ ଶାସନ ଶୃଙ୍ଖଳରେ ଆବଦ୍ଧ ହୋଇ ରହିପାରନ୍ତେ ? ବ୍ରିଟିଶ ସରକାରଙ୍କ ଅଧୀନରେ ସେ ଚାକିରି କରି ମଧ୍ୟ ଦେଶଭକ୍ତ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଗୋପନରେ ସାହାଯ୍ୟ କରିଥିଲେ । ସ୍ୱାଧୀନତା ପରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ପରାମର୍ଶକ୍ରମେ ସେ ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ଦେଇଥିଲେ ଏବଂ ୧୯୫୨ର ପ୍ରଥମ ସାଧାରଣ ନିର୍ବାଚନରେ ଓଡ଼ିଶା ବିଧାନସଭାକୁ ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ ।

ବିଜୁବାବୁ ମଣିଷ ପଣର ମହାସମୁଦ୍ର ଥିଲେ, ଅତି ନିକଟରୁ ନଦେଖିଲେ ତାଙ୍କୁ କଳନା କରିହେବ ନାହିଁ । ଯେକୌଣସି ସାଧାରଣ ମଣିଷର ଛୋଟ ଛୋଟ ଆପତ୍ତି ଅଭିଯୋଗଗୁଡିକୁ ବିଜୁବାବୁ ଅତି ଶ୍ରଦ୍ଧା ଓ ଧୈର୍ଯ୍ୟର ସହ ଶୁଣୁଥିଲେ । ବିଜୁବାବୁଙ୍କ ପରି ବିଶ୍ୱବନ୍ଦିତ ମହାମାନବଙ୍କର ସ୍ମୃତିଚାରଣ ନକଲେ ଜୀବନ ଅପୂର୍ଣ୍ଣ ରହିଯିବ । ଉତ୍ତର ପିଢି ଆଉ ଶିଖିବେ କ'ଣ ? ପ୍ରାତଃ ସ୍ମରଣୀୟ ଚିରନମସ୍ୟ ବିଜୁବାବୁଙ୍କର ଶ୍ରାଦ୍ଧ ଦିବସରେ ତାଙ୍କ ପାଇଁ ଅଶ୍ରୁତର୍ପଣ ପୂର୍ବକ ଏ କୃତଜ୍ଞ ଓଡ଼ିଆ ଜାତି ଅନ୍ତରର ଶ୍ରଦ୍ଧାସୁମନ ଅର୍ପଣ କରି ନିଜକୁ ତାଙ୍କର ଯୋଗ୍ୟ ଦାୟାଦ ଭାବେ ଗଢି ତୋଳିବାକୁ ବିନମ୍ର ନିବେଦନ ।

ଗ୍ରା/ପୋ– ପଲ୍ଲିସାହି,
ଭାୟା–ସୁଙ୍ଗୁଡା, କଟକ

# ଓଡ଼ିଆ ଲୋକନାଟ୍ୟ ପରମ୍ପରା ଓ ନାଟ୍ୟାଚାର୍ଯ୍ୟ ବାଳକୃଷ୍ଣ ମହାନ୍ତି

ଡକ୍ଟର ବିରଞ୍ଚି ସାହୁ

ଲୋକନାଟକ, ଆଧୁନିକ ନାଟକର ପ୍ରାଚୀନତମ ରୂପ । ଲୋକନାଟକର ଆରମ୍ଭ ପ୍ରାଚୀନ କାଳରୁ । ଅର୍ଥାତ୍ ନିର୍ଦ୍ଦିଷ୍ଟ ସମୟରେ ଏହା କେବେ ଆରମ୍ଭ ହେଲା ସେ ସମ୍ପର୍କରେ ବିଧିବଦ୍ଧ ଭାବେ କୌଣସି ପ୍ରାମାଣିକ ତଥ୍ୟ ନାହିଁ । ତେବେ ଏହି ଲୋକନାଟକ ମନୋରଞ୍ଜନର ଏକ ମାଧ୍ୟମ ଥିଲା । ଲୋକମାନଙ୍କ ଦ୍ୱାରା ଏହା ପ୍ରଦର୍ଶିତ କରାଯାଉଥିଲା । ଲୋକମାନଙ୍କର ଏହା ମନୋରଞ୍ଜନ କରାଉଥିଲା ଏବଂ ଲୋକମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ ଥିଲା । ଲୋକନାଟକର ଆଦି ଉତ୍ସ ଥିଲା ଗ୍ରାମାଞ୍ଚଳ । ଗ୍ରାମାଞ୍ଚଳରେ ଯେଉଁମାନେ ରହୁଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ନିରକ୍ଷର, ଅଶିକ୍ଷିତ ଅର୍ଦ୍ଧଶିକ୍ଷିତ, ଜନତା । କର୍ମକ୍ଳାନ୍ତ ଜୀବନକୁ ଟିକେ ଆନନ୍ଦ ମୁଖର କରିବା ପାଇଁ ମଣିଷ ମନୋରଞ୍ଜନ କରାଉଥିଲା ନାଚ, ଗୀତ ମାଧ୍ୟମରେ । ବିଭିନ୍ନ ଉତ୍ସବ ଅନୁଷ୍ଠାନରେ ଏହି ନାଚ, ଗୀତର ଆବଶ୍ୟକତା ପଡୁଥିଲା । ଏହି ନାଚ, ଗୀତକୁ ସରସ, ସୁନ୍ଦର ଓ ହୃଦୟଗ୍ରାହୀ କରିବା ପାଇଁ ବିଭିନ୍ନ ଅଙ୍ଗଭଙ୍ଗୀ, ବାଚିକ ଅଭିନୟର ଅବତାରଣା କରାଯାଉଥିଲା । ତେବେ ଲୋକନାଟକଗୁଡ଼ିକ ପ୍ରାଥମିକ ଭାବେ ପୁରାଣ କୈନ୍ଦ୍ରିକ ହୋଇପଡିଥିଲା । ରାମାୟଣ, ମହାଭାରତର ବିଭିନ୍ନ ଅଂଶ ଏଥିରେ ପ୍ରଦର୍ଶିତ ହେଉଥିଲା । ଲୀଳା, ରାସ, ସୁଆଙ୍ଗ ଥିଲା ଲୋକନାଟକର ଆଦ୍ୟତମ ରୂପରେଖ । ଧୀରେ ଧୀରେ ଏଥିରେ ଅନେକ ଉପାଦାନର ମିଶ୍ରଣ ଘଟିଲା । ଏହାର ଶାଖା ପ୍ରଶାଖାମାନ ମେଲିବାକୁ ଲାଗିଲା ଓ ଏହା ବର୍ଦ୍ଧିଷ୍ଣୁ ଆକାର ଧାରଣ କଲା ।

ଓଡ଼ିଆ ଲୋକନାଟକର କ୍ରମ ବିବର୍ତ୍ତନରେ ଦଣ୍ଡନାଚ, କଣ୍ଢେଇନାଚ, ଚଇତିଘୋଡା ନାଚ, ପାଟୁଆ, ଡାଲଖାଇ, କରମା, ଛଉ, ପାଲା, ଦାସ କାଠିଆ, ଫାର୍ଶ ଯାତ୍ରା ଇତ୍ୟାଦି ବାଟଦେଇ ଶେଷରେ ଗୀତିନାଟ୍ୟ, ଗୀତାଭିନୟ ପାଖରେ ପହଁଞ୍ଚିଛି । ଲୋକନାଟକର ଆଧୁନିକତମ ରୂପ ହେଉଛି ଗୀତିନାଟ୍ୟ ଓ ଗୀତାଭିନୟ । ଏହା ଯାତ୍ରାର ଅତ୍ୟନ୍ତ ନିକଟବର୍ତ୍ତୀ । ପ୍ରତ୍ୟେକ ଲୋକନାଟକର ନିର୍ଦ୍ଦିଷ୍ଟ ସଂଜ୍ଞା ଓ ସ୍ୱରୂପ ରହିଛି । ଯାତ୍ରା ହେଉଛି ସର୍ବାଧୁନିକ ରୂପରେଖ । ଗୋଟିଏ ବିରାଟ ଜନ ସମୁଦାୟର ସମୂହ ସମ୍ପତ୍ତି ହେଉଛି ତା'ର ଲୋକନାଟକ । ଗୋଟିଏ ଗୋଟିଏ ଜନଜାତିର ଆଶା, ଆକାଂକ୍ଷା, ଚିନ୍ତା, ଚେତନା, କଳାବୋଧ, ଆଦର୍ଶ, ନୀତିବୋଧ ଇତ୍ୟାଦିର ମିଳିତ ଇସ୍ତାହାର ତା'ର ଲୋକନାଟକ । ଓଡ଼ିଆ ଲୋକନାଟକଗୁଡ଼ିକର ନାଟକୀୟତା ଅତୀବ ରମଣୀୟ । ଏଠି କଳାକାର କଳାକୁ ଜୀବନ ଓ ଜୀବିକା କରି ଯଦିଓ ବଞ୍ଚେ ତଥାପି କୌଣସି ପ୍ରକାରେ ସାମାଜିକ ଜୀବନ ଓ ଚଳଣି ଭିତରେ ସେ ଜୀବନକୁ ଆନନ୍ଦ ବିଭୋର କରିବା ପାଇଁ ସାମୟିକଭାବେ ଲୋକନାଟକ ସହିତ ଆତ୍ମୀୟତା ସ୍ଥାପନ କରେ । ଦିନରେ ଚୁଡା କୁଟୁଥିବା କେଉଟ ପିଲା ରାତିରେ ଘୋଡା ନଚାଏ, ଗୋପାଳନକୁ ଆଦରି ନେଇଥିବା ଗୋପାଳପୁଅ ଲଉଡି ଖେଳେ, ଓଗାଳ ପଢେ, ଖଣ୍ଡାଇତ ପିଲା ଅସୀ ଚାଳନାର କଳାକୌଶଳକୁ ଆପଣାଏ । ସେହିପରି ଅନ୍ୟାନ୍ୟ ଜାତିର ମଣିଷ ଭିନ୍ନ ଭିନ୍ନ କାମ ଭିତରେ ସମ୍ପୃକ୍ତି ରକ୍ଷା କରି ନାଟକକୁ ଆପଣେଇ ଥାଏ । ଲୋକ ମନୋରଞ୍ଜନର ଅଦ୍ୱିତୀୟ ମାଧ୍ୟମ ହେଉଛି ଲୋକନାଟକ, ଯାହାର କାଳବିଧି ସାର୍ଥକତା ରହିଆସିଛି । ବାଳକୃଷ୍ଣ ମହାନ୍ତି (୧୯୦୦–୧୯୫୮) ଓଡ଼ିଆ ଲୋକନାଟକ କ୍ଷେତ୍ରରେ (ଗୀତିନାଟ୍ୟ, ଗୀତାଭିନୟ, ଫାର୍ଶ) ଜଣେ ମୁର୍ଦ୍ଧଣ୍ୟ ବ୍ୟକ୍ତିତ୍ୱ ଭାବେ ଦୃଷ୍ଟିକୁ ଆସନ୍ତି । ଓଡ଼ିଆ ଲୋକନାଟକ ପରିକ୍ରମା କଲାବେଳେ ଯେଉଁ କେତେଜଣ କଳାକାର ଆମର ଦୃଷ୍ଟିକୁ ଆସନ୍ତି, ସେମାନଙ୍କ ମଧ୍ୟରେ ବାଳକୃଷ୍ଣ ମହାନ୍ତି ଥିଲେ ପ୍ରଭୂତ ସିଦ୍ଧିର ଅଧିକାରୀ । ସ୍ୱଳ୍ପ ଜୀବନକାଳ ମଧ୍ୟରେ ଅର୍ଦ୍ଧଶତାଧିକ ଗୀତିନାଟ୍ୟ, ଗୀତାଭିନୟ, ଫାର୍ଶ, ଜଣାଣ ଆଦି ରଚନା କରି ପାଠକୀୟ ଓ ଦର୍ଶକୀୟ ସ୍ୱୀକୃତି

ଲାଭ କରିଥିଲେ । ବାଳକୃଷ୍ଣ ମହାନ୍ତିଙ୍କ ଜନ୍ମ ୧୯୦୦ ମସିହା ମାଘଶୁକ୍ଳ ଏକାଦଶୀ ତିଥିରେ ଜଗତସିଂହପୁର ଜିଲ୍ଲାର ପଳାଶୋଳ (ମଝିପଡା) ଗ୍ରାମରେ । ପିଲାବେଳୁ ସେ ଯାତ୍ରା ସୁଆଂଗ ପ୍ରତି ଆକୃଷ୍ଟ ହୋଇଥିଲେ । ପଳାଶୋଳରେ ପ୍ରତିବର୍ଷ ଯାତ୍ରା ଅନୁଷ୍ଠିତ ହୁଏ । ସେହି ଯାତ୍ରା ଦେଖି ବାଳକୃଷ୍ଣ ନାଚପ୍ରତି ଆକୃଷ୍ଟ ହେଲେ । ନବମଶ୍ରେଣୀ ଯାଏଁ ପାଠପଢି ପାଠରେ ଡୋରି ବାନ୍ଧି ନିକଟସ୍ଥ ତର୍ତ୍ତଂଗ ମଠ (ଭାରତୀ ମଠ) କୁ ଚାଲିଗଲେ । ସେଠି ସଂଗୀତ ସାଧନାରେ ମଜ୍ଜିଲେ । ୧୯୨୦ ମସିହା ବେଳକୁ କେତେଜଣ ଛାତ୍ରଙ୍କୁ ନେଇ ଏକ ଯାତ୍ରାଦଳ ଗଠନ କଲେ, ନାଁ ଦେଲେ 'ଜୟଦୁର୍ଗା ନାଟ୍ୟ ମଣ୍ଡଳୀ' । 'ବିଜୟ ବସନ୍ତ' ତାଙ୍କର ଆଦ୍ୟତମ ରଚନା । ପ୍ରାଥମିକ ଅବସ୍ଥାରେ ତାଙ୍କୁ ଅନେକ ସମାଲୋଚନାର ଶରବ୍ୟ ହେବାକୁ ପଡିଥିଲା । କାରଣ ବାଳକୃଷ୍ଣ ମହାନ୍ତି ଥିଲେ କରଣ ପରିବାରର । ମାତ୍ର ଏସବୁ ପ୍ରତି ଖାତିର ନକରି ବାଳକୃଷ୍ଣ ଆଗେଇଲେ । ମାତ୍ର ସତରବର୍ଷ ବୟସରେ ବାରବର୍ଷ ବୟସ୍କା ନିଶାମଣିଙ୍କ ସହିତ ତାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହୁଏ, ତଥାପି ବାଳକୃଷ୍ଣ ଯାତ୍ରା ପାଇଁ ପଛକୁ ଫେରିନଥିଲେ । ବାଳକୃଷ୍ଣଙ୍କ ନାଟକ କ୍ଷେତ୍ରକୁ ଆଗମନ ପୂର୍ବରୁ ବୈଷ୍ଣବ ପାଣି, ଜଗନ୍ନାଥ ପାଣି, ଗୋବିନ୍ଦ ଶୂରଦେଓ, କାହ୍ନୁ ପାଣି, କୃଷ୍ଣ ପ୍ରସାଦ ବସୁ ଆଦି ପ୍ରତିଷ୍ଠା ପାଇ ସାରିଲେଣି । ବିଳମ୍ବରେ ହେଲେ ମଧ ବାଳକୃଷ୍ଣ ଲେଖାଲେଖି କରି ନିଜକୁ ସେମାନଙ୍କ ସମକକ୍ଷ କରାଇ ପାରିଥିଲେ । ଗୋପାଳ ଦାସ, ରାମଚନ୍ଦ୍ର ସ୍ୱାଇଁ, ଦୟାନିଧି ସ୍ୱାଇଁ, ବୀରକିଶୋର ରାୟ ପ୍ରମୁଖ ନାଟ୍ୟକାରମାନେ ମଧ ବାଳକୃଷ୍ଣଙ୍କର ସମସାମୟିକ ନାଟ୍ୟକାର ଥିଲେ । ବାଳକୃଷ୍ଣଙ୍କ ଲେଖା ଥିଲା ପୌରାଣିକ, ସାମାଜିକ, କାଳ୍ପନିକ ଓ ଇତିହାସ ଭିତ୍ତିକ । ପୌରାଣିକ ଓ କାଳ୍ପନିକ ରଚନା ତାଙ୍କର ଅଧିକ । ପ୍ରାୟ ଷାଠିଏରୁ ଉର୍ଦ୍ଧ୍ୱ ଗୀତିନାଟ୍ୟ, ଗୀତାଭିନୟ, ଫାର୍ଶ ପ୍ରଭୃତି ରଚନା କରିଥିଲେ ବାଳକୃଷ୍ଣ । ଅନ୍ୟ ନାଟ୍ୟକାରମାନେ ଯେତେବେଳେ ଗୀତାଭିନୟ, ଗୀତିନାଟ୍ୟ ଲେଖୁଥିଲେ ସେମାନଙ୍କ ଲେଖାରେ ସଙ୍ଗୀତର ବହୁଳ ବ୍ୟବହାର କରୁଥିଲେ, ଗଦ୍ୟ ସଂଳାପ ଆଦୌ ନଥିଲା ବା ସ୍ୱଳ୍ପଥିଲା କିନ୍ତୁ ବାଳକୃଷ୍ଣ ଏ କ୍ଷେତ୍ରରେ ନୂଆମୋଡ ଆଣିଲେ । ତାଙ୍କ ଲେଖାରେ ଗଦ୍ୟ ସଂଳାପର ବହୁଳ ବ୍ୟବହାର ସେ କଲେ, ଯାହା ଥିଲା ସେ ସମୟ ପାଇଁ ନୂତନତାର ଆବାହନ । ବାଳକୃଷ୍ଣଙ୍କ ଗୀତାଭିନୟ ଓ ଗୀତିନାଟ୍ୟ ଉଭୟ ରଚନାରେ ସଂଗୀତ/ପଦ୍ୟର ବ୍ୟବହାର କମ୍ ରହିଲା ।

ବାଳକୃଷ୍ଣ ମହାନ୍ତି ଥିଲେ ଏକାଧାରରେ ନାଟ୍ୟକାର, ନିର୍ଦ୍ଦେଶକ, ସଂଗୀତକାର, ବାଦ୍ୟଯନ୍ତ୍ର ବାଦକ । ମଞ୍ଚସଜ୍ଜା ନିଜେ କରୁଥିଲେ । ତାଙ୍କର ସାଜସଜ୍ଜା ତତ୍କାଳୀନ ସମୟରେ ଉନ୍ନତ ଥିଲା । ସେଥିପାଇଁ ସେ କାଳରେ ଗୋଟିଏ କଥାଥିଲା 'ବାଳକୃଷ୍ଣ ସଜ୍ଜା, ବୈଷ୍ଣବପାଣି ନଚା, ରାମଚନ୍ଦ୍ର ସ୍ୱାଇଁ ବାଜା । କିନ୍ତୁ ବାଳକୃଷ୍ଣଙ୍କର ସଜ୍ଜା, ନଚା, ବାଜା ସବୁ ଉନ୍ନତ ଥିଲା । ଗୀତିନାଟ୍ୟ, ଗୀତାଭିନୟଗୁଡିକୁ ମଞ୍ଚସ୍ଥ କରିବା ପାଇଁ ସେ କାଳରେ ଆଧୁନିକ ମଞ୍ଚ ନଥିଲା, ମୁକ୍ତାକାଶ ତଳେ କିମ୍ବା ସିନ୍ ସିନେରୀ ଟାଣି ଅଭିନୟ ପ୍ରଦର୍ଶନ କରାଯାଉଥିଲା । ଲୋକେ ମଞ୍ଚ ଚାରିକଡେ ବସି ନାଟକକୁ ଉପଭୋଗ କରୁଥିଲେ । ୧୯୩୨–୩୩ ମସିହା ବେଳକୁ ବାଳକୃଷ୍ଣ ତାଙ୍କର ଯାତ୍ରା ଦଳନେଇ କଲିକତା ଯାତ୍ରା କରିଥିଲେ । କଲିକତାରେ କ୍ୟାମ୍ପ ପକାଇ ସିନ୍ ଓ ପେଣ୍ଡାଲ୍ ଦ୍ୱାରା ନାଟକମାନ ପ୍ରଦର୍ଶନ କରିଥିଲେ । ତାଙ୍କର ଯାତ୍ରା ପରିବେଷଣ ପଦ୍ଧତି ଅତ୍ୟନ୍ତ ଉନ୍ନତ ଓ ଉଚ୍ଚକୋଟୀର ଥିଲା । ସେ ନିଜେ ପାତ୍ରପାତ୍ରୀଙ୍କ ପୋଷାକ ପରିକଳ୍ପନା କରୁଥିଲେ । ଝାଡ ଲାଇଟ୍, ପେଟ୍ରୋମାକସ୍ ଲାଇଟର ବ୍ୟବହାର କରି ସେ ଅଭିନୟ ପରିବେଷଣ କରୁଥିଲେ । ପୋଷାକ, ଅଳଙ୍କାର, ଆଲୋକ, ବାଦ୍ୟଯନ୍ତ୍ର ଆଦିର ପରିକଳ୍ପନା ନିଜେ ବାଳକୃଷ୍ଣ କରୁଥିଲେ । ତାଙ୍କ ନାରୀ ଚରିତ୍ରମାନେ ମୋତି, କାଠକଣ୍ଠି, ଖଡୁ, ପାହୁଡ ଆଦି ଅଳଙ୍କାର ବ୍ୟବହାର କରୁଥିଲେ । ସେ ସମୟରେ ମାଇକ୍‌ର ବ୍ୟବହାର ନଥିଲା । ବାଦ୍ୟଯନ୍ତ୍ର ଭାବେ ହାରମୋନିୟମ୍, ଢୋଲକ, କର୍ଣ୍ଣେଟ୍, ଥର୍ଣ୍ଣେଟ୍, ବେହେଲା ଆଦିର ପ୍ରଚଳନ କରାଇଥିଲେ ବାଳକୃଷ୍ଣ । ଓଡ଼ିଶାରେ ବାଳକୃଷ୍ଣ ମହାନ୍ତି ଅପେରାର ଆଦ୍ୟ ପ୍ରବର୍ତ୍ତକ ବୋଲି କେତେକ ସମାଲୋଚକ ମତବ୍ୟକ୍ତ କରିଥାନ୍ତି । ଏହାର ବୈଶିଷ୍ଟ୍ୟ ହେଉଛି ଯାତ୍ରାର ଆଗିଂକକୁ ରକ୍ଷା କରି ମଞ୍ଚରେ ସିନ୍‌ଟାଣି ଅଭିନୟ କରିବା । ଇଂରେଜମାନଙ୍କ ଆଗମନଜନିତ ରାଜନୈତିକ ବିବର୍ତ୍ତନ ଦ୍ୱାରା ଯୁଗରୁଚିରେ ପରିବର୍ତ୍ତନ ଆଣିବା ସହିତ ଲୋକନାଟକ ଗୁଡିକରେ ମଧ ପରିବର୍ତ୍ତନ ଆସିଥିବା ଲକ୍ଷ୍ୟ କରାଯାଇପାରେ । ଏହି ସଂସ୍କାର ଆଣିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ବୈଷ୍ଣବ ପାଣି, ଗୋପାଳ ଦାସ, ଜଗନ୍ନାଥ ପାଣି, କୃଷ୍ଣ ପ୍ରସାଦ ବସୁ ଓ ବାଳକୃଷ୍ଣ ମହାନ୍ତି ।

ବୈଷ୍ଣବ ପାଣିଙ୍କ ପରି ଗଣ ମନୋରଞ୍ଜନ ପାଇଁ ବାଳକୃଷ୍ଣଙ୍କ ନାଟକଗୁଡିକ ରଚିତ ହୋଇଥିଲା । ତାଙ୍କ ଭାଷା ସମ୍ପୂର୍ଣ୍ଣ ରୂପେ ଗ୍ରାମୀଣ ଓ ସରଳ ଥିଲା । ଯାହା ସର୍ବଜନବୋଧ ହୋଇପାରୁଥିଲା । ସେ ବୈଷ୍ଣବ ପାଣିଙ୍କ ସହିତ ପ୍ରତିଯୋଗିତା ମନୋଭାବ ନେଇ ଅନେକ ସ୍ଥାନରେ ଯାତ୍ରା ପରିବେଷଣ କରିଥିଲେ । ସେ ଅନେକ ସ୍ଥାନରେ ଯାତ୍ରା କରି ପୁରସ୍କୃତ ହୋଇଛନ୍ତି । ବୈଷ୍ଣବପାଣି ଓ ବାଳକୃଷ୍ଣ ମହାନ୍ତିଙ୍କ ମଧ୍ୟରେ ଅନେକ ଥର ଲଢେଇ ଯାତ୍ରା ଅନୁଷ୍ଠିତ

ହୋଇଛି । ବୈଷ୍ଣବ ପାଣି, ହର ଧୋବଣିକୁ ବାହା ହେବା ନେଇ ତାଙ୍କୁ ଆକ୍ଷେପ କରି ବାଳକୃଷ୍ଣ ମହାନ୍ତି ଲେଖିଥିଲେ, 'ପାଣି–ଧୋବଣି ଫାର୍ଶ' । ସେହିପରି ବାଳକୃଷ୍ଣଙ୍କୁ ଆକ୍ଷେପ କରି ବୈଷ୍ଣବ ପାଣି ଲେଖିଥିଲେ 'ନାଟୁଆ ମହାନ୍ତି ଫାର୍ସ' । ଅବଶ୍ୟ ପରେ ଦୁହିଁଙ୍କ ଭିତରେ ଥିବା ମତପାର୍ଥକ୍ୟ ଦୂର ହୋଇଯାଇ ବନ୍ଧୁତାରେ ବାନ୍ଧି ହୋଇଥିଲେ ।

ଊନବିଂଶ ଶତାବ୍ଦୀର ଶେଷ ସମୟ ଓ ବିଂଶ ଶତାବ୍ଦୀର ଆଦ୍ୟପାଦ ମଧ୍ୟରେ ଯାତ୍ରାର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ବାଳକୃଷ୍ଣ ଯାତ୍ରା ନାଟକ ପାଇଁ ଅନେକ କିଛି କରି ଯାଇଛନ୍ତି । ସେ ଓଡ଼ିଆ ଯାତ୍ରାକୁ ଯେଉଁ ଉନ୍ନତ ମାର୍ଜିତ ରୂପ ପ୍ରଦାନ କରିଥିଲେ, ତାହା ଯାତ୍ରା ବିକାଶର ପଥ ପରିଷ୍କାର କରିଥିଲା । ତାଙ୍କ ଗ୍ରାମୀଣ ଶୈଳୀ ଲୋକମାନଙ୍କୁ ଆନନ୍ଦ ଦେଉଥିଲା । ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶରେ ଯାତ୍ରାର ଭୂମିକାକୁ ଅସ୍ୱୀକାର କରି ହୁଏନା । ଉତ୍କଳୀୟ ନାଟ୍ୟ ପରମ୍ପରା ଯାତ୍ରା ଉପରେ ପ୍ରତିଷ୍ଠିତ । ବାଳକୃଷ୍ଣ ମହାନ୍ତି ଥିଲେ ଜଣେ ଆଶୁକବି । ପରିବେଶ, ପରିସ୍ଥିତିକୁ ଅନୁଧ୍ୟାନ କରି ହଠାତ୍ ସଂଜାତ ସୃଷ୍ଟି କରିଦିଅନ୍ତି । ଥରେ ଜଗତସିଂହପୁରର ସିପି ଗାଁରେ ବାଞ୍ଛାନିଧି ମହାନ୍ତିଙ୍କ ଦାଣ୍ଡରେ ବାଳକୃଷ୍ଣଙ୍କ ଯାତ୍ରାଦଳ ଅଭିନୟ ପ୍ରଦର୍ଶନ କରୁଥାନ୍ତି । ରଜ ସମୟ, ହଠାତ୍ ଝିପିଝିପି ବର୍ଷା ଆରମ୍ଭ ହେଲା । ଲୋକେ ଯାତ୍ରା ଦେଖିବାକୁ ଅସନ୍ତୁଷ୍ଟ ହେଲେ । ମନୋରଞ୍ଜନର ଖୋରାକ ପାଇଗଲେ କବି । ଦୁଆରୀ କଣ୍ଠରେ ସଙ୍ଗୀତ ସଂଯୋଜନା କଲେ । ଦୁଆରୀ ଆସି ବୋଲିଲା:

'ରଜ ସଜ ବାଜ ମଉଜକୁ
ଝିପିଝିପି ମେଘ ସାରିଦେଲାରେ
ସାରଦ ବିଆଳି ହରଡ ନଳିତା
ଗ୍ରୀଷ୍ମ ସନ୍ତାପରୁ ତାରି ଦେଲାରେ ।
ଝିପିଝିପି ବରଷା ଦେଖି
ଉଇଙ୍କର ଲାଗିଲା ପକ୍ଷୀ
ଶୂନ୍ୟ ମାର୍ଗେ ଦେଖି ଉଠିଗଲେ ଶିଖି
କାକତାକୁ ଦେଖି ମାରି ନେଲାରେ ।
ଦୀନ ବାଳକୃଷ୍ଣ ରଚେ ଏହି ପଦ
ବସି ବାଞ୍ଛାନିଧି ବାବୁ ମେଲାରେ ।'

ଏତଦ୍‌ଭିନ୍ନ ବାଳକୃଷ୍ଣଙ୍କ ଲେଖାରେ ସମାଜର ଚିତ୍ର ଓ ସମାଜ ସଚେତନତା ମଧ୍ୟ ସୃଷ୍ଟି କରାଯାଇଛି । କୁସଂସ୍କାର, ଅନ୍ଧବିଶ୍ୱାସ, ଦରଦାମ୍ ବୃଦ୍ଧି, ବେଶ୍ୟାସକ୍ତ ଜୀବନ, ଶିକ୍ଷାଶିକ୍ଷକ ଶିକ୍ଷାୟତନ , ବୃଦ୍ଧ ବିବାହ, ବାଲ୍ୟବିବାହ, ବହୁପତ୍ନୀ ବିବାହ ଆଦି ଅନେକ ଚିତ୍ର ତାଙ୍କ ଲେଖାରୁ ପ୍ରାପ୍ତ ହୋଇଥାଏ । ବୈଷ୍ଣବପାଣିଙ୍କ ପରି ନାଟ୍ୟାଚାର୍ଯ୍ୟ ବାଳକୃଷ୍ଣ ମହାନ୍ତି ମଧ୍ୟ ସମାଜର ଆଧୁନିକ ସଭ୍ୟତା ପ୍ରତି ବ୍ୟଙ୍ଗ କରିଛନ୍ତି । ସେସମୟର ଫେସନକୁ ସେ ତାସଲ୍ୟ କରିଛନ୍ତି । ସେ ତାଙ୍କ ଗୀତାଭିନୟରେ ଶାଣିତ ବ୍ୟଙ୍ଗ କରିଥିବା ଲକ୍ଷ୍ୟ କରିହୁଏ । ତାଙ୍କ ଦ୍ୱାରା ରଚିତ 'ସୁଶୀଳ ମାଳତୀ' ଗୀତାଭିନୟରେ ଏହାର ଏକ ତାସଲ୍ୟ ପୂର୍ଣ୍ଣ ବର୍ଣ୍ଣନା–

'ଓଡ଼ିଆଣି ଓଡ଼ିଆ ଖୋସା
ଛାଡି ବଙ୍ଗାଳୁଣିରେ ଆଶା
ହାଟକୁ ପଠାଇ ପାଞ୍ଚଟା ପଇସା
କଣ୍ଟା ପାନିଆ ତ ନୂଆ ଫେସନ ।
ନାକେ ଥିଲା ଗୁଣା ବସଣି
କାଢିକଲେ ଲବଙ୍ଗ ବେନି
ହାତଖଡୁ ବିକି ବାଲା ଗଢାଇଲେ
ଶଙ୍ଖା ଛାଡି ପାଣି କାଚରେ ମନ ।
ଆଜିକାଲି ନବ୍ୟଫେସନ
ଦେଖି ଚାହିଁ ନଭୁଲା ମନ
ବାଳକୃଷ୍ଣ ବୋଲେ ବୁଝିଦେଖ ଭଲେ
କାଳେ ମରହଟି ନହେବ ସାନ ।'

ବିଭିନ୍ନ ଗୀତାଭିନୟରେ ବାଳକୃଷ୍ଣ ମହାନ୍ତି ସମକାଳୀନ ସାମାଜିକ ଅବସ୍ଥା ଓ ସମାଜର ବିଭିନ୍ନ ଶ୍ରେଣୀର ଚରିତ୍ରମାନଙ୍କୁ ଜୀବନ୍ତ ଭାବରେ ରୂପାୟନ କରିଥିବା ଦେଖିବାକୁ ମିଳେ । ସେ ସମୟରେ ଓଡ଼ିଶାରୁ ଲୋକେ ଜୀବିକାର୍ଜନ ପାଇଁ କଲିକତା ଯାଇ ଚଟକଳ ଓ ଅନ୍ୟାନ୍ୟ ସ୍ଥାନରେ କାର୍ଯ୍ୟ କରୁଥିଲେ । ନାନା ପ୍ରକାର ଦୁଃଖ, ନିର୍ଯ୍ୟାତନା ସହୁଥିଲେ । ମଦ୍ୟପାନ ଓ ବେଶ୍ୟା ଗୃହ ଗମନ କରୁଥିବା ବ୍ୟକ୍ତିଙ୍କୁ ଦୃଢ ସମାଲୋଚନା କରିଛନ୍ତି । ସାମାଜିକ ଜୀବନରେ ଅନେକ ଦୁଷ୍ଟ ଲୋକଙ୍କୁ ସେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ସାମାଜିକ ସଚେତନତା ସୃଷ୍ଟି କରିବା ସହିତ ସମାଜର ପ୍ରତ୍ୟେକ ଚିତ୍ରକୁ ସେ ଦେଖାଇଛନ୍ତି ଏବଂ ସେଥିରେ ଥିବା ଦୋଷତ୍ରୁଟିକୁ ଲକ୍ଷ୍ୟକରି ତା'ର ନିରାକରଣ ପାଇଁ ମଧ୍ୟ ମାର୍ଗ ଦେଖାଇଛନ୍ତି । ମଣିଷ ଭଳି ମଣିଷ ହୋଇ ବଞ୍ଚି ରହିବା ପାଇଁ ସେ ଦେଇଛନ୍ତି ଆଶାନ୍ୱିତ ଆହ୍ୱାନ ।

ଲୋକନାଟ୍ୟ ପରମ୍ପରାରେ ବାଳକୃଷ୍ଣ ମହାନ୍ତିଙ୍କ ସ୍ଥାନ ନିହାତି ନଗଣ୍ୟ ନୁହେଁ । ତାଙ୍କ ପ୍ରତିଭା ଥିଲା ଦିଗନ୍ତ ବିସ୍ତାରୀ । ତାଙ୍କ ଲେଖାର ଶୈଳୀରେ, ପାତ୍ରପାତ୍ରୀଙ୍କ ସଂଳାପ ସଂଯୋଜନାରେ, ମଞ୍ଚ ସାଜସଜ୍ଜାରେ, ବାଦ୍ୟଯନ୍ତ୍ରରେ, ଅଭିନୟରେ, ପୋଷାକ

ପରିଚ୍ଛେଦରେ, ସବୁଥିରେ ସେ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରି ଯାଇଛନ୍ତି । ବାଳକୃଷ୍ଣ ଚାହିଁଥିଲେ ନିଜେ ଆର୍ଥିକ ସ୍ୱଚ୍ଛଳତାର ସହିତ ଜୀବନ କାଟିପାରି ଥାନ୍ତେ, ମାତ୍ର ପରିବାରକୁ ଭସାଇ ଦେଇଛନ୍ତି ଅଭାବ ଅନଟନରେ । ଶେଷ ପର୍ଯ୍ୟାୟ ବେଳକୁ ଆର୍ଥିକ ଅନଟନର ଶିକାର ହୋଇଥିଲେ । ସରକାରଙ୍କଠାରୁ ମାତ୍ର ୧୫୦ ଟଙ୍କା ବେତନ ପାଇ ବଞ୍ଚିଥିବା ଏହି ନାଟୁଆ ମଣିଷଟି ପାଇଁ ତାହା ଥିଲା ସମୁଦ୍ରକୁ ଶଙ୍ଖେପରି । କଳାପାଇଁ କାଙ୍ଗାଳ ହୋଇଥିବା ଏହି ଦରଦୀ ମଣିଷଟି ମାତ୍ର ୫୮ ବର୍ଷ ବୟସରେ ଇହଲୀଳା ସାଙ୍ଗ କଲେ । ସୁଶୀଳମାଳତୀ, ଅମରବିଳାସ, ବିଜୟବସନ୍ତ, ପାଣିଧୋବଣି ଫାର୍ଶ, ବାଣାପରାଜୟ ଆଦି ଷାଠିଏରୁ ଊର୍ଦ୍ଧ୍ୱ ଗୀତିନାଟ୍ୟ, ଗୀତାଭିନୟର ସ୍ରଷ୍ଟା ବାଳକୃଷ୍ଣ ମହାନ୍ତି ଓଡ଼ିଆ ନାଟ୍ୟ ସାହିତ୍ୟ କ୍ଷେତ୍ରରେ ଅବହେଳିତ । ତାଙ୍କର ଅନେକ ପାଣ୍ଡୁଲିପି ଆଜି ମଧ୍ୟ ଦୁଷ୍ପ୍ରାପ୍ୟ । ୧୯୭୦ ମସିହାରେ ମାତ୍ର ୧୭ ଖଣ୍ଡ ପୁସ୍ତକକୁ ନେଇ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର କର୍ତ୍ତୃକ ବାଳକୃଷ୍ଣ ଗ୍ରନ୍ଥାବଳୀ ପ୍ରକାଶ କରିଥିଲେ । ୧୯୫୮ ମାର୍ଚ୍ଚ ୩୦ ତାରିଖ ଏ ଜାତି ପାଇଁ ଥିଲା ଅଶୁଭ, କାରଣ ବାଳକୃଷ୍ଣ ଆରପାରିକୁ ଚାଲିଗଲେ । କିନ୍ତୁ ପଛରେ ରହିଲା ଓଡ଼ିଶାର କଳା, ସଂସ୍କୃତି ପାଇଁ ତାଙ୍କର ଅତୁଳନୀୟ ଅବଦାନ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଭାଷାରେ 'କଳାପାଇଁ ଉଜାଡବସ୍ତ କରି ଦେଇଛୁତ, ପାଇଛୁ କଅଣ ? ସାତତାଳ ପଙ୍କରେ ବୁଡି ମଧ୍ୟ ତୁ ଜୀଇଁଛୁ, ମୁଁ ପ୍ରଭୁଙ୍କ ଚରଣ ତଳେ ମଥା ଲଗାଇ ମାଗୁଛି ଯୋଉଠି ଥାଆତୁ, ଶାନ୍ତି ପାଉ ତୋ'ର ଅଶରୀରୀ ଆତ୍ମା' ।

ଅଧ୍ୟାପକ, ଓଡ଼ିଆ ବିଭାଗ
ଉତ୍କଳ ଭାରତୀ ବିଜ୍ଞାନ ମହାବିଦ୍ୟାଳୟ
ପଳାଶୁଣୀ, ଭୁବନେଶ୍ୱର–୨୫

# ଭୁବନେଶ୍ୱରଠାରେ ୩ଦିନିଆ ଅସ୍ଥିଶଲ୍ୟ ଚିକିତ୍ସକ ଆଲୋଚନାଚକ୍ର

ଇଣ୍ଡୋ–ଜର୍ମାନ, ଅସ୍ଥିଶଲ୍ୟ ମହାସଂଘ ପକ୍ଷରୁ ଓଡ଼ିଶାରେ ପ୍ରଥମଥର କରି ଭୁବନେଶ୍ୱରଠାରେ ଅସ୍ଥିଶଲ୍ୟ ବିଶେଷଜ୍ଞ ଏବଂ ସ୍ନାତକୋତ୍ତର ଶିକ୍ଷାର୍ଥୀମାନଙ୍କ ନିମନ୍ତେ ମାର୍ଚ୍ଚ ୧ରୁ ୩ ତାରିଖ ପର୍ଯ୍ୟନ୍ତ ଏକ ତିନିଦିନିଆ ମାଷ୍ଟର କୋର୍ସ ଆୟୋଜନ କରାଯାଇଥିଲା ।

ଅସ୍ଥିଶଲ୍ୟ ବିଶେଷଜ୍ଞମାନଙ୍କ କ୍ଷେତ୍ରରେ ଭଙ୍ଗାହାଡ ଯୋଡିବା କିମ୍ବା କୃତ୍ରିମ ଆଣ୍ଠୁଗଣ୍ଠି ପ୍ରତ୍ୟାରୋପଣ ଯଦିଓ କଷ୍ଟସାଧ୍ୟ, ଏଭଳି ଜଟିଳ ଚିକିତ୍ସା ସମୟରେ ଭାବିଚିନ୍ତି ଗୁରୁତ୍ୱର ସହ ନିଷ୍ପତ୍ତି ନେବାକୁ ପଡିଥାଏ । ଏହି ଆଲୋଚନା ଚକ୍ରରେ ରାଜ୍ୟ ତଥା ରାଜ୍ୟ ବାହାରୁ ଆସିଥିବା ବିଶେଷଜ୍ଞମାନେ ଅସ୍ଥିଶଲ୍ୟ ଚିକିତ୍ସା କ୍ଷେତ୍ରରେ ସୁଚିନ୍ତିତ ନିଷ୍ପତ୍ତି ବିନିମୟ କରିବା ସଙ୍ଗେ ସଙ୍ଗେ ଟ୍ରାଉମା, ଆର୍ଥୋସ୍କୋପି ଏବଂ ଆଣ୍ଠୁଗଣ୍ଠି ପ୍ରତ୍ୟାରୋପଣ ଅପରେସନ ସମ୍ପର୍କରେ ମତବ୍ୟକ୍ତ କରିଥିଲେ, ଯେଉଁଥିରୁକି ଉଭୟ ରୋଗୀ ଏବଂ ଡାକ୍ତର ଉପକୃତ ହୋଇପାରିବେ । ଏହାର କାର୍ଯ୍ୟକାରୀ ସମ୍ପାଦକ ଡଃ ସ୍ମରଜିତ୍ ପଟ୍ଟନାୟକଙ୍କ ମତରେ ଏହି ତିନିଦିନ ବ୍ୟାପୀ ଆଲୋଚନାଚକ୍ର ଆମମାନଙ୍କ ପାଇଁ ବେଶ୍ ଫଳପ୍ରଦ ହୋଇଛି । ଏହି ଅବସରରେ ଉଦୀୟମାନ ଅସ୍ଥିଶଲ୍ୟ ଚିକିତ୍ସକଙ୍କୁ ସ୍ୱର୍ଣ୍ଣ ପଦକ ପ୍ରଦାନ କରାଯାଇଥିଲା ଏବଂ ଅସ୍ଥିଶଲ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ପ୍ରଫେସର ଆର.ସି. ମହାନ୍ତି, ପ୍ରଫେସର କେ. ଏମ୍.ପାଠୀ, ପ୍ରଫେସର ଏମ୍.ଆର. ମହାପାତ୍ର, ପ୍ରଫେସର ଏନ୍.କେ. ଅଗ୍ରୱାଲ, ପ୍ରଫେସର ଧ୍ରୁବ ଚରଣ ପଟ୍ଟନାୟକ, ପ୍ରଫେସର ଏନ.ସି. ମହାକୁଳ, ପ୍ରଫେସର ବି.ଆର. ଦାସ ଏବଂ ପ୍ରଫେସର ଏନ. କେ. ପ୍ରଧାନଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା ।

ଇଣ୍ଡୋ–ଜର୍ମାନ ଅର୍ଥୋପେଡିକ୍ ଫାଉଣ୍ଡେସନର ମୂଳ ଉଦ୍ଦେଶ୍ୟ ହେଉଛି ଭାରତ ଏବଂ ଜର୍ମାନୀର ଅସ୍ଥିଶଲ୍ୟ ବିଶେଷଜ୍ଞମାନଙ୍କ ମଧ୍ୟରେ ସମନ୍ୱୟ ଓ ଭାବବିନିମୟ କରିବା । ଏହି ଫାଉଣ୍ଡେସନ ମାଧ୍ୟମରେ ଭାରତୀୟ ଯୁବ ଅସ୍ଥିଶଲ୍ୟ ଚିକିତ୍ସକମାନେ ଚିକିତ୍ସା ସମ୍ବନ୍ଧୀୟ ବିଭିନ୍ନ ଅତ୍ୟାଧୁନିକ ଜ୍ଞାନକୌଶଳ ଆହରଣ କରିପାରୁଛନ୍ତି ।

# ତରୁଣ ଶିଳ୍ପୀର ସଫଳତା ଓଡ଼ିଶା ପାଇଁ ଗର୍ବର କଥା



ସମ୍ପ୍ରତି ଓଡ଼ିଶାର ବିଭିନ୍ନ କଳା ଓ ଭାସ୍କର୍ଯ୍ୟ ପ୍ରଦର୍ଶନୀରେ ଗୋଟିଏ ଅତି ତରୁଣ ଯୁବ ଶିଳ୍ପୀର କଳାକୃତିର ପ୍ରଶଂସା ପ୍ରାୟ ଶୁଣାଯାଉଛି । ଏହିପରି ଏକ କଳା ପ୍ରଦର୍ଶନୀରେ ଯୋଗ ଦେବାର ସୁଯୋଗ ମୋତେ ମିଳିଥିଲା । ସେଇଠାରେ ଏଇ ତରୁଣ ଶିଳ୍ପୀଙ୍କ ସହ ପରିଚିତ ହେବାର ଅବସର ପାଇଥିଲି । ୧୯୮୬ ସାଲରେ ଜନ୍ମିତ ଏହି ଯୁବ ଶିଳ୍ପୀଙ୍କ ନାମ ହିମାଂଶୁ ଶେଖର ପରିଡା ଓ ଘର କଟକ ସହରର ମହାନଦୀ ବିହାରରେ । ତାଙ୍କ ପିତା ଗଗନ ବିହାରୀ ପରିଡା ବୃତ୍ତି ଓ ପ୍ରବୃତ୍ତି ଉଭୟରେ ଜଣେ ପୋଖତ ତଥା ଅଭିଜ୍ଞ ଶିଳ୍ପୀ । ହିମାଂଶୁଙ୍କର ପିଲାଦିନରୁ କଳା-ଭାସ୍କର୍ଯ୍ୟ ପ୍ରତି ପ୍ରବଳ ରୁଚି ଓ ଅନୁରାଗ ରହିଥିଲା । ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ସେ କୌଣସି କଳା ଭାସ୍କର୍ଯ୍ୟ ଶିକ୍ଷା ଦେଉଥିବା ଶିକ୍ଷାନୁଷ୍ଠାନରେ ପଢ଼ିବାକୁ ଆଗ୍ରହୀ ହୋଇଥିଲେ । ମାତ୍ର ସେଥିପାଇଁ ବାଧକ ସାଜିଥିଲା ଅର୍ଥ । ତା’ଛଡା ଯୁକ୍ତ ଦୁଇ ଯାଏଁ ପାଠ ପଢ଼ି ନଥିଲେ କଳା-ଭାସ୍କର୍ଯ୍ୟ ମହାବିଦ୍ୟାଳୟରେ ପ୍ରବେଶ ନେଇ ହେବ ନାହିଁ । ତେଣୁ ସେ ମାଟ୍ରିକ୍‌ରେ ସଫଳତା ଲାଭ କରିବା ପରେ ତିନିବର୍ଷ ଯାଏଁ ବିଭିନ୍ନ ଛୋଟମୋଟ ବୃତ୍ତି କରି ନିଜ ଅର୍ଥରେ ଯୁକ୍ତ ଦୁଇ ପାଠ ପଢ଼ି ସଫଳତା ଲାଭ କରିଥିଲେ ଏବଂ ତତ୍‌ପରେ ସେ ଚାରୁ ଓ କାରୁ କଳାରେ ଡିଗ୍ରୀ ହାସଲ କରିବା ପାଇଁ ଭୁବନେଶ୍ୱରସ୍ଥିତ ଧଉଳି ଚାରୁ ଓ କାରୁ କଳା ମହାବିଦ୍ୟାଳୟର ୪ ବର୍ଷିଆ ଡିଗ୍ରୀ ପାଠ୍ୟକ୍ରମରେ ଯୋଗଦେଇ ଚୂଡାନ୍ତ ପରୀକ୍ଷାରେ ଓଡ଼ିଶାର ସମସ୍ତ ଛାତ୍ର-ଛାତ୍ରୀମାନଙ୍କ ମଧ୍ୟରେ ସର୍ବୋଚ୍ଚ ନମ୍ବର ରଖି ସଫଳତାର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ପରେ ସେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟରୁ ‘ଭିଜୁଆଲ୍ ଆର୍ଟ’ରେ ଉପାଧିଉତ୍ତର ଡିଗ୍ରୀ ହାସଲ କରିଛନ୍ତି ।

ସେ ନିଜର ଏକାଗ୍ରତା ଓ ନିଷ୍ଠା ପାଇଁ ଅନେକ ପୁରସ୍କାର ଓ ସମ୍ମାନ ପ୍ରାପ୍ତ ହୋଇଛନ୍ତି । ‘ଉତ୍କଳ ପ୍ରସଙ୍ଗ’ ଏହି ଉଦୀୟମାନ ଶିଳ୍ପୀଙ୍କର ଉନ୍ନତ ଭବିଷ୍ୟତ କାମନା କରୁଛି ।

